# ଦାର୍ଶନିକ ଜିଜ୍ଞାସା : ଏକ ବିହଙ୍ଗାବଲୋକନ

ମଣିଷ ଅନୁସନ୍ଧିତ୍ସୁ । ପ୍ରକୃତି ଓ ପରିବେଶର ରହସ୍ୟକୁ ବୁଝିବା ପାଇଁ ସେ ସତତ ପ୍ରୟାସୀ । ଏବେବି ପ୍ରକୃତିର ବହୁ କ୍ଷେତ୍ର ମଣିଷ ବୋଧର ଅପହଞ୍ଚ । ଜୀବନ ଓ ପ୍ରକୃତିର ରହସ୍ୟକୁ ବୁଝିବା ପାଇଁ ପ୍ରୟାସ ଭିତରୁ ବିଜ୍ଞାନର ବିକାଶ । ଜ୍ଞାନର ବିକାଶରୁ ହିଁ ସଭ୍ୟତାର ବିକାଶ । ସୁତରାଂ ଜ୍ଞାନର ବିକାଶ ପଶ୍ଚାତରେ ମଣିଷର କୌତୁହଳ ଜନିତ ପ୍ରଚେଷ୍ଟା ବିଦ୍ୟମାନ । ସମାଜର କିଛି ବୁଦ୍ଧିମାନ ବ୍ୟକ୍ତି କୌତୁହଳୀ ହୋଇ ନାନା ଘଟଣାର ରହସ୍ୟକୁ ଉନ୍ମୋଚନ ପାଇଁ ପ୍ରଯତ୍ନ କରିଥାନ୍ତି । ସେମାନଙ୍କର ପ୍ରଯତ୍ନ ଓ ପ୍ରୟାସଦ୍ୱାରା ରାଜନୈତିକ ଚିନ୍ତନ, ଜ୍ଞାନ, ବିଜ୍ଞାନ, ନୈତିକତା ଓ ସର୍ବୋପରି ଦର୍ଶନର ଉଦ୍ଭବ ହୋଇଛି । ଅନ୍ତତଃ ସଂଘବଦ୍ଧ ସାମାଜିକ ଜୀବନର ବିକାଶ ଓ ଭାଷାର ଉନ୍ନତି ସହିତ ମଣିଷର ବୌଦ୍ଧିକ କୌତୁହଳତାଠାରୁ ଏସବୁର ସୃଷ୍ଟି । ମଣିଷ ଜାତିର ସୁଦୀର୍ଘ ଇତିହାସ ଭିତରେ ମଣିଷର ଦାର୍ଶନିକ ଅନୁଶୀଳନ ଏକ ଐତିହାସିକ ଘଟଣା କହିବାକୁ ହେବ ।

ବୌଦ୍ଧିକ ବିଚାରଶୀଳତାରୁ ଦର୍ଶନର ଉତ୍ପତ୍ତି । ବୌଦ୍ଧିକ ଅନୁସନ୍ଧିତ୍ସା ଓ କୌତୁହଳ ପ୍ରବଣତା ମଧ୍ୟ ଦେଇ ବ୍ୟକ୍ତି ମାନସରେ ଯେଉଁ କେତେକ ମୌଳିକ ପ୍ରଶ୍ନ ଆସିଥାଏ, ତାହାର ଉତ୍ତର ଅନୁଶୀଳନ ଭିତରୁ ଦର୍ଶନ ସୃଷ୍ଟି ହୋଇଥାଏ । ଏତଦ୍‌ବ୍ୟତୀତ ବିଚାରଶୀଳତା ମଧ୍ୟ ଦେଇ ଏକ ତର୍କଶୀଳ ମାନଦଣ୍ଡ ନିର୍ଣ୍ଣୟ କରିବା କ୍ଷେତ୍ରରେ ଯେଉଁ ବୌଦ୍ଧିକ ପ୍ରୟାସ ହୁଏ ତାହା ମଧ୍ୟ ଦେଇ ଦର୍ଶନର ଭିତ୍ତି ପଡ଼ିଥାଏ । ବିଶ୍ୱାସକୁ ଜ୍ଞାନଠାରୁ ପୃଥକ କରିବା, ନୈତିକ - ଅନୈତିକ ପ୍ରଶ୍ନ ଉପରେ ମାନଦଣ୍ଡ ନିରୂପଣ କରିବା, ସୁଖ ସମ୍ଭୋଗ ଭିତରେ ଶ୍ରେୟ ନିର୍ଣ୍ଣୟ କରିବା, ସାଧାରଣ ଜୀବନ ପ୍ରବାହକୁ ଲକ୍ଷ୍ୟ କରି ଏକ ଆଦର୍ଶ ସମାଜର ପରିକଳ୍ପନା କରିବା ଇତ୍ୟାଦି ପ୍ରୟାସ ଭିତରେ ଦାର୍ଶନିକ ପ୍ରଶ୍ନମାନଙ୍କର ଅବତାରଣା ହୋଇଥାଏ । ସମାଜର କିଛି ଚିନ୍ତାଶୀଳ ବ୍ୟକ୍ତି ଏ କ୍ଷେତ୍ରରେ ତାତ୍ତ୍ୱିକ ପ୍ରଶ୍ନ ଉଠାଇ ସେମାନଙ୍କର ଆଲୋଚନାରୁ କେତେକ ସିଦ୍ଧାନ୍ତର ଅବତାରଣା କରିଥାନ୍ତି । ଗୋଟିଏ ସମୟରେ ଯେଉଁ ସିଦ୍ଧାନ୍ତ ଓ ତାତ୍ତ୍ୱିକ ସମାଧାନଗୁଡ଼ିକ ଆକର୍ଷଣୀୟ ଓ ତ୍ରୁଟିଶୂନ୍ୟ ମନେ ହେଉଥିଲା ପରବର୍ତ୍ତୀ ସମୟରେ ସେସବୁ କ୍ଷେତ୍ରରେ କେତେକ ଅସଂହତି ଓ ତ୍ରୁଟି

ପ୍ରତି କେତେକ ପ୍ରଜ୍ଞାବାନ ବ୍ୟକ୍ତି ଦୃଷ୍ଟି ଆକର୍ଷଣ କରିଥାନ୍ତି । ଫଳରେ ନୂଆ ବିଚାର ଓ ଚିନ୍ତନର ଅବତାରଣା ହୋଇଥାଏ । ମଣିଷର ଅନ୍ତର୍ନିହିତ ବୌଦ୍ଧିକ ସୃଜନଶୀଳତା ମଧ୍ୟ ଦେଇ ଭିନ୍ନ ଭିନ୍ନ ସମୟରେ ନୂଆ ନୂଆ ସିଦ୍ଧାନ୍ତ ଓ ତାର୍କିକ ମାନଦଣ୍ଡ ଉଦ୍ଭବ ହୋଇଥାଏ । ନୂତନ ଆହ୍ୱାନ ଓ ଅନୁଭୂତି ମାଧ୍ୟମରେ ଜ୍ଞାନର ବିକାଶ ସାଧନ ହୋଇଥାଏ । ନ୍ୟାୟ, ସ୍ୱାଧୀନତା, ଜ୍ଞାନ, ନୈତିକତା, ମାନବିକ ଶ୍ରେୟ, ଉନ୍ନତ ସମାଜ ଇତ୍ୟାଦି ପ୍ରଶ୍ନଗୁଡ଼ିକ ଉପରେ ନାନା ଆଲୋଚନା ଓ ସିଦ୍ଧାନ୍ତ ବିକାଶ ଲାଭ ହୋଇଥିବା ଦେଖାଯାଏ । ସୃଜନଶୀଳ ଚିନ୍ତନ, ସମାଲୋଚନା ସ୍ୱାଧୀନ ଦୃଷ୍ଟିକୋଣ ମଧ୍ୟ ଦେଇ ବୌଦ୍ଧିକ ବିକାଶଧାରାରେ ଏହା ସମ୍ଭବ ହୋଇଛି । ତାର୍କିକ ଅନୁଶୀଳନ ଓ ବିଶ୍ଳେଷଣ ମଧ୍ୟ ଦେଇ ଦର୍ଶନ ଏକ ବୌଦ୍ଧିକ ଚିନ୍ତନ ଭାବରେ ସ୍ୱୀକୃତ ହୋଇଛି ।

ବୌଦ୍ଧିକ ଜିଜ୍ଞାସାର ପହିଲି ପର୍ବରେ ଯେଉଁ ଅନୁସନ୍ଧିତ୍ସୁ ମନୋବୃତ୍ତିରୁ ଦର୍ଶନର ଭିତ୍ତି ପଡ଼ିଥିଲା ସେହି ସମୟରେ ନାନା ରହସ୍ୟମୟ ବ୍ୟାଖ୍ୟା, ଅଲୌକିକ ଭାବନା ଓ ଅତୀନ୍ଦ୍ରିୟ ଅନୁଭୂତି ଭିତର ଦେଇ ଧର୍ମର ଉଦ୍ରେକ ହେଲା । ଧର୍ମୀୟ ଧାରାରେ ଯେଉଁ ଦର୍ଶନର ଉଦ୍ଭବ ହେଲା ସେଥିରେ ଜୀବନ, ଜଗତ ଓ ପ୍ରକୃତିର ରହସ୍ୟକୁ ବୁଝିବା ପାଇଁ କିଛି ବୌଦ୍ଧିକ ଆବେଦନ ଥିଲା । ସେହି ବୌଦ୍ଧିକ ଆବେଦନ ଭିତରେ ଏକ ଜଗତ-ଭାବନା (world - view) ସୃଷ୍ଟି ହୋଇଥିଲା । ତାହା ମଧ୍ୟ ଦେଇ ଜୀବନର ଲକ୍ଷ୍ୟ ଏବଂ ପ୍ରକୃତିର ରହସ୍ୟକୁ ବୁଝିବା ପାଇଁ ଯେଉଁ କେତେକ ତାତ୍ତ୍ୱିକ ସିଦ୍ଧାନ୍ତର ଅବତାରଣା ହୋଇଥିଲା, ସେକ୍ଷେତ୍ରରେ ରହସ୍ୟମୟ କଳ୍ପନା ମୁଖ୍ୟ ଭାଗ ନେଇଥିଲା । ସେହି ପୃଷ୍ଠଭୂମିରେ ଈଶ୍ୱର, ଆତ୍ମା, ପରଜଗତ, ପାପପୁଣ୍ୟ, ସ୍ୱର୍ଗନର୍କ ଇତ୍ୟାଦି କଳ୍ପନା ସକଳକୁ ଓ ପରାମନସ୍ତାତ୍ତ୍ୱିକ ଘଟଣାବଳୀକୁ ପ୍ରଣାଳୀବଦ୍ଧ ଭାବରେ ବିଶ୍ଳେଷଣ କରିବା ଦର୍ଶନର ଆଭିମୁଖ୍ୟ ଥିଲା । ଧର୍ମୀୟ ଚିନ୍ତନ ଭିତରେ ଧର୍ମ-ସଂଲଗ୍ନ କେତେକ ମୁଖ୍ୟ ପ୍ରତ୍ୟୟର ବୌଦ୍ଧିକ ବିଶ୍ଳେଷଣ କରିବା ଦର୍ଶନର ଲକ୍ଷ୍ୟ ରହିଥିଲା । ଧର୍ମ ଓ ଦର୍ଶନ ପରସ୍ପର ସହ ସଂଶ୍ଳିଷ୍ଟ ରହି ସେହି ସ୍ଥିତିରେ ବୌଦ୍ଧିକ ଜିଜ୍ଞାସାର ଭିତ୍ତି ହୋଇ ରହିଥିଲେ । ଧର୍ମୀୟ ବିଶ୍ୱାସ ସକଳର ତାତ୍ତ୍ୱିକ ଭିତ୍ତି ସ୍ଥିର କରିବାରେ ଦର୍ଶନ ମୁଖ୍ୟ ଆଧାର ହୋଇଥିଲା ।

ଆଧୁନିକ ଯୁଗରେ ଧର୍ମୀୟ ଚିନ୍ତନର ଗୁରୁତ୍ୱ ହ୍ରାସ ହୋଇ ବୈଜ୍ଞାନିକ ଚିନ୍ତନର ଯେଉଁ ସୂତ୍ରପାତ ହେଲା ସେଥିରେ ଦର୍ଶନ ମଧ୍ୟ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ବୈଜ୍ଞାନିକ ଚିନ୍ତନର କ୍ରିୟାଶୀଳତା ପଛାତରେ ଦାର୍ଶନିକ ଅନୁଶୀଳନ ଓ ସିଦ୍ଧାନ୍ତର ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ । ବସ୍ତୁନିଷ୍ଠ ଜ୍ଞାନର ପ୍ରଣାଳୀ ଜନିତ ଜ୍ଞାନ ମୀମାଂସାରୁ ବୈଜ୍ଞାନିକ ଜ୍ଞାନର ସୌଧ ଗଢ଼ି ଉଠିଲା । ପ୍ରାଚୀନ କାଳରେ ଦାର୍ଶନିକ ଜିଜ୍ଞାସା ଯେପରି ଆଶ୍ଚର୍ଯ୍ୟ ଓ ଅନୁସନ୍ଧିତ୍ସାକୁ ଆଧାର କରି ସୃଷ୍ଟି ହୋଇଥିଲା ଆଧୁନିକ ଯୁଗରେ ପ୍ରଚଳିତ ଜ୍ଞାନ ଓ ବିଶ୍ୱାସ ସକଳର ସଂଶୟରୁ ଦାର୍ଶନିକ ଚିନ୍ତନର ବିକାଶ ହେଲା ।

ସତ୍ତା, ଜ୍ଞାନ, ନୈତିକତା, ଶାସନତନ୍ତ୍ର, ଜୀବନର ଲକ୍ଷ୍ୟ ଇତ୍ୟାଦି କ୍ଷେତ୍ରରେ ଯେଉଁ ସବୁ ପ୍ରଚଳିତ ଭାବନା ରହିଥିଲା ସେସବୁର ସଂଶୟରୁ ଅଧିକ ପ୍ରଣାଳୀବଦ୍ଧ ଓ ଯୁକ୍ତିନିଷ୍ଠ ଆଧାର ଉପରେ ଏସବୁ କ୍ଷେତ୍ରରେ ନୂଆ ନୂଆ ବିଚାରର ଉଦ୍ରେକ ହେଲା । ଯୁକ୍ତିଶୀଳ ଆଧାର ଉପରେ ତତ୍ତ୍ୱମୀମାଂସକ ଜ୍ଞାନର ସିଦ୍ଧାନ୍ତମାନ ସୃଷ୍ଟି ହେଲା । ରୁଦ୍ଧ ମାନସିକତାର ବିଲୋପ ହୋଇ ଯୁକ୍ତିଶୀଳ ବିଚାର ଓ ସ୍ୱାଧୀନ ଚିନ୍ତନ ଦର୍ଶନର ଆଦର୍ଶ ହେଲା । ଧର୍ମଶାସ୍ତ୍ରର ବିଧାନଗୁଡ଼ିକୁ ସଂଶୟ ଦୃଷ୍ଟିରେ ଦେଖାଗଲା । ତର୍କ, ଯୁକ୍ତି ସମ୍ମତ ବିଶ୍ଳେଷଣ ଓ ପ୍ରଣାଳୀବଦ୍ଧ ଅନୁଶୀଳନ ମାଧ୍ୟମରେ ଜ୍ଞାନର ବିକାଶ ହେଲା ।

ଆଧୁନିକ ଯୁଗରେ ବିଜ୍ଞାନର ପ୍ରଗତି ପ୍ରକୃତିର ବହୁ ରହସ୍ୟକୁ ବସ୍ତୁନିଷ୍ଠ ଓ ପ୍ରଣାଳୀବଦ୍ଧ ଭାବରେ ବିଶ୍ଳେଷଣ କରିବାକୁ ସମର୍ଥ ହେଲା । ପ୍ରକୃତି ବା ସମାଜରେ ଘଟୁଥିବା ଘଟଣା ପ୍ରବାହ ସଂପର୍କରେ ବିଶ୍ଳେଷଣ କରି ସେମାନଙ୍କୁ ନିର୍ଦ୍ଦିଷ୍ଟ ନିୟମ ବା ତନ୍ତ୍ର (order) ସାହାଯ୍ୟରେ ବ୍ୟାଖ୍ୟା କରିବା ବିଜ୍ଞାନର ଲକ୍ଷ୍ୟ ହେଲା । ବିଜ୍ଞାନର ପରିସର ନିର୍ଦ୍ଦିଷ୍ଟ ହେଲା । ବୈଜ୍ଞାନିକ ଜ୍ଞାନ ବସ୍ତୁତାନ୍ତ୍ରିକ ଓ ଏହା ପ୍ରକୃତିର ବ୍ୟତିକ୍ରମହୀନ ଏକରୂପ ନିୟମ ସକଳକୁ ଆବିଷ୍କାର କରିବା ପାଇଁ ଉଦ୍ଦିଷ୍ଟ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଜନିତ ଅନୁସନ୍ଧାନଦ୍ୱାରା ସୁନିୟନ୍ତ୍ରିତ ଭାବରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ଦିଗରେ ବୈଜ୍ଞାନିକ ଚିନ୍ତନ ଅଭିପ୍ରେତ । ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ ଓ ଏକ ସୁନିର୍ଦ୍ଦିଷ୍ଟ ପଦ୍ଧତି ଅବଲମ୍ବନ କରିବା ବୈଜ୍ଞାନିକ ଚିନ୍ତନର ମୌଳିକ ବୈଶିଷ୍ଟ୍ୟ । ପୁନଶ୍ଚ ପରସ୍ପର ଅସଂଲଗ୍ନ ଐକ୍ୟ ଘଟଣାକୁ ବୁଝାଇବା ବିଜ୍ଞାନର ଲକ୍ଷ୍ୟ ନୁହେଁ । ବରଂ ବିଜ୍ଞାନ ଘଟଣା ବା ତଥ୍ୟଗୁଡ଼ିକୁ କ୍ରମାନୁବଦ୍ଧ ଓ ବର୍ଗୀକରଣ କରି, ସେମାନଙ୍କର ସଂଜ୍ଞା ନିରୂପଣ ପୂର୍ବକ ସେମାନଙ୍କୁ କାର୍ଯ୍ୟ-କାରଣ ସମ୍ବନ୍ଧ ବା ପ୍ରତିଷ୍ଠିତ ନିୟମ ଆଧାରରେ ବ୍ୟାଖ୍ୟା କରିବାକୁ ପ୍ରଯତ୍ନ କରିଥାଏ । ଅର୍ଥାତ୍ ପ୍ରକୃତିର ବ୍ୟତିକ୍ରମହୀନ ଏକରୂପତାକୁ ଲକ୍ଷ୍ୟ କରି ଘଟଣା ବା ତଥ୍ୟମାନଙ୍କୁ ନିୟମ ସହ ସଂଶ୍ଳିଷ୍ଟ କରାଯାଏ । ନିୟମଗୁଡ଼ିକୁ ଆରୋହାନୁକ୍ରମେ ସାମାନ୍ୟୀକରଣ କରାଯାଇ ସେଗୁଡ଼ିକୁ ସାର୍ବିକ ସିଦ୍ଧାନ୍ତରେ ଅନ୍ତର୍ଭୁକ୍ତ କରାଯାଇଥାଏ । ନିୟମ ସକଳକୁ ବ୍ୟାପକତା ଭିତ୍ତିରେ ଶ୍ରେଣୀବଦ୍ଧ କରି ଉଚ୍ଚସ୍ତରରେ କେତେକ ତତ୍ତ୍ୱମୂଳକ ସିଦ୍ଧାନ୍ତର ଅବତାରଣା କରାଯାଏ । ପ୍ରକୃତିରେ କାର୍ଯ୍ୟକାରୀ ହେଉଥିବା ନିୟମ ସକଳକୁ ବୈଜ୍ଞାନିକ ପ୍ରଣାଳୀ ମାଧ୍ୟମରେ ଆବିଷ୍କାର କରାଯାଉଥିବା ବେଳେ ଉଚ୍ଚ ସ୍ତରରେ କେତେକ ମୌଳିକ ସିଦ୍ଧାନ୍ତକୁ ପ୍ରାକଳ୍ପିକ ତତ୍ତ୍ୱ ଭାବରେ ନିଆଯାଏ । ଏହି ମୌଳିକ ତତ୍ତ୍ୱର ଆଧାର ଉପରେ ଅନ୍ୟାନ୍ୟ ନିୟମ ସକଳକୁ ବିଶ୍ଳେଷଣ କରିବା ସମ୍ଭବ ହୁଏ ଯେପରିକି ନିୟମର ଆଧାର ଉପରେ ପ୍ରାକୃତିକ ଘଟଣା ବା ଇନ୍ଦ୍ରିୟାନୁଭୂତିମୂଳକ ଅନୁଭୂତି ସକଳକୁ ବ୍ୟାଖ୍ୟା କରାଯାଇଥାଏ । ବୈଜ୍ଞାନିକ ଜ୍ଞାନ ଯେଉଁ ପ୍ରଣାଳୀ ମଧ୍ୟ ଦେଇ ଉତ୍ପନ୍ନ ହୋଇଥାଏ ସେହି ପ୍ରଣାଳୀ ଜ୍ଞାନଲାଭ କ୍ଷେତ୍ରରେ କେତେକ ସୋପାନ ମଧ୍ୟଦେଇ ଆସିଥାଏ । ପ୍ରକୃତିରେ ସଂଘଟିତ ହେଉଥିବା

ଘଟଣାବଳୀ ବା ଆମର ଅନୁଭୂତିକୁ ପ୍ରଥମେ ପର୍ଯ୍ୟବେକ୍ଷଣ ଓ ଶ୍ରେଣୀବଦ୍ଧ କରି ଆବଶ୍ୟକ ସ୍ଥଳେ ପ୍ରକଳ୍ପ ମାଧମରେ ବ୍ୟାଖ୍ୟା କରାଯାଇଥାଏ । ପ୍ରତିଷ୍ଠିତ ନିୟମ ବା ସିଦ୍ଧାନ୍ତ ସହ ପ୍ରକଳ୍ପର ସଂଗତିକୁ ଲକ୍ଷ୍ୟ କରାଯାଏ । ପ୍ରକଳ୍ପ ପରୀକ୍ଷା ବା ସତ୍ୟାପନ ଦ୍ୱାରା ପ୍ରତିଷ୍ଠିତ ହେଲେ ତାହାର ସାମାନ୍ୟୀକରଣ କରାହୋଇଥାଏ । ଏହିପରି ପ୍ରଣାଳୀବଦ୍ଧ ଭାବରେ ପ୍ରକୃତିର ବ୍ୟତିକ୍ରମହୀନ ନିୟମରାଜିକୁ ଆବିଷ୍କାର କରିବା ବୈଜ୍ଞାନିକ ଜ୍ଞାନର ଆଭିମୁଖ୍ୟ ଅଟେ ।

ପ୍ରାକୃତିକ ନିୟମ ବା କେତେକ ମୌଳିକ ସିଦ୍ଧାନ୍ତକୁ ଯଥାକ୍ରମେ ଆବିଷ୍କାର ଓ ଉଦ୍ଭାବନ କରି ବସ୍ତୁନିଷ୍ଠ ଜ୍ଞାନ ଦେବାକୁ ବିଜ୍ଞାନ ଯେପରି ପ୍ରୟାସ କରିଥାଏ ଦର୍ଶନ ସେ ପ୍ରକାର କରିନଥାଏ । ତଥାପି ବିଜ୍ଞାନ ପୃଷ୍ଠଭୂମିରେ ଦର୍ଶନ ଏପରି କେତେକ ମୌଳିକ ପ୍ରଶ୍ନର ଅବତାରଣା କରିଥାଏ ଯାହା ଯଦିବା ବିଜ୍ଞାନର ପରିସର ମଧରେ ବିଶ୍ଳେଷଣ କରିବା ସମ୍ଭବ ହୋଇନଥାଏ, ଅଥଚ ତାହା ବିଜ୍ଞାନର ଭିତ୍ତିକୁ ସୁଦୃଢ଼ କରିଥାଏ । ବୈଜ୍ଞାନିକ ବିଶ୍ଳେଷଣ ଧାରାରେ ଯେଉଁସବୁ ପ୍ରତ୍ୟୟ ସକଳକୁ ଗ୍ରହଣ କରାଯାଏ ସେହିମାନଙ୍କର ତାର୍କିକ ଭିତ୍ତିକୁ ବିଜ୍ଞାନ ସାହାଯ୍ୟରେ ବ୍ୟାଖ୍ୟା କରିବା ସମ୍ଭବ ହୁଏ ନାହିଁ । ସେହି ପ୍ରତ୍ୟୟମାନଙ୍କର ବ୍ୟାଖ୍ୟା ଏକ ଭିନ୍ନ ସ୍ତରରେ ହୋଇଥାଏ । ଉଭୟ ବିଜ୍ଞାନ ଓ ଦର୍ଶନ ଯଦିବା ସୁନିର୍ଦ୍ଦିଷ୍ଟ ଓ ସୁସଂହତ ଜ୍ଞାନ ପାଇଁ ଅଭିପ୍ରେତ ତଥାପି ବିଜ୍ଞାନ ଓ ଦର୍ଶନ ମଧରେ ପରିଣାମ ଓ ପ୍ରୟୋଗ ଦୃଷ୍ଟିରୁ ମୌଳିକ ପ୍ରଭେଦ ପରିଲକ୍ଷିତ ହୁଏ । ସେମାନେ ପ୍ରୟୋଗ କରୁଥିବା ପ୍ରଣାଳୀ, ବ୍ୟାଖ୍ୟା କରୁଥିବା ବିଷୟବସ୍ତୁ ଓ ଉପନୀତ ହେଉଥିବା ସମାଧାନ କ୍ଷେତ୍ରରେ ସେମାନଙ୍କର ପାର୍ଥକ୍ୟ ସୁସ୍ପଷ୍ଟ ଅଟେ । ବିଜ୍ଞାନ ବସ୍ତୁନିଷ୍ଠ ଘଟଣାବଳୀକୁ ଏକ ସୁସଂହତ ପ୍ରଣାଳୀଦ୍ୱାରା ବ୍ୟାଖ୍ୟା କରୁଥିବା ବେଳେ ଦର୍ଶନ ଜ୍ଞାନ ଲାଭ କ୍ଷେତ୍ରରେ ପ୍ରୟୋଗ ହେଉଥିବା ବିଭିନ୍ନ ପ୍ରଣାଳୀ ଗୁଡ଼ିକର ତାର୍କିକ ଓ ତାତ୍ତ୍ୱିକ ଭିତ୍ତି ସକଳକୁ ସମୀକ୍ଷାମୂଳକ ବା ବିଶ୍ଳେଷଣାତ୍ମକ ପଦ୍ଧତିରେ ବ୍ୟାଖ୍ୟା କରିଥାଏ । ପୁନଶ୍ଚ ପ୍ରତ୍ୟେକ ପ୍ରଣାଳୀର ପ୍ରୟୋଗ, ପରିସର ଓ ସୀମା ସଂକ୍ରାନ୍ତୀୟ ପ୍ରଶ୍ନ ବୈଜ୍ଞାନିକ ସ୍ତରର ପ୍ରଶ୍ନ ନ ହୋଇ ଏକ ଭିନ୍ନ ସ୍ତରର ଅଟେ । ବିଷୟବସ୍ତୁ ଦୃଷ୍ଟିରୁ ବିଜ୍ଞାନ ଘଟଣା ପ୍ରବାହର ବ୍ୟାଖ୍ୟା ସହିତ ସଂଶ୍ଳିଷ୍ଟ ହେବା ବେଳେ ଦର୍ଶନ ମୌଳିକ ପ୍ରତ୍ୟୟଗୁଡ଼ିକର ସଂଜ୍ଞା, ସ୍ୱରୂପ, ତାର୍କିକ ସୀମା ଇତ୍ୟାଦି ସହିତ ସଂଶ୍ଳିଷ୍ଟ ହୋଇଥାଏ । ପରିଣାମତଃ ବିଜ୍ଞାନ ଅପେକ୍ଷା ଦର୍ଶନର ସ୍ତର ଅଧିକ ବ୍ୟାପକ । ଦାର୍ଶନିକ ଅବବୋଧ ଏକ ସାମଗ୍ରିକ ଚିତ୍ର ଦେବାକୁ ପ୍ରଯତ୍ନ କରିଥାଏ । କୌଣସି ଘଟଣାର କାରଣ ନିର୍ଣ୍ଣୟ କରିବା ଯେଉଁ ସ୍ତରର ପ୍ରଶ୍ନ ପରମ କାରଣର ସମ୍ଭାବନା ଓ ସ୍ୱରୂପକୁ ବିଶ୍ଳେଷଣ କରିବା ବା ଏପରିକି କାର୍ଯ୍ୟ କାରଣ ନିୟମର ସୈଦ୍ଧାନ୍ତିକ ଭିତ୍ତିକୁ ଆଲୋଚନା କରିବା ସେହି ସ୍ତରର ପ୍ରଶ୍ନ ନୁହେଁ । ଜୀବନ କିପରି ଉଦ୍ଭବ ହେଲା କିମ୍ବା ମାନସିକ ସ୍ତରର ବିବର୍ତ୍ତନ କେବେ ଓ କିପରି ହେଲା ଯେଉଁ ସ୍ତରର ପ୍ରଶ୍ନ, ଜୀବନର ଉତ୍ପତ୍ତି ପଶ୍ଚାତରେ

କିଛି ଉଦ୍ଦେଶ୍ୟ ରହିଛି କି ଓ ଜୀବନର ଅନ୍ତିମ ପରିଣାମ କ'ଣ ସେହି ସ୍ତରର ପ୍ରଶ୍ନ ନୁହେଁ । ଗୋଟିଏ ସ୍ତରର ପ୍ରଶ୍ନ ବିଜ୍ଞାନର ପରିସର ଭିତରେ ବିଚାର୍ଯ୍ୟ ହେବାବେଳେ ଅନ୍ୟ ସ୍ତରର ପ୍ରଶ୍ନ ସକଳ ଏକ ବିଶ୍ଳେଷଣାତ୍ମକ ବା ସମୀକ୍ଷାତ୍ମକ ସ୍ତରରେ ଆଲୋଚନା ହେବା ସମ୍ଭବ । ସୁତରାଂ ବିଜ୍ଞାନର ପରିସର ବାହାରେ ସୈଦ୍ଧାନ୍ତିକ ଓ ତାତ୍ତ୍ୱିକ ସ୍ତରରେ ଏପରି କେତେକ ପ୍ରଶ୍ନ ନିହିତ ରହିଥାଏ ଯାହାକୁ ବିଜ୍ଞାନ ଗ୍ରହଣ କରିନିଏ ବା ସେସବୁର ବ୍ୟାଖ୍ୟାକୁ ତା'ର ପରିସର ବହିର୍ଭୂତ ବୋଲି ଧରିଥାଏ । କିନ୍ତୁ ସେହି ସବୁ ସ୍ତରରେ ଯେଉଁ ଜଟିଳ ବ୍ୟାଖ୍ୟା ଆବଶ୍ୟକ ହୁଏ ତାହା ଅନ୍ୟ ଏକ ବୌଦ୍ଧିକ ସ୍ତରରେ କରାଯାଏ ଓ ତାହାହିଁ ମୁଖ୍ୟତଃ ଦର୍ଶନ କହିଲେ ଅତ୍ୟୁକ୍ତି ହେବନାହିଁ ।

ବସ୍ତୁତଃ ପ୍ରଣାଳୀବଦ୍ଧ ଅନୁଶୀଳନ କ୍ଷେତ୍ରରେ ବୌଦ୍ଧିକ ପର୍ଯ୍ୟାଲୋଚନା ଦୁଇ ସ୍ତରରେ ହୋଇଥାଏ । ଗୋଟିଏ ସ୍ତରରେ ବସ୍ତୁ, ଘଟଣା ବା ଅନୁଭୂତି ଇତ୍ୟାଦିକୁ ବୁଝାଇବା ପାଇଁ ସାର୍ବିକ ନୀତି, ନିୟମ, ଶୃଙ୍ଖଳାର ଅବତାରଣା କରାଯାଏ । ଏହା ପ୍ରଥମ ସ୍ତରୀୟ ବୌଦ୍ଧିକ ଶୃଙ୍ଖଳା ଅଟେ । ଅଥଚ ପ୍ରଥମ ସ୍ତରୀୟ ବୌଦ୍ଧିକ ଅନୁଶୀଳନର ତାର୍କିକ ଭିତ୍ତି, ପ୍ରଣାଳୀ, ମୌଳିକ ଭାବନା ଓ ସିଦ୍ଧାନ୍ତ ସକଳକୁ ଏକ ପ୍ରତ୍ୟୟାତ୍ମକ ସ୍ତରରେ ବିଶ୍ଳେଷଣ କରାଯାଏ, ଯାହା ଦ୍ୱିତୀୟ ସ୍ତରୀୟ ବୌଦ୍ଧିକ ଶୃଙ୍ଖଳା ଅଟେ । ଦ୍ୱିତୀୟ ସ୍ତରର ଆଲୋଚନା ଅମୂର୍ତ୍ତୀୟ (abstract) ଅଟେ; ଏଠାରେ ଘଟଣା, ବସ୍ତୁ ବା ଅନୁଭୂତିକୁ ପ୍ରତ୍ୟକ୍ଷ ଭାବରେ ବିଶ୍ଳେଷଣ କରାନଯାଇ ସେସବୁକୁ ଆଧାର କରି ଗଢ଼ି ଉଠିଥିବା ନିୟମ, ସିଦ୍ଧାନ୍ତ, ପ୍ରତ୍ୟୟ ଓ ପଦ୍ଧତିମାନଙ୍କ ସମ୍ବନ୍ଧରେ ବ୍ୟାଖ୍ୟା କରାଯାଏ । ସୁତରାଂ ଯେକୌଣସି ପ୍ରଥମ ସ୍ତରୀୟ ବୌଦ୍ଧିକ ଅନୁଶୀଳନର ଏକ ସମୀକ୍ଷାତ୍ମକ ବୌଦ୍ଧିକ ଅନୁଶୀଳନ ରହିବା ସମ୍ଭବପର, ଯାହାକୁ ଦ୍ୱିତୀୟ ସ୍ତରର କୁହାଯାଏ । ଦର୍ଶନ ଏହି ଦ୍ୱିତୀୟ ସ୍ତରଟି ସହ ସମ୍ବନ୍ଧିତ । ପରିଣାମତଃ ସକଳ ଅନୁଶୀଳନ ତାହା ପ୍ରାକୃତିକ ବିଜ୍ଞାନ, ସମାଜ ବିଜ୍ଞାନ, ଆକାରନିଷ୍ଠ ବିଜ୍ଞାନ ବା ଆଦର୍ଶନିଷ୍ଠ ବିଜ୍ଞାନ ହେଉ ନା କାହିଁକି, ପ୍ରତ୍ୟେକ ବିଜ୍ଞାନ କ୍ଷେତ୍ରରେ ଯେଉଁ ମୌଳିକ ପ୍ରଶ୍ନଗୁଡ଼ିକ ସଂଶ୍ଳିଷ୍ଟ ଥାଏ ତାହାର ଆଲୋଚନା ପ୍ରତ୍ୟୟଗତ ସ୍ତରରେ ଦର୍ଶନ କ୍ଷେତ୍ରରେ ହୋଇଥାଏ । କହିବା ନିଷ୍ପ୍ରୟୋଜନ ଯେ ଏହିସବୁ ବିଜ୍ଞାନର ସାମଗ୍ରିକ ରୂପ ହିଁ ହେଉଛି ଆମର ଜ୍ଞାନରାଜୀ । ଏହି ଦୃଷ୍ଟିରୁ ସକଳ ବୌଦ୍ଧିକ ଚିନ୍ତନ ଦର୍ଶନ ସହିତ ସଂଶ୍ଳିଷ୍ଟ । ବିଜ୍ଞାନରେ ଜ୍ଞାନର ଯେଉଁ ସୌଧଟି ଗଢ଼ି ଉଠିଥାଏ ତା'ର ମୂଳ ଭିତ୍ତି ଦାର୍ଶନିକ ବିଚାର ସ୍ତରରେ ପର୍ଯ୍ୟାଲୋଚନା ହୁଏ । ଏହି ପୃଷ୍ଠଭୂମିରେ ଦର୍ଶନକୁ ଏକ ପ୍ରତ୍ୟୟାତ୍ମକ ଅନୁଶୀଳନ ବୋଲି କୁହାଯାଇଥାଏ । ମୌଳିକ ପ୍ରତ୍ୟୟଗୁଡ଼ିକର ଅନୁଶୀଳନ, ଅର୍ଥଗତ ବିଶ୍ଳେଷଣ, ସଂଜ୍ଞା ତଥା ସାମଗ୍ରିକ ବିଚାର ପରିସରରେ ସେମାନଙ୍କର ଭୂମିକାକୁ ନିରୂପଣ କରିବା ଜନିତ ପ୍ରଶ୍ନର ସମାଧାନ ହିଁ ଦର୍ଶନର ବିଷୟବସ୍ତୁ ବୋଲି କୁହାଯାଏ ।

ଅବଶ୍ୟ ଦର୍ଶନର ସୁଦୀର୍ଘ ଇତିହାସ ପୃଷ୍ଠଭୂମିରେ ଉପରୋକ୍ତ ମତଟି ସଂପୂର୍ଣ୍ଣ

ଗ୍ରହଣଯୋଗ୍ୟ ନୁହେଁ । ଦର୍ଶନର ପରିଭାଷା ଭିତରେ ଦର୍ଶନ ଯେ ମୂଳ ଓ ମୌଳିକ ପ୍ରତ୍ୟୟଗୁଡ଼ିକୁ ବିଶ୍ଳେଷଣ କରିଥାଏ ତାହା ଅନସ୍ୱୀକାର୍ଯ୍ୟ । କିନ୍ତୁ ଏ ସତ୍ତ୍ୱେ ଜୀବନ ଓ ଜଗତକୁ ଆଧାର କରି ଏହା ଏକ ସାମଗ୍ରିକ ଦୃଷ୍ଟି ଦେଇଥାଏ ଯାହାଦ୍ୱାରା ଅନ୍ୟ ସବୁକୁ ସେହି ମାଧ୍ୟମରେ ବା ମାନଦଣ୍ଡରେ ବିଚାର କରାଯାଇ ପାରିବ । ଜୀବନ– ଏହାର ଲକ୍ଷ୍ୟ ମୂଲ୍ୟ, ପରିଣତି, ପୁରୁଷାର୍ଥ- ତଥା ବିଶ୍ୱ- ଏହାର ଉତ୍ପତ୍ତି, ଉଦ୍ଦେଶ୍ୟ, ମୂଳ କାରଣ, ଅନ୍ତିମ ପରିଣତି – ଇତ୍ୟାଦିକୁ ଅବଧାରଣା କରିବା ପାଇଁ ଦର୍ଶନ ଭିତ୍ତି ଯୋଗାଇଥାଏ । ବିଭିନ୍ନ ଯୁଗରେ ଜୀବନ ଓ ଜଗତକୁ ଏକ ବୌଦ୍ଧିକ ମାନଦଣ୍ଡରେ ବୁଝିବା ପାଇଁ – ସେହି ମାନଦଣ୍ଡ ତୁଳନାତ୍ମକ ଭାବରେ ସୁସଂଗତ ଓ ଗ୍ରହଣ ଯୋଗ୍ୟ ହୋଇପାରେ ଅଥବା ଅସଂହତ ଓ ବିରାଗଜନକ ହୋଇପାରେ – ଦାର୍ଶନିକ ମାନେ ପ୍ରୟାସ କରିଛନ୍ତି । ପାଶ୍ଚାତ୍ୟ ଦର୍ଶନ ପରମ୍ପରାରେ ପ୍ଲେଟୋ, ଦେକାର୍ତ, କାଣ୍ଟ ବା ହେଗେଲେ ହୁଅନ୍ତୁ ଅଥବା ଭାରତୀୟ ଦର୍ଶନ ପରମ୍ପରାରେ ବୁଦ୍ଧ, ଚାର୍ବାକ, କପିଳ ବା ଶଙ୍କର ହୁଅନ୍ତୁ ସେମାନେ ଜଗତ ଓ ଜୀବନକୁ ଆଧାର କରି ଏପରି ଏକ ଏକ ମୌଳିକ ତତ୍ତ୍ୱମାନ ଦେଇଛନ୍ତି ଯାହାକୁ ନେଇ ଏସମ୍ବନ୍ଧରେ ବୌଦ୍ଧିକ ଚିତ୍ର ମିଳିପାରିବ । ସେମାନଙ୍କର ପ୍ରୟାସ ଭିତରେ ଏପରି ଏକ ଏକ ବୌଦ୍ଧିକ ଚିତ୍ର ବା ଆଧାର ମିଳିଥାଏ ଯାହା ଆନୁକୂଲ୍ୟରେ ଜୀବନ ଓ ଜଗତକୁ ଅବଧାରଣା କରିହେବ । ଏହି ପରିପ୍ରେକ୍ଷୀରେ ଦର୍ଶନର ଦୁଇଟି ଆଭିମୁଖ୍ୟ ରହିପାରେ । ଗୋଟିଏ ସୃଜନଶୀଳ ଅନୁଧ୍ୟାନାତ୍ମକ (speculative) ଆଭିମୁଖ୍ୟ ହେବାବେଳେ ଅନ୍ୟଟି ସମୀକ୍ଷାମୂଳକ (critical) ଆଭିମୁଖ୍ୟ ଅଟେ । ସମୀକ୍ଷାମୂଳକ ଆଭିମୁଖ୍ୟଟି ଅଧିକ ବ୍ୟାଖ୍ୟାମୂଳକ ହେବା ବେଳେ ଅନୁଧ୍ୟାନାତ୍ମକ ଆଭିମୁଖ୍ୟଟି ସୃଜନାତ୍ମକ ଭାବନାର ଅବତାରଣା ଦିଗରେ ବ୍ରତୀ ହୋଇଥାଏ । ଉଭୟ ଆଭିମୁଖ୍ୟ ମଧ୍ୟରେ ପାର୍ଥକ୍ୟ ସତ୍ତ୍ୱେ ସେମାନଙ୍କର ପଦ୍ଧତି କ୍ଷେତ୍ରରେ ମୌଳିକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଉଭୟ ଯୁକ୍ତିଶୀଳ ପଦ୍ଧତି ଓ ତର୍କ ସମ୍ମତ ମାନଦଣ୍ଡକୁ ଗ୍ରହଣ କରିଥାନ୍ତି । ଯୁକ୍ତି ଓ ତର୍କର ପ୍ରାଧାନ୍ୟକୁ ଗ୍ରହଣ କରୁଥିବା ହେତୁ ଦର୍ଶନର ଇତିହାସ ନୂଆ ନୂଆ ବିଚାରଦ୍ୱାରା ଋଦ୍ଧିମନ୍ତ ହୋଇଆସିଛି । ଏହା ବୌଦ୍ଧିକ ସୃଜନଶୀଳତାର ପ୍ରତୀକ । ଅପରନ୍ତୁ କୌଣସି ଚିନ୍ତନ ବା ଭାବନା ସକଳକୁ ଅପରିବର୍ତ୍ତନୀୟ ଓ ଅଭ୍ରାନ୍ତ ବୋଲି ଗ୍ରହଣ କରି ତର୍କର ମହତ୍ତ୍ୱକୁ ନ୍ୟୁନ କରିବା ଦ୍ୱାରା ବୌଦ୍ଧିକ କ୍ଷୟଶୀଳତା ଆସିଥାଏ ।

ଦର୍ଶନର ପରମ୍ପରା ଓ କୃତିଗୁଡ଼ିକୁ ବିଚାରକୁ ନେଲେ ଯେଉଁ ସବୁ ପ୍ରସଙ୍ଗ ଉପରେ ଏହା ମୁଖ୍ୟତଃ ଆଲୋଚନା କରିଆସିଛି ତାହାକୁ କେତୋଟି ମୁଖ୍ୟ ସୋପାନରେ ବିଭକ୍ତ କରାଯାଇ ପାରିବ । ସେଗୁଡ଼ିକୁ ଯଥାକ୍ରମେ ତତ୍ତ୍ୱମୀମାଂସା, ଜ୍ଞାନ ବା ପ୍ରମାଣ ମୀମାଂସା, ଆଚାର ମୀମାଂସା ଓ ସୌନ୍ଦର୍ଯ୍ୟ ମୀମାଂସା ବୋଲି ନିଆଯାଇପାରେ । ଜଗତର କିଛି ମୂଳକାରଣ ରହିଛି କି ? ପରମାର୍ଥିକ ସ୍ତରରେ ସ୍ଥିତି ବା ସତ୍ତାର ସ୍ୱରୂପ କ'ଣ ? ସତ୍ତାର

ସ୍ୱରୂପ ଭୌତିକ, ଚେତନ ନା ମାନସିକ ? ମାନସ ସତ୍ତାର ସ୍ୱତନ୍ତ୍ର ସ୍ଥିତି ରହିଛି ନା ଏହା ଭୌତିକ ସତ୍ତାର ଏକ ସୂକ୍ଷ୍ମ ପ୍ରକାଶ ମାତ୍ର ? ସେହିପରି ଭୌତିକ ପଦାର୍ଥ ସକଳକୁ ମାନସ ସତ୍ତାର ପ୍ରତୀତିମାତ୍ର ନେବା ଯୁକ୍ତିସଙ୍ଗତ କି ? ଏକତତ୍ତ୍ୱବାଦ, ଦ୍ୱୈତବାଦ, ଅଣୁବାଦ, ପ୍ରତ୍ୟୟସତ୍ତାବାଦ, ବସ୍ତୁବାଦ ଇତ୍ୟାଦି ଯେଉଁ ସିଦ୍ଧାନ୍ତ ସକଳ ଦର୍ଶନର ମହାନ କୃତିଗୁଡ଼ିକରେ ପରିପ୍ରକାଶ ପାଇଛି ସେସବୁ ତତ୍ତ୍ୱ ମୀମାଂସାର ପରିସର ଭୁକ୍ତ । ସେହିପରି ଜ୍ଞାନ ସଂକ୍ରାନ୍ତୀୟ ପ୍ରଶ୍ନମାନଙ୍କର ବିବେଚନା କରିବା ହେଉଛି ଜ୍ଞାନ ମୀମାଂସା ବା ପ୍ରମାଣ ମୀମାଂସା । ଜ୍ଞାନର ସଂଜ୍ଞା, ସ୍ୱରୂପ, ସୀମା ଇତ୍ୟାଦି ପ୍ରଶ୍ନଗୁଡ଼ିକ ସହ ସତ୍ୟ ଓ ବୈଧତାର ସ୍ୱରୂପ ଓ ସଂଜ୍ଞା ଇତ୍ୟାଦି ପ୍ରଶ୍ନଗୁଡ଼ିକ ବିଷୟରେ ଯେଉଁ ବିସ୍ତୃତ ଆଲୋଚନା ଦର୍ଶନର ଇତିହାସରେ ହୋଇଛି ସେସବୁ ଜ୍ଞାନ ମୀମାଂସାର ଅନ୍ତର୍ଭୁକ୍ତ । ଜ୍ଞାନ ଅନୁଭୂତି ନିରପେକ୍ଷ ନା ଅନୁଭବଜନ୍ୟ ? ବୋଧର ଅଗମ୍ୟ ଏପରି କିଛି ସ୍ତର ରହିପାରେ କି ? ଅଜ୍ଞାତ ଓ ଅଜ୍ଞେୟ ଭିତରେ ସୀମା କେଉଁଠି ? ଏହି ସଂକ୍ରାନ୍ତୀୟ ପ୍ରଶ୍ନ ସକଳ ଜ୍ଞାନ ମୀମାଂସାର ପରିସରଭୁକ୍ତ । ସାଧାରଣ ଜୀବନରେ ଆମେ କେତେକ କାର୍ଯ୍ୟକୁ କରଣୀୟ ଓ ଅନ୍ୟ କେତେକ କାର୍ଯ୍ୟକୁ ଅକରଣୀୟ ବା ଅନୈତିକ କହିଥାଉ । ନୀତି, ନ୍ୟାୟ, ସମତା ଇତ୍ୟାଦି ପ୍ରଶ୍ନଗୁଡ଼ିକ ସଂକ୍ରାନ୍ତରେ ବହୁ ସିଦ୍ଧାନ୍ତର ଅବତାରଣା ଧର୍ମ, ସମାଜଶାସ୍ତ୍ର, ନୀତି ଶାସ୍ତ୍ର ଇତ୍ୟାଦି ସ୍ତରରେ କରାଯାଇଛି । ବ୍ୟକ୍ତି ଆଚରଣର ମୂଲ୍ୟାୟନ କରି ଅନ୍ୟାୟ ବା ଅନୈତିକ କାର୍ଯ୍ୟକୁ ନିୟନ୍ତ୍ରିତ କରିବା ପ୍ରତ୍ୟେକ ସଭ୍ୟ ସମାଜର ଆଭିମୁଖ୍ୟ ହୋଇଆସିଛି । କିନ୍ତୁ ନୈତିକତାର ସ୍ୱରୂପ କ'ଣ ? ନୈତିକ ପ୍ରତ୍ୟୟ ଓ ଅବଧାରଣା ସହିତ ଈଶ୍ୱର ପ୍ରତୀତିର କ'ଣ ସମ୍ବନ୍ଧ ରହିଛି ? ସୁଖବାଦ, ନିଗ୍ରହବାଦ, ପୂର୍ଣ୍ଣତାବାଦ ଇତ୍ୟାଦି ନୈତିକ ସିଦ୍ଧାନ୍ତ ସକଳର ତାର୍କିକ ସ୍ୱରୂପକୁ ବିଶ୍ଳେଷଣ କରିବା ନେଇ ଦର୍ଶନର ଇତିହାସରେ ବହୁ ପ୍ରୟାସ ହୋଇଛି । ସୁତରାଂ ନୀତି, ନ୍ୟାୟ, ଭଲ, ମନ୍ଦ ଇତ୍ୟାଦି କ୍ଷେତ୍ରରେ ଯେଉଁ ମୌଳିକ ଓ ତାତ୍ତ୍ୱିକ ଆଲୋଚନା ହୋଇଛି ସେସବୁ ଆଚାର ମୀମାଂସାର ପରିସରଭୁକ୍ତ । ସେହିପରି କଳା, ସୌନ୍ଦର୍ଯ୍ୟର ସ୍ୱରୂପ କିପ୍ରକାର ? ବସ୍ତୁ ଭିତରେ ସୌନ୍ଦର୍ଯ୍ୟ ନିହିତ ନା ଏହା ଏକ ମାନସିକ ଅଭିବ୍ୟକ୍ତି ମାତ୍ର ? ସୁନ୍ଦରତାର ତାତ୍ତ୍ୱିକ ଭିତ୍ତି କିଛି ରହିଛି କି ? ଏସବୁ ପ୍ରଶ୍ନ ସୌନ୍ଦର୍ଯ୍ୟ ମୀମାଂସା (aesthetics)ରେ ଆଲୋଚିତ ହୁଏ । ଦର୍ଶନର ସାମଗ୍ରିକ ପରିସର ଭିତରେ ଏସବୁ ମୀମାଂସା ଅନ୍ତର୍ଭୁକ୍ତ । କୌଣସି ଗୋଟିଏ ବା ଏକାଧିକ ମୀମାଂସା ଉପରେ ଆଲୋଚନା କରି ଦିଗ୍‌ଦର୍ଶନ ବ୍ୟକ୍ତି କରୁଥିବା ବ୍ୟକ୍ତି ହିଁ ଦାର୍ଶନିକ । ଦର୍ଶନର ବିସ୍ତୃତି ଭିତରେ ସଂପୃକ୍ତ ପ୍ରତ୍ୟେକ ମୀମାଂସା ସ୍ୱକୀୟ ତର୍କ ଉପରେ ଆଧାରିତ । ଅର୍ଥାତ୍ ତର୍କ ଓ ତାହାର ନିୟମ ସକଳକୁ ଆଧାର ଭାବରେ ନେଇ ମୀମାଂସାଗୁଡ଼ିକ ଗଢ଼ି ଉଠିଥାଏ । ସୁତରାଂ ଦର୍ଶନର ମୂଳ ଆଧାର ହେଉଛି ତର୍କ ଓ ତଜ୍ଜନିତ ନିୟମ । ଅବଶ୍ୟ ସ୍ଥଳ ବିଶେଷରେ ଦାର୍ଶନିକ ପର୍ଯ୍ୟାଲୋଚନା କ୍ଷେତ୍ରରେ ଅତି ଗଭୀର ଓ ସୂକ୍ଷ୍ମ ସ୍ତରରେ ତାର୍କିକ

ତ୍ରୁଟି ରହିପାରେ । ସେହି ଜଟିଳତା ବା ଯୁକ୍ତିର ଅବୈଧତାକୁ ଦର୍ଶାଇବା ଦ୍ୱାରା ବିଭିନ୍ନ ମୀମାଂସା କ୍ଷେତ୍ରରେ ଭିନ୍ନ ଭିନ୍ନ ଦାର୍ଶନିକ ବ୍ୟାଖ୍ୟା ବିକାଶଲାଭ କରେ । ସୁତରାଂ ଦର୍ଶନ ଇତିହାସରେ ପରସ୍ପର ବିରୋଧୀ ସିଦ୍ଧାନ୍ତ ସକଳ ଦେଖାଯାଏ । ଦାର୍ଶନିକ ସମସ୍ୟା କ୍ଷେତ୍ରରେ ରହିଥିବା ସୈଦ୍ଧାନ୍ତିକ ଭିନ୍ନତା ତାର୍କିକ ଜଟିଳତାରୁ ଉଦ୍ଭବ ହୋଇଥାଏ ।

ଦାର୍ଶନିକ ସମସ୍ୟା ଓ ପରିଭାଷା ଯେ ଏକ ଉଚ୍ଚ ବୌଦ୍ଧିକ ସ୍ତରର ବିଷୟ ଏହା ନିଃସନ୍ଦେହ । କେତେକ ସମୟରେ ଏହି ପ୍ରଶ୍ନ ଉଠେ — ଏହାର ଜୀବନ ପ୍ରତି କ'ଣ ଉପାଦେୟତା ରହିଛି ? ଜୀବନର ବାସ୍ତବ ସମସ୍ୟା ସମାଧାନ ପରିପ୍ରେକ୍ଷୀରେ ଦର୍ଶନର କିଛି ଉପଯୋଗିତା ରହିଛି କି ? ଦର୍ଶନ କ୍ଷେତ୍ରରେ ଏହି ଯେଉଁ ପ୍ରଶ୍ନ ଉଠୁଛି ତାହା ଅନ୍ୟାନ୍ୟ ଚିନ୍ତନ ପୃଷ୍ଠଭୂମିରେ ବି ଉତ୍ଥାପିତ ହୋଇପାରିବ ! ଏପରିକି ଆଧୁନିକ ଯୁଗରେ ଯେତେବେଳେ ବିଜ୍ଞାନ ଏକ ସର୍ବଗ୍ରାସୀ ଭୂମିକା ନେଇଛି ସେତେବେଳେ ବିଜ୍ଞାନ କ୍ଷେତ୍ରରେ ମଧ୍ୟ ଏହି ପ୍ରଶ୍ନ ଉଠାଯାଇପାରିବ । ଆପେକ୍ଷିକ ତତ୍ତ୍ୱ, ବିବର୍ତ୍ତନବାଦ, ବା ବିଜ୍ଞାନର ମୌଳିକ ସିଦ୍ଧାନ୍ତ ସକଳ ସାଧାରଣ ଜୀବନ ପ୍ରବାହ ଜନିତ ସମସ୍ୟା ସହିତ ହୁଏତ ସଂଶ୍ଳିଷ୍ଟ ହୋଇନପାରେ । କିନ୍ତୁ ବିଜ୍ଞାନର ସୈଦ୍ଧାନ୍ତିକ ତତ୍ତ୍ୱଗୁଡ଼ିକର ଆଧାର ଉପରେ ପ୍ରଯୁକ୍ତି ବିଜ୍ଞାନର ପ୍ରୟୋଗ ହୁଏ । ରେଡ଼ିଓ, ଟେଲିଭିଜନ, ଉଡ଼ାଜାହାଜ, କମ୍ପ୍ୟୁଟର ଇତ୍ୟାଦି ବାସ୍ତବ ଜୀବନ ପାଇଁ ଉପଯୋଗୀ ଓ ଏସବୁ ପ୍ରଯୁକ୍ତି ବିଜ୍ଞାନର ପରିସରଭୁକ୍ତ । ପ୍ରଯୁକ୍ତି ବିଜ୍ଞାନର ସୌଧ ପ୍ରକୃତି ସଂକ୍ରାନ୍ତରେ ମୌଳିକ ଜ୍ଞାନ ଓ ତତ୍ତ୍ୱଗୁଡ଼ିକର ଭିତ୍ତି ଉପରେ ଦଣ୍ଡାୟମାନ । ସେହିପରି ସୈଦ୍ଧାନ୍ତିକ ସ୍ତରର ବୈଜ୍ଞାନିକ ଚିନ୍ତନରୁ ଦାର୍ଶନିକ ସମସ୍ୟାର ଉଦ୍ଭବ । ଦାର୍ଶନିକ ବିଶ୍ଳେଷଣ ଜନିତ ବୈଚାରିକ ସ୍ୱଚ୍ଛତା ଅଭାବରେ କୌଣସି ସିଦ୍ଧାନ୍ତର ଭିତ୍ତି ଅସୁଦୃଢ଼ । ସିଦ୍ଧାନ୍ତ ବା ନିୟମ ବ୍ୟତୀତ ପ୍ରଯୁକ୍ତି ବିଜ୍ଞାନର ବାସ୍ତବତା ଅସମ୍ଭବ । ସୁତରାଂ କେବଳ ପ୍ରଯୁକ୍ତି ବିଦ୍ୟାର ଉପଯୋଗିତାକୁ ନେଇ ବିଜ୍ଞାନକୁ ଅସ୍ୱୀକାର କରିବା ଯେପରି ଅପରିପକ୍ୱତା, ସେହିପରି ବ୍ୟବହାରିକ ସ୍ତରରେ ସୀମିତ ରହି ଦାର୍ଶନିକ ଜିଜ୍ଞାସାକୁ ନ୍ୟୂନ କରିବା ଅବିମୃଶ୍ୟକାରିତା ।

ଏତଦ୍‌ବ୍ୟତୀତ ସାଧାରଣ ଜୀବନ ପ୍ରବାହର ଘଟଣାବଳୀକୁ ଦେଖି ଜୀବନର ଲକ୍ଷ୍ୟ ବା ଶ୍ରେୟ ନେଇ ଜଣେ ଚିନ୍ତା କରିବା ଯେପରି ସ୍ୱାଭାବିକ, ପ୍ରକୃତିର ଏକରୂପତାକୁ ଲକ୍ଷ୍ୟ କରି ଏହା ପଶ୍ଚାତରେ କିଛି ଉଦ୍ଦେଶ୍ୟ ବା କୌଣସି ଈଶ୍ୱରୀୟ ବିଧାନ ରହିଛି କି ନାହିଁ ପ୍ରଶ୍ନ କରିବା ମଧ୍ୟ ସହଜଗମ୍ୟ । ସାଧାରଣ ବିଶ୍ୱାସ ସ୍ତରରେ ରହିଥିବା ନ୍ୟାୟ, ଧର୍ମ, ଈଶ୍ୱର, ଆତ୍ମା, ସମତା, ପୁରୁଷାର୍ଥ ଇତ୍ୟାଦି ପ୍ରତୀତି ଗୁଡ଼ିକର ସୈଦ୍ଧାନ୍ତିକ ଓ ତାର୍କିକ ଭିତ୍ତିକୁ ବିଶ୍ଳେଷଣ କରିବା ଅନାବଶ୍ୟକ ନୁହେଁ । କୌତୂହଳ ପ୍ରବଣତା ଓ ଜିଜ୍ଞାସୁବୋଧ ସୁସ୍ଥ ମାନସିକତାର ପରିଚାୟକ । ଏହାହିଁ ହେଉଛି ଏକ ସୃଜନଶୀଳ ଜୀବନ ଦୃଷ୍ଟି । ଏହି ସୃଜନଶୀଳ ମାନସିକତାକୁ ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ କହିଲେ ଅତ୍ୟୁକ୍ତି ହେବନାହିଁ । ପରନ୍ତୁ

ଏହାର ଅଭାବରେ ମଣିଷର ବୌଦ୍ଧିକ ଓ ସାଂସ୍କୃତିକ ବିକାଶ ଅସମ୍ଭବ ।

ଏକ ସଭ୍ୟ ସମାଜରେ ଓ ସାଧାରଣ ଜୀବନଧାରାରେ କେତେକ ଆଦର୍ଶ ଓ ଶ୍ରେୟ ରହିବା ନିଶ୍ଚିତ ଅଟେ । ସେହିପରି ପ୍ରକୃତି, ସମାଜ, ଜୀବନ ନେଇ କିଛି ତାତ୍ତ୍ୱିକ ଚିନ୍ତନ ଜନମାନସରେ ବ୍ୟକ୍ତ ହୋଇଥାଏ । ସେଥିରେ ସଂସାର ଓ ଜୀବନ ପ୍ରତି ଆଭିମୁଖ୍ୟ ବି ଅନ୍ତର୍ନିହିତ ଭାବରେ ଥାଏ । ଏସବୁକୁ ଏକ ବୌଦ୍ଧିକ ସୋପାନରେ ସମୀକ୍ଷାକରି ସେସବୁର ସୈଦ୍ଧାନ୍ତିକ ଭିତ୍ତି ନିରୂପଣ କରିବା ପାଇଁ ଯେକୌଣସି ପ୍ରୟାସ ଦ୍ୱାରା ଦାର୍ଶନିକ ପ୍ରଶ୍ନମାନଙ୍କର ଅବତାରଣା ହୁଏ । ସୁତରାଂ ଜୀବନ ପ୍ରବାହ ସହିତ ଚିନ୍ତନ ଓ କୌତୂହଳ ମନୋଭାବ ଯେପରି ଜଡ଼ିତ, କୌତୂହଳତା ଓ ଜିଜ୍ଞାସୁବୋଧ ସହିତ ଦର୍ଶନ ସେହିପରି ସଂଶ୍ଳିଷ୍ଟ ।

ମୋଟ ଉପରେ କହିବାକୁ ଗଲେ ଦର୍ଶନ ମଣିଷର ଏକ ବୌଦ୍ଧିକ ଆବଶ୍ୟକତା । ପଶୁର ଜୀବନ ଓ ମଣିଷର ଜୀବନରେ ଏହାହିଁ ପାର୍ଥକ୍ୟ ଯେ ମଣିଷ ହିଁ କେବଳ ତା'ର ଜୀବନର ଗୁଣାତ୍ମକ ମୂଲ୍ୟାୟନ କରିବାକୁ ସମର୍ଥ । ପ୍ରକୃତିକୁ ଅବବୋଧ କରି ତାହାକୁ ଜୀବନ ପାଇଁ ଉପଯୋଗ କରିବା ମଣିଷଦ୍ୱାରା ସମ୍ଭବ । ଏତଦ୍‌ବ୍ୟତୀତ ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ, ସତ୍ୟ-ଅସତ୍ୟ, ଜ୍ଞାନ-କୁସଂସ୍କାର ଇତ୍ୟାଦି ଭିତରେ ପାର୍ଥକ୍ୟ ଜାଣିବା ମଣିଷ ପକ୍ଷରେ ସମ୍ଭବ । ଏହି ତର୍କଶୀଳ ବିଚାରବୋଧ ହିଁ ହେଉଛି ଦାର୍ଶନିକ ଦୃଷ୍ଟି ।

■■

# ଦର୍ଶନର ଏକ ନୂଆ ଦିଗନ୍ତ

ସଭ୍ୟତାର ବିକାଶ ଧାରାରେ ବିଂଶ ଶତାବ୍ଦୀ ଏକ ସନ୍ଧିକ୍ଷଣ । ଏହି ଶହେ ବର୍ଷ ମଧ୍ୟରେ ବିଭିନ୍ନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ସଂଘଟିତ ହୋଇଛି । ବୈଜ୍ଞାନିକ କ୍ରିୟାଶୀଳତା ଯଥେଷ୍ଟ ବୃଦ୍ଧି ପାଇଛି । ଜ୍ଞାନର ପରିସର ବ୍ୟାପକ ହୋଇଛି । ପ୍ରଯୁକ୍ତି ବିଦ୍ୟାରେ ଅଭୂତପୂର୍ବ ସଫଳତା ଜୀବନଧାରାରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ଏହି ପୃଷ୍ଠଭୂମିରେ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ବିଂଶ ଶତାବ୍ଦୀ ଆରମ୍ଭରୁ ତୁମୁଳ ଆଲୋଡ଼ନ ଆସିଛି । ଦର୍ଶନର ସଂଜ୍ଞା, ସ୍ୱରୂପ ଓ ପରିସର ନେଇ ନାନା ଆଲୋଚନା ହୋଇଛି । ଦର୍ଶନ ବିଷୟରେ ପ୍ରାଚୀନ କାଳରୁ ରହି ଆସିଥିବା ଦୃଷ୍ଟିକୋଣରେ ମୌଳିକ ପରିବର୍ତ୍ତନ ହୋଇ ନୂଆ ଦିଗନ୍ତର ସୂତ୍ରପାତ ହୋଇଛି । ଆଧୁନିକ ଦାର୍ଶନିକ ଜିଜ୍ଞାସାରେ 'ଭାଷା ବା ପ୍ରତ୍ୟୟ ବିଶ୍ଳେଷଣ' ଏକ ମୁଖ୍ୟ ଭୂମିକା ନେଇଥିବାରୁ ସାଂପ୍ରତିକ ଯୁଗର ଦାର୍ଶନିକ ଅନ୍ୱେଷାକୁ 'ବିଶ୍ଳେଷଣ ଯୁଗ' ବୋଲି ଅଭିହିତ କରାଯାଉଛି ।

ବିଂଶ ଶତାବ୍ଦୀର ଦାର୍ଶନିକ ଅନୁଶୀଳନକୁ ବିଶ୍ଳେଷଣ ଯୁଗ ବୋଲି କୁହାଗଲେ ମଧ୍ୟ ବହୁ ଚିନ୍ତନ-ପ୍ରବାହ ଏଥିରେ ସମ୍ମିଳିତ ଥିବା ଦେଖାଯାଏ । ଗୋଟିଏ ଏକକ ଆଭିମୁଖ୍ୟ ମଧ୍ୟରେ ସାଂପ୍ରତିକ ଯୁଗର ଦାର୍ଶନିକ ଅନ୍ୱେଷାକୁ ବ୍ୟକ୍ତ କରିବା ସମ୍ଭବତଃ ଯଥାର୍ଥ ନୁହେଁ । ବରଂ ଅନେକ ଗୁଡ଼ିଏ ଧାରା ଓ ବିଚାରର ସମ୍ମିଳିତ ଅଭିବ୍ୟକ୍ତି ଆଧୁନିକ ଯୁଗର ଦାର୍ଶନିକ ଚିନ୍ତନକୁ ପୁଷ୍ଟ କରିଛି କହିଲେ ଯଥାର୍ଥ ହେବ । ବିଶ୍ଳେଷଣାତ୍ମକ ଦର୍ଶନ ଭିତରେ ଅନେକ ଗୁଡ଼ିଏ ପ୍ରବାହର ସଙ୍ଗମ ହୋଇଛି । କେତେକ ପାଶ୍ଚାତ୍ୟ ଦାର୍ଶନିକ ସେମାନଙ୍କର ଅନୁଶୀଳନ ଶୈଳୀରେ ଯେଉଁ ବୈପ୍ଳବାତ୍ମକ ଆଭିମୁଖ୍ୟ ନେଇ ଦାର୍ଶନିକ ସମସ୍ୟାମାନଙ୍କର ବିଶ୍ଳେଷଣ କରିଛନ୍ତି ସେଥିରୁ ନୂଆ ନୂଆ ଧାରାର ଉଦ୍ଭବ ହୋଇଛି । ଏହି ଧାରାଗୁଡ଼ିକ ସମ୍ମିଳିତ ହୋଇ ଏକ ନୂତନ ଯୁଗର ଭିତ୍ତି ପକାଇଛି । ଧାରାଗୁଡ଼ିକ ମଧ୍ୟରେ ବୈଶିଷ୍ଟ୍ୟଗତ ପାର୍ଥକ୍ୟ ରହିଥିଲେ ମଧ୍ୟ ପ୍ରତ୍ୟେକ ଧାରା ସାଂପ୍ରତିକ ଯୁଗର ବିଶ୍ଳେଷଣାତ୍ମକ ଦର୍ଶନ ପରମ୍ପରାକୁ ଋଦ୍ଧିମନ୍ତ କରିଛି । ମୋଟ ଉପରେ କହିଲେ ଆଧୁନିକ ବିଶ୍ଳେଷଣ ଯୁଗ କେତେଗୁଡ଼ିଏ ବୈପ୍ଳବିକ ପ୍ରବାହ ମଧ୍ୟ ଦେଇ ପରିପୁଷ୍ଟ ହୋଇଛି ।

'ବିଶ୍ଳେଷଣ' ଦାର୍ଶନିକ ଚିନ୍ତନରେ ମୁଖ୍ୟ ଭୂମିକା ନେବା ପରିପ୍ରେକ୍ଷୀରେ ପ୍ରଶ୍ନ ହେଉଛି – ଦର୍ଶନରେ କ'ଣ ବିଶ୍ଳେଷଣ କରାଯାଏ ? ଭାଷା ଓ ପ୍ରତ୍ୟୟଗୁଡ଼ିକୁ ପର୍ଯ୍ୟାଲୋଚନା କରିବା ଉପରେ ଆଧୁନିକ ଯୁଗରେ ଗୁରୁତ୍ୱ ଦିଆଯାଇଛି । ଜଗତ ବିଷୟରେ ବସ୍ତୁନିଷ୍ଠ ଜ୍ଞାନ ବୈଜ୍ଞାନିକ ପ୍ରଣାଳୀ ଦେଇ ହୋଇଥାଏ । ଯେଉଁ ପ୍ରତ୍ୟୟମାନଙ୍କ ସାହାଯ୍ୟରେ ବସ୍ତୁନିଷ୍ଠ ଜ୍ଞାନର ସୌଧ ଗଢ଼ି ଉଠିଥାଏ ସେମାନଙ୍କର ବିଶ୍ଳେଷଣ ଓ ଅର୍ଥଗତ ପରିସରର ବ୍ୟାଖ୍ୟାକୁ ଦର୍ଶନରେ ଗୁରୁତ୍ୱ ଦିଆଯାଇଛି । ଦର୍ଶନ ମୁଖ୍ୟତଃ କେତେକ ମୌଳିକ ପ୍ରତ୍ୟୟର ସଂଜ୍ଞା, ତାତ୍ପର୍ଯ୍ୟ ଓ ଅର୍ଥକୁ ବିଶ୍ଳେଷଣ କରିଥାଏ । ବିଶେଷକରି ସତ୍ୟ, ଜ୍ଞାନ, ସତ୍ତା, ବୈଧତା, ନୀତି, ସୌନ୍ଦର୍ଯ୍ୟ ଇତ୍ୟାଦି ପ୍ରତ୍ୟୟଗୁଡ଼ିକର ମୌଳିକତା ଯୋଗୁଁ ସେଗୁଡ଼ିକ ବ୍ୟାଖ୍ୟା କରିବା ଅପରିହାର୍ଯ୍ୟ ମନେହୁଏ । ସେହିପରି ଭାଷା ବିଶ୍ଳେଷଣ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ଏକ ପ୍ରମୁଖ ସ୍ଥାନ ନେଇଛି । ଜ୍ଞାନାର୍ଜନ କ୍ଷେତ୍ରରେ ଭାଷା ହିଁ ପ୍ରାଧାନ୍ୟ ନେଉଥିବାରୁ ବିଭିନ୍ନ ସମ୍ଭାଷା (discourse) ମଧ୍ୟରେ ସାମଞ୍ଜସ୍ୟ ଓ ପାର୍ଥକ୍ୟକୁ ସ୍ପଷ୍ଟ କରିବା ପାଇଁ ପ୍ରୟାସ କରାଯାଇଛି । ଗଣିତ, ବିଜ୍ଞାନ, ସମାଜଶାସ୍ତ୍ର, ନୀତିଶାସ୍ତ୍ର ଇତ୍ୟାଦି ସମ୍ଭାଷା କ୍ଷେତ୍ରରେ ଯେଉଁ ସମ୍ବନ୍ଧ ବା ପ୍ରଭେଦ ରହିଛି ତାହାର ତାତ୍ପର୍ଯ୍ୟକୁ ବିଶ୍ଳେଷଣ କରିବା ଦର୍ଶନର ଆଭିମୁଖ୍ୟ ହୋଇଛି । ମୋଟ ଉପରେ କହିଲେ ଭାଷା ବିଶ୍ଳେଷଣ ଓ ପ୍ରତ୍ୟୟ ଅନୁଶୀଳନକୁ ଦର୍ଶନର ମୁଖ୍ୟ ଲକ୍ଷ୍ୟ ଭାବରେ ଆଧୁନିକ ଯୁଗରେ ଗ୍ରହଣ କରାଯାଇଛି । ଏଠାରେ ଭାଷା ବିଶ୍ଳେଷଣ କ୍ଷେତ୍ରରେ ଦାର୍ଶନିକ ଆଭିମୁଖ୍ୟ ଓ ଆନୁଭବିକ ବା ବୈଜ୍ଞାନିକ ଆଭିମୁଖ୍ୟ ମଧ୍ୟରେ ରହିଥିବା ପାର୍ଥକ୍ୟକୁ ସ୍ପଷ୍ଟ କରିବା ଆବଶ୍ୟକ । ଆନୁଭବିକ ବା ବସ୍ତୁନିଷ୍ଠ ଭାବରେ ଭାଷାର ଉତ୍ପତ୍ତି, ସ୍ଥିତି, ନିୟମ ତଥା ଶବ୍ଦମାନଙ୍କର ବ୍ୟୁତ୍ପତ୍ତି, ଅର୍ଥ, ଅର୍ଥଗତ ପରିବର୍ତ୍ତନ, ବ୍ୟବହାର ଇତ୍ୟାଦିକୁ ଭାଷାଶାସ୍ତ୍ରୀ ବା ବ୍ୟାକରଣାକାରମାନେ ଅଧ୍ୟୟନ କରିଥାନ୍ତି ଓ ଏହି ପ୍ରକାରର ଅଧ୍ୟୟନକୁ ଆନୁଭବିକ ବ୍ୟାଖ୍ୟା କୁହାଯାଏ । କିନ୍ତୁ ଦର୍ଶନ ଶାସ୍ତ୍ରରେ ଭାଷା ଅଧ୍ୟୟନ ଏକ ଭିନ୍ନ ସ୍ତରରେ ହୋଇଥାଏ । ଅର୍ଥାତ୍ ପ୍ରତ୍ୟୟମାନଙ୍କର ତାର୍କିକ ସୀମା, ସଂଜ୍ଞା, ପରିସର ତଥା ସେମାନେ ବ୍ୟବହୃତ ହେଉଥିବା ସମ୍ଭାଷାରେ ସେମାନଙ୍କର ସ୍ୱରୂପକୁ ଅଧ୍ୟୟନ କରାଯାଏ । ଏହି ପ୍ରକାରର ଅଧ୍ୟୟନ ସମୀକ୍ଷାତ୍ମକ ବା ବିଶ୍ଳେଷଣାତ୍ମକ ଅଟେ । ସୁତରାଂ ଆଧୁନିକ ଦର୍ଶନ ଭାଷା ବିଶ୍ଳେଷଣ ଉପରେ ପ୍ରାଧାନ୍ୟ ଦେବା କହିବାବେଳେ ଏହା ବୈଜ୍ଞାନିକ ସ୍ତରର ନ ହୋଇ ଅନୁଶୀଳନାତ୍ମକ ପର୍ଯ୍ୟାୟର ହୋଇଥାଏ ।

ପ୍ରତ୍ୟୟ ବା ଭାଷା ବିଶ୍ଳେଷଣକୁ ଆଧୁନିକ ଦାର୍ଶନିକ ଚିନ୍ତନରେ ଗୁରୁତ୍ୱ ଦେବା ପଛାତରେ ଐତିହାସିକ ଓ କେତେକ ଅପରିହାର୍ଯ୍ୟ କାରଣ ମଧ୍ୟ ରହିଛି । ଏହା ଅନସ୍ୱୀକାର୍ଯ୍ୟ ଯେ ଦର୍ଶନ ପରମ୍ପରାରେ ତତ୍ତ୍ୱ ମୀମାଂସା ସର୍ବଦା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇ ଆସିଛି । ଏପରିକି ଦାର୍ଶନିକ ଚିନ୍ତନ ଓ ତତ୍ତ୍ୱ ମୀମାଂସା ଜନିତ ଜ୍ଞାନ ପରସ୍ପର

ଅଭିନ୍ନ ବୋଲି ଭାବନା ମଧ୍ୟ ସୃଷ୍ଟି ହୋଇଛି । ବୈଜ୍ଞାନିକ ଜ୍ଞାନ ଆନୁଭବିକ-ବସ୍ତୁନିଷ୍ଠ-ଜଗତ ସମ୍ବନ୍ଧରେ ହେବାବେଳେ ତତ୍ତ୍ୱ ମୀମାଂସା ଅତୀନ୍ଦ୍ରିୟ ସତ୍ତା ସମ୍ବନ୍ଧରେ ଉଦ୍ଦିଷ୍ଟ ବୋଲି ଭାବନା ସୃଷ୍ଟି ହୋଇଛି । ଜଗତ ଓ ପରମ ସତ୍ତାର ସ୍ୱରୂପକୁ ନିର୍ଣ୍ଣୟ କରିବା ତତ୍ତ୍ୱମୀମାଂସାର ଆଭିମୁଖ୍ୟ ବୋଲି ଗ୍ରହଣ କରାଯାଇଛି । ବୈଜ୍ଞାନିକ ଜ୍ଞାନର ପରିସର ସୀମିତ ହେବାବେଳେ ତତ୍ତ୍ୱମୀମାଂସା ବିଶ୍ୱ ସମ୍ବନ୍ଧରେ ଏକ ସାମଗ୍ରିକ ଚିତ୍ର ଦେବାକୁ ସମର୍ଥ ବୋଲି ଧରାଯାଇଛି । ବିସ୍ତୃତି ବା ବ୍ୟାପକତା ଦୃଷ୍ଟିରୁ ବିଜ୍ଞାନ ସମ୍ମତ ଆନୁଭବିକ ଜ୍ଞାନର ପରିସରଠାରୁ ଦାର୍ଶନିକ ଚିନ୍ତନ ସମ୍ବନ୍ଧୀୟ ତତ୍ତ୍ୱ ଜ୍ଞାନ ବୃହତ୍ତର ବୋଲି ଧାରଣା ସୃଷ୍ଟି ହୋଇଛି । ଏହି ମତ ପୃଷ୍ଠଭୂମିରେ ଏହା କୁହାଯାଇଛି ଯେ ତତ୍ତ୍ୱ ମୀମାଂସକ ଜ୍ଞାନ ଜଗତ ସମ୍ବନ୍ଧରେ ଅଭିପ୍ରେତ, ଅର୍ଥାତ୍ ଏହା ତଥ୍ୟ-ଭିତ୍ତିକ (factual); ଏବଂ ଏହି ଜ୍ଞାନ ଧ୍ରୁବ ବା ନିଶ୍ଚିତିବାଚକ (necessary) । ତତ୍ତ୍ୱ ମୀମାଂସକ ଜ୍ଞାନ ତଥ୍ୟଭିତ୍ତିକ ଓ ନିଶ୍ଚିତିବାଚକ ବୋଲି ତତ୍ତ୍ୱମୀମାଂସକ ଦାର୍ଶନିକମାନେ ଅନ୍ତତଃ ମତ ପୋଷଣ କରି ଆସିଛନ୍ତି ।

ତଥ୍ୟପରକ ଓ ନିଶ୍ଚିତିବାଚକ ଜ୍ଞାନର ସମ୍ଭାବନା କେତେ ଦୂର ରହିଛି ତାହା ଦର୍ଶନ ଇତିହାସରେ ଅବଶ୍ୟ ଆଲୋଚନା ହୋଇଛି । ଯେଉଁ ଜ୍ଞାନ ତଥ୍ୟଭିତ୍ତିକ ତାହା ସର୍ବଦା ଅନୁଭୂତିର ଆଧାର ଉପରେ ପର୍ଯ୍ୟବସିତ ଓ ତାହାର ସତ୍ୟତା ବସ୍ତୁନିଷ୍ଠ । ସୁତରାଂ ତାହାର ବିପରୀତ ମଧ୍ୟ ସମ୍ଭାବନା-ସାପେକ୍ଷ । କେବଳ ବିଶ୍ଳେଷଣାତ୍ମକ ଜ୍ଞାନ ଅନୁଭୂତି ରହିତ ଓ ଧ୍ରୁବ ବା ନିଶ୍ଚିତିବାଚକ । କୌଣସି ପ୍ରତ୍ୟୟର ସଂଜ୍ଞା ଦେବାରେ ଏହା ଉଦ୍ଦିଷ୍ଟ ଓ ଏହା ତଥ୍ୟନିଷ୍ଠ ନ ହୋଇ ସଂଜ୍ଞାନିଷ୍ଠ । ସୁତରାଂ ବିଶ୍ଳେଷଣାତ୍ମକ ବଚନର ବିପରୀତ ସ୍ୱବିରୋଧାତ୍ମକ । ଯେଉଁ ତର୍କବାକ୍ୟ ବା ବଚନ ତଥ୍ୟପରକ ତାହା ସଂଶ୍ଳେଷଣାତ୍ମକ, ଅଥଚ ଯେଉଁ ତର୍କବାକ୍ୟ ସଂଜ୍ଞାନିଷ୍ଠ ତାହା ବିଶ୍ଳେଷଣାତ୍ମକ । କେବଳ ବିଶ୍ଳେଷଣାତ୍ମକ ଜ୍ଞାନ ହିଁ ନିଶ୍ଚିତିବାଚକ, ଅର୍ଥାତ୍ ତାହା କେବେବି ଅସମ୍ଭବ ନୁହେଁ । ସୁତରାଂ ତଥ୍ୟପରକ ଜ୍ଞାନ ନିଶ୍ଚିତିବାଚକ କହିବା ସମୀଚୀନ ମନେହୁଏ ନାହିଁ ।

'ତତ୍ତ୍ୱମୀମାଂସକ ଜ୍ଞାନ ତଥ୍ୟଭିତ୍ତିକ ଓ ବିଶ୍ଳେଷଣାତ୍ମକ' ଏହି ଭାବନାର ଅସାରତା ପ୍ରତିପାଦନ କରିବା ପାଇଁ ତତ୍ତ୍ୱ ମୀମାଂସା ସମ୍ବନ୍ଧରେ ବହୁ ଆଲୋଚନା ହୋଇଛି । ଦର୍ଶନର ସୁଦୀର୍ଘ ଇତିହାସରେ– ଏହା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦାର୍ଶନିକ ପରମ୍ପରା ପାଇଁ ପ୍ରଯୁଜ୍ୟ– ଏକ ତାତ୍ତ୍ୱିକ ସିଦ୍ଧାନ୍ତର ବିରୋଧ ଏକ ଅନୁରୂପ ତତ୍ତ୍ୱମୀମାଂସାର ପ୍ରତିଷ୍ଠା ପାଇଁ କରାଯାଇଛି । କୌଣସି ଦାର୍ଶନିକ ଏକ ତାତ୍ତ୍ୱିକ ସିଦ୍ଧାନ୍ତର ପ୍ରତିପାଦନ ପାଇଁ ପ୍ରୟାସ କଲାବେଳେ ଅତୀତର ତାତ୍ତ୍ୱିକ ସିଦ୍ଧାନ୍ତ ସକଳ କ୍ଷେତ୍ରରେ ତ୍ରୁଟି ଦର୍ଶାଇଛନ୍ତି । ଦାର୍ଶନିକ ପରମ୍ପରାରେ ଏହିପରି ସମାଲୋଚନା ଦ୍ୱାରା ଅତୀତର ସିଦ୍ଧାନ୍ତ କ୍ଷେତ୍ରରେ ରହିଥିବା ସୂକ୍ଷ୍ମ ତ୍ରୁଟି ବା ଅସଂଗତିକୁ ଦର୍ଶାଇ ଭିନ୍ନ ସିଦ୍ଧାନ୍ତର ଅବତାରଣା କରାଯାଇଛି । ଯେଉଁ ଦାର୍ଶନିକ ମତ ଗୋଟିଏ ସମୟରେ ବେଶ୍ ଆକର୍ଷଣୀୟ ମନେ ହେଉଥିଲା ତାହା ପରବର୍ତ୍ତୀ ଯୁଗରେ

ଏକ ସମାନ୍ତରାଳ ସିଦ୍ଧାନ୍ତ ପୃଷ୍ଠଭୂମିରେ ତ୍ରୁଟିପୂର୍ଣ୍ଣ ମନେହୋଇଛି । ଏହିପରି ନାନା ବୌଦ୍ଧିକ ମତ, ସିଦ୍ଧାନ୍ତ ଓ ତାତ୍ତ୍ୱିକ ବିଚାର ସକଳକୁ ନେଇ ଦର୍ଶନର ଇତିହାସ ପୁଷ୍ଟ ହୋଇଛି । ତାର୍କିକ ମାନଦଣ୍ଡରେ ପରସ୍ପର ଅସଙ୍ଗତ ଓ ଏପରିକି ବିରୋଧୀ ତତ୍ତ୍ୱସିଦ୍ଧାନ୍ତ (Metaphysical therories) ଦର୍ଶନରେ ଦେଖିବାକୁ ମିଳେ । ଏକତତ୍ତ୍ୱବାଦ, ଦ୍ୱିତତ୍ତ୍ୱବାଦ, ବହୁତତ୍ତ୍ୱବାଦ ଇତ୍ୟାଦି ଗୋଟିଏ ଗୋଟିଏ ତାତ୍ତ୍ୱିକ ସିଦ୍ଧାନ୍ତ ଭାବରେ ତତ୍ତ୍ୱମୀମାଂସାରେ ଦେଖିବାକୁ ମିଳେ । ଜଗତର ମୌଳିକ ସତ୍ତା କ'ଣ ଓ ସେପରି ସତ୍ତା ଥିଲେ ତାହାର ସ୍ୱରୂପ କି ପ୍ରକାରର ପ୍ରଶ୍ନ ଉପରେ ଏହି ସବୁ ସିଦ୍ଧାନ୍ତମାନ ଦାର୍ଶନିକ ଚିନ୍ତନ ଭିତରେ ଅଭ୍ୟୁଦୟ ହୋଇଛି । ବସ୍ତୁ ସ୍ୱାତନ୍ତ୍ର୍ୟବାଦ ବା realism (ତାହା ପୁଣି ପ୍ରତ୍ୟୟିକ, ବସ୍ତୁ ସ୍ୱାତନ୍ତ୍ରିକ, ସମୀକ୍ଷାତ୍ମକ, ନବ୍ୟ ଇତ୍ୟାଦି ନାନା ପ୍ରକାରର ହୋଇପାରେ), ପ୍ରତ୍ୟୟ ସତ୍ତାବାଦ ବା idealism(ତାହା ବିଷୟନିଷ୍ଠ, ବିଷୟୀନିଷ୍ଠ ଅବୈକ୍ତିକ ଇତ୍ୟାଦି ନାନା ପ୍ରକାରର ହୋଇପାରେ), ଅପ୍ରପଞ୍ଚବାଦ ବା acosmism ଗୋଟିଏ ଗୋଟିଏ ତାତ୍ତ୍ୱିକ ସିଦ୍ଧାନ୍ତକୁ ଉପସ୍ଥାପନ କରେ । ଜଗତ ସମ୍ବନ୍ଧରେ ଆମର ଜ୍ଞାନ, ଜ୍ଞାନର ସ୍ୱରୂପ ଇତ୍ୟାଦି ପ୍ରଶ୍ନକୁ ତାତ୍ତ୍ୱିକ ବ୍ୟାଖ୍ୟା କରିବା ନେଇ ଏପରି ନାନା ତାତ୍ତ୍ୱିକ ସିଦ୍ଧାନ୍ତ ଦୃଷ୍ଟିଗୋଚର ହୁଏ । ଗୋଟିଏ ସିଦ୍ଧାନ୍ତକୁ ଗ୍ରହଣ କରିବା ଅର୍ଥ ଅନୁରୂପ ଅନ୍ୟ ସିଦ୍ଧାନ୍ତକୁ ଅସ୍ୱୀକାର କରିବା । କାରଣ ଗୋଟିଏ ପ୍ରଶ୍ନ ଉପରେ ପରସ୍ପରଂ ବିରୋଧୀ ବା ଅସଂଲଗ୍ନ ସିଦ୍ଧାନ୍ତମାନଙ୍କୁ ଏକତ୍ର ଗ୍ରହଣ କରାଯିବା ସମ୍ଭବ ନୁହେଁ । ସାଧାରଣ ତର୍କ ପ୍ରୟୋଗ କରି କୁହାଯାଇପାରେ ଯେ ଯଦି କ ଖ ଅଟେ ତେବେ କ ଅ-ଖ ହୋଇପାରିବ ନାହିଁ । ତତ୍ତ୍ୱମୀମାଂସା କ୍ଷେତ୍ରରେ ଏହିପରି ନାନା ବିରୁଦ୍ଧ ସିଦ୍ଧାନ୍ତ ଦେଖିବାକୁ ମିଳେ, ସୁତରାଂ ତତ୍ତ୍ୱ ମୀମାଂସକ ଜ୍ଞାନ ବସ୍ତୁନିଷ୍ଠ ଓ ବିଶ୍ଳେଷଣାତ୍ମକ ବା ନିଶ୍ଚିତିବାଚକ କହିବା ଅବାନ୍ତର ମନେହୁଏ ।

ଏହି ପୃଷ୍ଠଭୂମିରେ ଆଧୁନିକ ଯୁଗରେ ତାତ୍ତ୍ୱିକ ସମସ୍ୟାଗୁଡ଼ିକ କାହିଁକି ଓ କିପରି ଉଦ୍ରେକ ହୋଇଥାଏ ସେକ୍ଷେତ୍ରରେ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ ହୋଇଛି । ଏହା ସତ୍ୟ ଯେ ଦାର୍ଶନିକ ବୈଜ୍ଞାନିକଙ୍କ ପରି କୌଣସି ଘଟଣା, କାର୍ଯ୍ୟ ବା ଅନୁଭୂତିକୁ ବସ୍ତୁନିଷ୍ଠ ଭାବରେ ବ୍ୟାଖ୍ୟା କରିବାକୁ ଆଗ୍ରହୀ ନୁହନ୍ତି । ବରଂ କେତେକ ପ୍ରତ୍ୟୟର ସ୍ୱରୂପ ଓ ତାର୍କିକ ଭିତ୍ତି ନିର୍ଣ୍ଣୟ କରିବାକୁ ଯାଇ ତତ୍ତ୍ୱମୀମାଂସା ଭିତରେ ନିବଦ୍ଧ ହୋଇଯାନ୍ତି ବା କୌଣସି ସିଦ୍ଧାନ୍ତର ଅବତାରଣା କରିଥାନ୍ତି । ଅର୍ଥାତ୍ ଦାର୍ଶନିକ ବିଶ୍ଳେଷଣ ଓ ଅନୁଶୀଳନ କରିଆରେ କିଛି ତାତ୍ତ୍ୱିକ ପ୍ରଶ୍ନ ଉତ୍‌ଥାପନ କରିଥାନ୍ତି । ସୁତରାଂ ତାତ୍ତ୍ୱିକ ସିଦ୍ଧାନ୍ତ ପଶ୍ଚାତରେ ତର୍କ, ପ୍ରତ୍ୟୟାତ୍ମକ ଅନୁଶୀଳନ ଓ ଭାଷା ବିଶ୍ଳେଷଣ ଥାଏ । ସେଗୁଡ଼ିକ ବସ୍ତୁନିଷ୍ଠ ସମସ୍ୟା ନୁହେଁ, କିମ୍ବା କୌଣସି ପରୀକ୍ଷଣ ବା ପର୍ଯ୍ୟବେକ୍ଷଣଦ୍ୱାରା ସେମାନଙ୍କ ସମସ୍ୟାର ସମାଧାନ୍ ସମ୍ଭବ ନୁହେଁ । ବସ୍ତୁନିଷ୍ଠ ଜ୍ଞାନ କ୍ଷେତ୍ରରେ ପରସ୍ପର ବିରୋଧୀ ପ୍ରକଳ୍ପ ସମୟରେ ସୃଷ୍ଟି ହୋଇଥାଏ । ସେପରି କ୍ଷେତ୍ରରେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣର ପରିସରକୁ ଅଧିକ ବ୍ୟାପକ କରିବାଦ୍ୱାରା

ତଥା ଅନ୍ୟାନ୍ୟ ତଥ୍ୟମାନଙ୍କର ଯଥାର୍ଥତାକୁ ପ୍ରତ୍ୟକ୍ଷ କରି ଏହି ସମସ୍ୟାର ସମାଧାନ କରାଯାଇଥାଏ । କିନ୍ତୁ ଦର୍ଶନ ଶାସ୍ତ୍ରରେ ରହିଥିବା ପରସ୍ପର ବିରୋଧୀ ବା ଅସଂଲଗ୍ନ ତାତ୍ତ୍ୱିକ ସିଦ୍ଧାନ୍ତମାନଙ୍କ ପୃଷ୍ଠଭୂମିରେ ସେଗୁଡ଼ିକର କୌଣସି ବସ୍ତୁନିଷ୍ଠ ସମାଧାନ ସମ୍ଭବ ନୁହେଁ । କାରଣ ଏକ ତତ୍ତ୍ୱମୀମାଂସକ ସିଦ୍ଧାନ୍ତ ତଥ୍ୟ ଆଧାରିତ ନ ହୋଇ ପ୍ରତ୍ୟୟ-ବିଶ୍ଳେଷଣ ପରିସରଭୁକ୍ତ ଅଟେ । ଅର୍ଥାତ୍ ଏହା ଏକ ନିର୍ଦ୍ଦିଷ୍ଟ ପ୍ରକାର ବିଶ୍ଳେଷଣରୁ ଉଦ୍ଭବ ହୋଇଥାଏ । ମୋଟ ଉପରେ କହିଲେ ତତ୍ତ୍ୱ ମୀମାଂସା ଜନିତ ସିଦ୍ଧାନ୍ତଗୁଡ଼ିକ ପଶ୍ଚାତରେ କୌଣସି ଆନୁଭବିକ ବା ପରୀକ୍ଷଣ ଜନିତ ବ୍ୟାଖ୍ୟା ବା ସାମାନ୍ୟୀକରଣ ନଥାଏ ବରଂ ପ୍ରତ୍ୟୟାତ୍ମକ ବିଶ୍ଳେଷଣ ପରିସରରେ ସେଗୁଡ଼ିକ ବୋଧଗମ୍ୟ ହୋଇଥାଏ । ବସ୍ତୁତଃ ଦାର୍ଶନିକ ସିଦ୍ଧାନ୍ତଗୁଡ଼ିକର ଭିତ୍ତି ପ୍ରତ୍ୟୟାତ୍ମକ ବା ବିଶ୍ଳେଷଣାତ୍ମକ । ସେସବୁ ଜଗତ ବିଷୟରେ ତଥ୍ୟପରକ ଜ୍ଞାନ ଦିଅନ୍ତି ନାହିଁ ବରଂ ଏକ ପ୍ରତ୍ୟୟାତ୍ମକ ମାନଦଣ୍ଡ ଦେଇଥାନ୍ତି ଯାହାର ଆଧାର ଉପରେ ଆମର ଅନୁଭୂତି ବା ବସ୍ତୁ ସକଳକୁ ଅବଧାରଣା କରିହେବ ।

ସାଂପ୍ରତିତ ଯୁଗରେ ତତ୍ତ୍ୱମୀମାଂସକ ଜ୍ଞାନର ମୌଳିକ ସ୍ୱରୂପ, ସମ୍ଭାବନା ଓ ବାସ୍ତବତା ନେଇ ପ୍ରଶ୍ନ ଉଠିଛି । ଅତୀତରେ ଦର୍ଶନ ଇତିହାସରେ କେତେକ ଧୂରୀଣ ଦାର୍ଶନିକ ଏହି ପ୍ରଶ୍ନ ବି ଉଠାଇଛନ୍ତି । କାଣ୍ଟଙ୍କ ପରି ପ୍ରସିଦ୍ଧ ଦାର୍ଶନିକ ଏହି ପୃଷ୍ଠଭୂମିରେ ଜ୍ଞାନର ସ୍ୱରୂପକୁ ବିଶ୍ଳେଷଣ କରି ମଣିଷ ବୋଧିର ସୀମା ନିର୍ଣ୍ଣୟ କରିଛନ୍ତି । କାଣ୍ଟଙ୍କ ମତରେ ଇନ୍ଦ୍ରିୟାନୁଭବ ଓ ତର୍କବୁଦ୍ଧିର ସମ୍ମିଳିତ ସହଯୋଗରେ ଜ୍ଞାନର ଉଦ୍ଭବ ହୋଇଥାଏ । ଆମର ସକଳ ଜ୍ଞାନ ଅନୁଭବରୁ ଆରମ୍ଭ ହୁଏ କିନ୍ତୁ ତର୍କବୁଦ୍ଧି ବ୍ୟତୀତ କେବଳ ଅନୁଭବରୁ ଜ୍ଞାନର ଉଦ୍‌ଭବ ହେବା ସମ୍ଭବ ନୁହେଁ । ଅନୁଭବ ଜରିଆରେ ଆମେ ଯାହା ପାଉ ତାକୁ ଆମର ତର୍କବୁଦ୍ଧି ପ୍ରତ୍ୟୟାତ୍ମକ ରୂପ ଦେଇ ଜ୍ଞାନର ସ୍ୱରୂପ ପ୍ରସ୍ତୁତ କରେ । ଜ୍ଞାନର ପରିସର ଭିତରେ ଅନୁଭବ ଓ ପ୍ରାଗନୁଭବିକ ଉପକରଣ ଉଭୟ ରହିଥାଏ । କେବଳ ଅନୁଭବ ବା କେବଳ ତର୍କବୁଦ୍ଧି ସାହାଯ୍ୟରେ ବସ୍ତୁଜଗତ ବିଷୟକ ଜ୍ଞାନ ସମ୍ଭବ ନୁହେଁ, ଏ ଉଭୟର ସମନ୍ୱୟ ଜରିଆରେ ହିଁ ବସ୍ତୁନିଷ୍ଠ ଜ୍ଞାନର ସୌଧ ଗଢ଼ି ଉଠିଥାଏ । କିନ୍ତୁ ତତ୍ତ୍ୱମୀମାଂସକ ଜ୍ଞାନକ୍ଷେତ୍ରରେ ଅନୁଭବର ସୀମାକୁ ଉଲଙ୍ଘନ କରି କେବଳ ତର୍କବୁଦ୍ଧିର ପ୍ରୟୋଗ କରି ଏହାକୁ ଉତ୍‌ଥାପନ କରାଯାଇଥାଏ । ତତ୍ତ୍ୱମୀମାଂସା ଅନୁଭବରୁ ମୁକ୍ତ ରହି ଅନୁଭବାତୀତ ବସ୍ତୁ ବିଷୟରେ କହିବାକୁ ଯାଇ ଅମୀମାଂସିତ ସମସ୍ୟା ସୃଷ୍ଟି କରିଥାଏ । ଅବଶ୍ୟ ବୌଦ୍ଧିକ ସ୍ତରରେ ଏହା ଏକ ସ୍ୱାଭାବିକ ପ୍ରବଣତା ଭାବରେ ଉଦ୍ଭବ ହୋଇଥାଏ । ଏହାର ବସ୍ତୁନିଷ୍ଠ ଆଧାର ନ ଥାଏ ବା ଏହା କୌଣସି ପରୀକ୍ଷଣଯୋଗ୍ୟ ସତ୍ୟତାକୁ ପ୍ରତିଷ୍ଠା କରେ ନାହିଁ । ଅର୍ଥାତ୍ ତତ୍ତ୍ୱମୀମାଂସା ତର୍କବୁଦ୍ଧି ଜନିତ ପ୍ରବଣତା ଓ ବୌଦ୍ଧିକ ଅନୁସନ୍ଧିତ୍ସାରୁ କେବଳ ଉତ୍ପନ୍ନ ହୋଇଥାଏ ।

ବିଂଶ ଶତାବ୍ଦୀର ଆରମ୍ଭରେ ତାର୍କିକ ପ୍ରତ୍ୟକ୍ଷବାଦ (Logical Positivism)

ନାମକ ଏକ ଦାର୍ଶନିକ ବିଦ୍ୟାଳୟ ତର୍କମୀମାଂସାକୁ ଏକ ଭିନ୍ନ ମାନଦଣ୍ଡରୁ ଆହ୍ୱାନ ଦେଇଛି । ବିଶ୍ଳେଷଣ ଯୁଗର ଆରମ୍ଭରେ ତାର୍କିକ ପ୍ରତ୍ୟକ୍ଷବାଦ ଏକ ପ୍ରଭାବଶାଳୀ ଦାର୍ଶନିକ ଚିନ୍ତନ ଭାବେ ତତ୍ତ୍ୱ ମୀମାଂସାକୁ ବିରୋଧ କରି ଏହାର ସିଦ୍ଧାନ୍ତ ଦେଇଥିଲା । ଏହା ଅର୍ଥପୂର୍ଣ୍ଣ ସମ୍ଭାଷା କ୍ଷେତ୍ରରେ ମୁଖ୍ୟତଃ ଏକ ମାନଦଣ୍ଡ ନିରୂପଣ କରିଥିଲା । ଏହା ଅନୁଯାୟୀ ବୋଧିତ ଅର୍ଥ (Cognitive meaning) ରହିବାକୁ ହେଲେ ଏକ ତର୍କବଚନ ବିଶ୍ଳେଷଣାତ୍ମକ ବା ସଂଶ୍ଳେଷଣାତ୍ମକ ହେବା ଆବଶ୍ୟକ । ଏକ ବିଶ୍ଳେଷଣାତ୍ମକ ବାକ୍ୟରେ ବିଧେୟ ଉଦ୍ଦେଶ୍ୟର ଅର୍ଥକୁ ପୁନଃ ପ୍ରକାଶ କରିଥାଏ କିମ୍ବା ଉଦ୍ଦେଶ୍ୟର ଅର୍ଥ ଭିତରେ ସନ୍ନିହିତ ଥିବା ଭାବକୁ ବ୍ୟକ୍ତ କରିଥାଏ । ସୁତରାଂ ସମସ୍ତ ବିଶ୍ଳେଷଣାତ୍ମକ ତର୍କବାକ୍ୟ ଧ୍ରୁବ ଭାବରେ ସତ୍ୟ ଅଟେ ଓ ତାହାର ବିପରୀତ ଏକ ସ୍ୱବିରୋଧାତ୍ମକ ବାକ୍ୟ ହୁଏ । ଏଗୁଡ଼ିକ ଜଗତ ବିଷୟରେ କୌଣସି ତଥ୍ୟପରକ ଜ୍ଞାନ ଦିଅନ୍ତି ନାହିଁ । ଅପରପକ୍ଷରେ ସଂଶ୍ଳେଷଣାତ୍ମକ ବାକ୍ୟରେ ବିଧେୟ ଉଦ୍ଦେଶ୍ୟ ସମ୍ବନ୍ଧରେ କିଛି ତଥ୍ୟ ପୂର୍ଣ୍ଣ ବିବରଣ ଦେଇଥାଏ ଯାହା ସତ୍ୟ ବା ମିଥ୍ୟା ହୋଇପାରେ । ଏହି ଶ୍ରେଣୀର ବାକ୍ୟ ସତ୍ୟ କିମ୍ବା ମିଥ୍ୟା ଅଟେ ଓ ଏହି ସତ୍ୟ-ମିଥ୍ୟା ନିରୂପଣ ପାଇଁ ବସ୍ତୁନିଷ୍ଠ ପରୀକ୍ଷଣକୁ ଆଧାର ଭାବରେ ନିଆଯାଏ । ବିଶ୍ଳେଷଣାତ୍ମକ ଓ ସଂଶ୍ଳେଷଣାତ୍ମକ ବଚନମାନଙ୍କୁ ଛାଡ଼ିଦେଲେ ଅନ୍ୟ ବାକ୍ୟମାନଙ୍କର ବୋଧିତ ଅର୍ଥ ନ ଥାଏ । ତତ୍ତ୍ୱମୀମାଂସା ଜନିତ ଜ୍ଞାନ ସତ୍ୟ ବା ମିଥ୍ୟା ନ ହୋଇ ବୋଧଶୂନ୍ୟ ବୋଲି ତାର୍କିକ ପ୍ରତ୍ୟକ୍ଷବାଦ ମତପୋଷଣ କରେ । ତାର୍କିକ ପ୍ରତ୍ୟକ୍ଷବାଦର ବୋଧିତ ଅର୍ଥ ନିରୂପଣ ପାଇଁ ପ୍ରସ୍ତାବିତ ମାନଦଣ୍ଡ କିମ୍ବା ସତ୍ୟମିଥ୍ୟା ନିର୍ଣ୍ଣୟ କ୍ଷେତ୍ରରେ ପରୀକ୍ଷଣ ଜନିତ ପଦ୍ଧତିର ନାନା ଆଲୋଚନା ହୋଇଯାଇଛି ଓ ସେହି ପରିପ୍ରେକ୍ଷୀରେ ଏହାର ମୂଳ ଭାବନା କ୍ଷେତ୍ରରେ କେତେକ ପରିବର୍ତ୍ତନ ମଧ୍ୟ ହୋଇଛି । ହୁଏତ ପରବର୍ତ୍ତୀ ଯୁଗରେ ଏହି ବିଦ୍ୟାଳୟଟିର ବିଲୋପ ହୋଇଯାଇଛି କିନ୍ତୁ ତତ୍ତ୍ୱମୀମାଂସା କ୍ଷେତ୍ରରେ ଏ ଯେଉଁ ତାର୍କିକ ନିଷ୍କର୍ଷର ଅବତାରଣା କରିଛି ତାହାର ପ୍ରଭାବକୁ ତତ୍ତ୍ୱମୀମାଂସାର ସମାଲୋଚନା କ୍ଷେତ୍ରରେ ନ୍ୟୁନ କରାଯାଇ ପାରିବ ନାହିଁ ।

ବିଂଶ ଶତାବ୍ଦୀରେ ତତ୍ତ୍ୱ-ମୀମାଂସା-ବିରୋଧୀ ଚିନ୍ତନ ଧାରାରେ ବର୍ଟ୍ରାଣ୍ଡ ରସେଲ, ଜି.ଇ.ମୁର୍ ଓ ଉଇଟ୍‌ଗେନଷ୍ଟାଇନ୍ ସବୁଠାରୁ ଅଧିକ ପ୍ରଭାବଶାଳୀ ଦାର୍ଶନିକ ଭାବରେ ନିଜ ନିଜର ସ୍ୱାକ୍ଷର ରଖିଯାଇଛନ୍ତି । ସେମାନେ ସ୍ୱ ସ୍ୱ ଶୈଳୀରେ ତତ୍ତ୍ୱମୀମାଂସାର ସିଦ୍ଧାନ୍ତ ସକଳକୁ ଅସାର ବୋଲି ଦର୍ଶାଇଛନ୍ତି । ବିଶେଷକରି ଉଇଟ୍‌ଗେନଷ୍ଟାଇନ୍ ସାଧାରଣ ଭାଷା ବିଶ୍ଳେଷଣକୁ ମୁଖ୍ୟ ସ୍ଥାନ ଦେଇ ତାତ୍ତ୍ୱିକ ସମସ୍ୟାଗୁଡ଼ିକର ଉଦ୍ଭବ ସମ୍ବନ୍ଧରେ ଅତି ଚମତ୍କାର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ଭାଷାର ବହୁବିଧ ବ୍ୟବହାରକୁ ଆଲୋଚନା କରି ସେ ମଧ୍ୟ ବୋଧିତ ଅର୍ଥର ଏକ ମାନଦଣ୍ଡ ନିରୂପଣ କରିଛନ୍ତି । ତାତ୍ତ୍ୱିକ ମୀମାଂସାରେ ରହିଥିବା ସିଦ୍ଧାନ୍ତ ଗୁଡ଼ିକର ବିଶ୍ଳେଷଣ କରି ସେଗୁଡ଼ିକ କିପରି ତାର୍କିକ ତ୍ରୁଟିର ପରିଣାମ ଓ ଭାଷା

ବ୍ୟବହାର ଜନିତ ଜଟିଳତାରୁ ସୃଷ୍ଟ ତାହା ଦର୍ଶାଇଛନ୍ତି । ସେହି ସମସ୍ୟାଗୁଡ଼ିକ ପ୍ରହେଳିକା ସଦୃଶ । ଭାଷା ବ୍ୟବହାର କ୍ଷେତ୍ରରେ କେତେକ ଭ୍ରମ, ସମସ୍ତ ସମ ପର୍ଯ୍ୟାୟ ଭିତ୍ତିକ ଶବ୍ଦମାନଙ୍କୁ ଏକ ପ୍ରକାର ଢାଞ୍ଚାରେ ବୁଝିବା ପାଇଁ ପ୍ରୟାସ, ଛବିଳ ଚିନ୍ତନ, ଅର୍ଥ-ସାମାନ୍ୟକରଣ ଇତ୍ୟାଦି କାରଣ ଯୋଗୁଁ କେତେକ ଜଟିଳତା ଆସିଥାଏ ଯାହାର ପରିଣାମ ସ୍ୱରୂପ ତାତ୍ତ୍ୱିକ ସିଦ୍ଧାନ୍ତର ଉଦ୍ଭବ ହୁଏ । ସେହିପରି ତର୍କ ବଚନମାନଙ୍କର ବ୍ୟାକରଣଗତ ସାମଞ୍ଜସ୍ୟକୁ ଦେଖି ସେମାନଙ୍କର ତାର୍କିକ ଭିନ୍ନତାକୁ ଏଡ଼େଇ ଯାଇ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ଆକୃତି ଭିତରେ ବୁଝିବାର ପ୍ରୟାସ ଭିତରୁ ଦାର୍ଶନିକ ସମସ୍ୟାର ଉଦ୍ରେକ ହୁଏ । ଭାବ ବିନିମୟ ତଥା ଜୀବନଧାରା ସହିତ ସମ୍ବନ୍ଧ ପୃଷ୍ଠଭୂମିରେ ଭାଷାର ତାତ୍ପର୍ଯ୍ୟକୁ ଦେଖିଲେ ତାତ୍ତ୍ୱିକ ସମସ୍ୟାକୁ ଏଡାଯାଇ ପାରିବ । ଅର୍ଥାତ୍ ଜୀବନ ଓ ଭାବ ବିନିମୟଠାରୁ ଭାଷାକୁ ଦୂରେଇ ଦେଇ ପ୍ରତ୍ୟୟମାନଙ୍କର ଅମୂର୍ତ୍ତ ବିଶ୍ଳେଷଣ ଭିତରେ ଉପରୋକ୍ତ ତ୍ରୁଟି ରହିଲେ ଦାର୍ଶନିକ ସମସ୍ୟା ଆସିଥାଏ । ଭାଷା ବହୁବିଧ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଥାଏ । ଏହାକୁ ଗୁରୁତ୍ୱ ନ ଦେଇ ଅର୍ଥ କ୍ଷେତ୍ରରେ ଏକ ମାନ ନିର୍ଣ୍ଣୟ କରି ସବୁ ପ୍ରକାର ପ୍ରତ୍ୟୟକୁ ଗୋଟିଏ ମାନରେ ପକାଇବା ଫଳରେ ଏହିସବୁ ସମସ୍ୟା ଉଦ୍ରେକ ହୋଇଥାଏ ।

ମୋଟଉପରେ କହିବାକୁ ଗଲେ ବିଂଶ ଶତାବ୍ଦୀ ଆରମ୍ଭରୁ ଦାର୍ଶନିକ ସମସ୍ୟାମାନଙ୍କର ବିଶ୍ଳେଷଣ କ୍ଷେତ୍ରରେ ଭାଷା ଅନୁଶୀଳନ ଓ ପ୍ରତ୍ୟୟ ବିଶ୍ଳେଷଣ ଏକ ମୁଖ୍ୟ ଭୂମିକା ନେଇପାରିଛି । ଯେକୌଣସି ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ଚିନ୍ତନ ପରିପ୍ରେକ୍ଷୀରେ ପ୍ରତ୍ୟୟ ବିଶ୍ଳେଷଣକୁ ସାଂପ୍ରତିକ ଦର୍ଶନର ପ୍ରମୁଖ କାର୍ଯ୍ୟ ବୋଲି ଗ୍ରହଣ କରାଯାଇଛି । ଅବଶ୍ୟ ଅତୀତରେ ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ପ୍ରତ୍ୟୟ ବିଶ୍ଳେଷଣ ହେଉଥିଲା, କିନ୍ତୁ ତାହାକୁ ଦର୍ଶନର ମୌଳିକ ଆଭିମୁଖ୍ୟ ଭାବରେ ଗ୍ରହଣ କରାଯାଉ ନ ଥିଲା । କିନ୍ତୁ ଆଧୁନିକ ଚିନ୍ତନରେ ଏହାକୁ ଦର୍ଶନର ପ୍ରମୁଖ କାର୍ଯ୍ୟ ବୋଲି ଗ୍ରହଣ କରାଯାଉଛି । ଏପରିକି ଉଇଟଗେନ୍‌ଷ୍ଟାଇନ୍ ଦାର୍ଶନିକ ସମସ୍ୟାର ସମାଧାନ କ୍ଷେତ୍ରରେ ତାତ୍ତ୍ୱିକ ସମସ୍ୟାଗୁଡ଼ିକର ବିଲୋପକୁ ଗୁରୁତ୍ୱ ଦେଇଛନ୍ତି । ପ୍ରତ୍ୟେକ ତତ୍ତ୍ୱ ମୀମାଂସକ ସମସ୍ୟା ପଶ୍ଚାତରେ ଥିବା ଭାଷାଗତ ଜଟିଳତା ଓ ତାର୍କିକ ଭ୍ରାନ୍ତିକୁ ଦୂର କରିବା ହିଁ ଏହାର ଯଥାର୍ଥ ସମାଧାନ ବୋଲି ସେ ସୂଚାଇଛନ୍ତି । ଅର୍ଥାତ୍ ଭ୍ରାନ୍ତିକୁ ସଂପୂର୍ଣ୍ଣ ଭାବରେ ଜାଣି ସେହି ଜଟିଳତାରୁ ମୁକ୍ତ ହେବାରେ ଦାର୍ଶନିକ ସମସ୍ୟା ସମାଧାନ ନିହିତ ବୋଲି ସେ ଦର୍ଶାଇଛନ୍ତି । ଭାଷା ବିଶ୍ଳେଷଣ ଓ ପ୍ରତ୍ୟୟ ଅନୁଶୀଳନକୁ ସାଂପ୍ରତିକ ଦାର୍ଶନିକ ଅନ୍ୱେଷାରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ଏହି ଆଭିମୁଖ୍ୟ ମଧ୍ୟରେ ଅନେକ ଗୁଡ଼ିଏ ପ୍ରବାହର ସମନ୍ୱୟରେ ଭାଷା ବିଶ୍ଳେଷଣ ଜନିତ ଦାର୍ଶନିକ ପରମ୍ପରାଟି ପରିପୁଷ୍ଟ ହୋଇଛି ।

ଏକ ସମୟରେ ଭାଷା ବିଶ୍ଳେଷଣ ପୃଷ୍ଠଭୂମିରେ ଏହା କୁହାଯାଉଥିଲା ଯେ ଆମର ସାଧାରଣ ଭାଷା ଜଟିଳ ଦାର୍ଶନିକ ସମସ୍ୟା ଉଦ୍ରେକ କରାଉଥିବାରୁ ଏହା ବିନିମୟରେ

ଏକ କୃତ୍ରିମ ଭାଷା ବ୍ୟବହାର କରିବା ଆବଶ୍ୟକ । ଅର୍ଥାତ୍ ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ଏହି କୃତ୍ରିମ ଭାଷା ବିନ୍ୟାସର ପ୍ରୟୋଗ ହୋଇପାରିବା ଦରକାର । କାରଣ ପ୍ରତ୍ୟେକ ପ୍ରତ୍ୟୟର ଶାବ୍ଦିକ ଅର୍ଥ ସୁନିର୍ଦ୍ଦିଷ୍ଟ ଓ ତା'ର ତାର୍କିକ ପରିସରକୁ ବ୍ୟବସ୍ଥିତ କରିଦେବା ଫଳରେ ଦାର୍ଶନିକ ସମସ୍ୟା ସକଳକୁ ଏଡାଯାଇ ପାରିବ । ଏହି ପ୍ରକାରର ଏକ ସମ୍ଭାବ୍ୟ ଭାଷାରେ ତାର୍କିକ ଜଟିଳତା ନଥିବା ଫଳରେ ଦାର୍ଶନିକ ସମସ୍ୟାଗୁଡ଼ିକର ସୁସମାଧାନ ହେବା ସହିତ ଦର୍ଶନର ପରିଭାଷା ଏକ ଗାଣିତିକ ଭିତ୍ତି ନେଇପାରିବ । ଏହି ସମ୍ଭାବନା ଜନିତ ପ୍ରକଳ୍ପକୁ କେତେକ ଦାର୍ଶନିକ ଅବାନ୍ତର ଓ ଅବାସ୍ତବ ବୋଲି ଚିତ୍ରଣ କରି ସାଧାରଣ ଭାଷାର ବହୁବିଧ ତାତ୍ପର୍ଯ୍ୟ ଓ ତା'ର ଅର୍ଥ ନେଇ ବୌଦ୍ଧିକ ସ୍ୱଚ୍ଛତା ଆଣିବାକୁ ଗୁରୁତ୍ୱ ଦେଇଛନ୍ତି । ଫଳରେ ଦାର୍ଶନିକ ଚିନ୍ତନକୁ ଗଣିତର ପରିଭାଷାରେ ରୂପାନ୍ତରିତ ନ କରି ବରଂ ଏକ ସୃଜନାତ୍ମକ ଭାବରେ ବ୍ୟବହାର କରିବାକୁ କହିଛନ୍ତି । ଅର୍ଥାତ୍ ଭାଷାର ସାଧାରଣ ପ୍ରୟୋଗ ପ୍ରତି ଦୃଷ୍ଟି ନିକ୍ଷେପ ହେବା ଦରକାର ବୋଲି କୁହାଯାଉଛି । ବିଭିନ୍ନ ସମ୍ଭାଷାକ୍ଷେତ୍ରରେ ବ୍ୟବହୃତ ହେଉଥିବା ପ୍ରତ୍ୟୟମାନଙ୍କର ସମ୍ବନ୍ଧ ଓ ସେମାନଙ୍କର ସ୍ଥିତି ସ୍ଥାପକତା ନେଇ ସଚେତନତା ରହିଲେ ଦାର୍ଶନିକ ସମସ୍ୟାମାନଙ୍କୁ ଏଡାଯାଇ ପାରିବ ।

ପ୍ରତ୍ୟୟ ବିଶ୍ଳେଷଣ ପରିପ୍ରେକ୍ଷୀରେ ଜି.ଇ. ମୁର ଆମର ସାଧାରଣ ଅବବୋଧକୁ ଗୁରୁତ୍ୱ ଦେଇଛନ୍ତି । ଦୈନନ୍ଦିନ ଜୀବନରେ ଗ୍ରହଣ କରୁଥିବା ଧାରଣା ସହିତ ଆମର ଦାର୍ଶନିକ ସିଦ୍ଧାନ୍ତ ସକଳ ସଂଗତି ରକ୍ଷା କରିବା ଦରକାର । ଦାର୍ଶନିକ ଚିନ୍ତନ ଜନିତ ସିଦ୍ଧାନ୍ତ ଯଦି ଆମର ବାସ୍ତବ ଜୀବନରେ ପୋଷଣ କରୁଥିବା ଭାବନା ସହିତ ଅସଂଗତ ହୁଏ ତେବେ ଆମେ ଆମର ଦାର୍ଶନିକ ଆଲୋଚନାକୁ ପୁନଃ ମୂଲ୍ୟାୟନ କରିବା ଆବଶ୍ୟକ । ମୁର ନାନାବିଧ ତତ୍ତ୍ୱମୀମାଂସକ ସିଦ୍ଧାନ୍ତଗୁଡ଼ିକୁ ଆଲୋଚନାକୁ ନେଇ ସେସବୁ କିପରି ସାଧାରଣ ଭାବନାର ପରିପନ୍ଥୀ ତାହା ଦର୍ଶାଇଛନ୍ତି । ପୁନଶ୍ଚ ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ଭାଷାର ଗଭୀର ଅଧ୍ୟୟନ କରି ଅଷ୍ଟିନ ଏକ ନୂତନ ଦିଗନ୍ତର ଅବତାରଣା କରିଛନ୍ତି । ଭାଷା ଓ ପ୍ରତ୍ୟୟ ସକଳର ବହୁବିଧ ପ୍ରୟୋଗ ଓ ତାତ୍ପର୍ଯ୍ୟକୁ ଦର୍ଶାଇ ସେ ଏକ ନୂତନ ବ୍ୟାକରଣର ସୂତ୍ରପାତ କରିଛନ୍ତି । ସାଧାରଣ ବ୍ୟାକରଣ କ୍ଷେତ୍ରରେ ରହିଥିବା ନିୟମକୁ ସଂପ୍ରତି ପୃଷ୍ଠ ନିୟମ (Surface grammar) କୁହାଯିବାବେଳେ ପ୍ରତ୍ୟୟମାନଙ୍କର ବ୍ୟବହାର କ୍ଷେତ୍ରରେ ନିୟମକୁ ଗଭୀର ନିୟମ (Depth grammar) କୁହାଯାଉଛି । ଦାର୍ଶନିକ ସମସ୍ୟାଗୁଡ଼ିକ କିପରି ବ୍ୟାକରଣର ଗଭୀର ନିୟମ ସହିତ ସଂଶ୍ଳିଷ୍ଟ ତାହା ଅଷ୍ଟିନ ଦର୍ଶାଇଛନ୍ତି । ଏହି ପୃଷ୍ଠଭୂମିରେ ''ଜନନ ବ୍ୟାକରଣ'' (Generative grammer)ର ସୂତ୍ରପାତ ହୋଇ ସେ କ୍ଷେତ୍ରରେ ଗଭୀର ଅଧ୍ୟୟନ କରାଯାଇଛି । ବିଶ୍ଳେଷଣ ଓ ପ୍ରତ୍ୟୟ ଅନୁଶୀଳନ କ୍ଷେତ୍ରରେ ଏହିପରି ନାନାବିଧ ମାନଦଣ୍ଡ ଓ ଶୈଳୀର ଅବତାରଣା ଆଧୁନିକ ଭାଷା ବିଶ୍ଳେଷଣ ପରମ୍ପରାରେ କରାଯାଇଛି । ଏହିସବୁ ଶୈଳୀ ଓ ନୂଆ ନୂଆ ଦିଗନ୍ତର

ସାମଗ୍ରିକ ବିସ୍ତୃତିରେ ଆଧୁନିକ ଯୁଗର ବିଶ୍ଲେଷଣାତ୍ମକ ଦାର୍ଶନିକ ପ୍ରବାହଟି ସୁଦୃଢ଼ ହୋଇଛି ।

ବିଶ୍ଲେଷଣାତ୍ମକ ଚିନ୍ତନ ପୃଷ୍ଠଭୂମିରେ ଅନ୍ୟ ଏକ ଦାର୍ଶନିକ ଭାବନା ସାଂପ୍ରତିକ ସମୟରେ ଅଧିକ ସୃଜନଶୀଳ ମନେହେଉଛି । ବିଶିଷ୍ଟ ଦାର୍ଶନିକ ଷ୍ଟ୍ରସନ ଭାଷା ବିଶ୍ଲେଷଣ ପରମ୍ପରାରେ ଏକ ନୂତନ ଆଲୋଡ଼ନ ସୃଷ୍ଟି କରିଛନ୍ତି । ଅତୀତର ତତ୍ତ୍ୱ ମୀମାଂସାକୁ ସେ ସଂଶୋଧନାତ୍ମକ କହି ତାହାକୁ ବର୍ଣ୍ଣନାତ୍ମକ ତତ୍ତ୍ୱମୀମାଂସାଠାରୁ ପୃଥକ କରିଛନ୍ତି । ଏହି ଦୁଇ ପ୍ରକାରର ତତ୍ତ୍ୱମୀମାଂସା ମଧ୍ୟରେ ପାର୍ଥକ୍ୟ ଦର୍ଶାଇ ଅତୀତର ଅଧିକାଂଶ ତତ୍ତ୍ୱମୀମାଂସାକୁ ସେ ସଂଶୋଧନାତ୍ମକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଛନ୍ତି । ଷ୍ଟ୍ରସନଙ୍କ ମତରେ ଯେକୌଣସି ଦାର୍ଶନିକଙ୍କ ସିଷ୍ଟମ (system)ରେ ସଂଶୋଧନାତ୍ମକ ଓ ବର୍ଣ୍ଣନାତ୍ମକ ଭାବନାର ଲକ୍ଷଣ ଦେଖିବାକୁ ମିଳିଥାଏ । କେତେକ ଦାର୍ଶନିକଙ୍କ ବିଚାର ପଦ୍ଧତିରେ ସଂଶୋଧନାତ୍ମକ ଭାବନାର ବହୁଳତା ଥିବା ବେଳେ ଅନ୍ୟ କେତେକଙ୍କ ଭାବନାରେ ବର୍ଣ୍ଣନାତ୍ମକ ଭାବନାର ଆଭାସ ମଧ୍ୟ ମିଳିଥାଏ । ପ୍ଲେଟୋ, ଦେକାର୍ଟ, ଲାଇବ୍ନିସଙ୍କ ପରି ଦାର୍ଶନିକଙ୍କ ଚିନ୍ତନ କ୍ଷେତ୍ରରେ ସଂଶୋଧନାତ୍ମକ ଭାବନାର ସ୍ପଷ୍ଟ ପ୍ରତିଫଳନ ଦେଖିବାକୁ ମିଳିବା ବେଳେ ଆରିଷ୍ଟଟଲ୍, ହ୍ୟୁମ ଓ କାଣ୍ଟଙ୍କ ପରି ଦାର୍ଶନିକଙ୍କ ଚିନ୍ତନରେ ବର୍ଣ୍ଣନାତ୍ମକ ମୀମାଂସାର ପ୍ରତିଫଳନ ଦେଖିବାକୁ ମିଳେ । ଷ୍ଟ୍ରସନଙ୍କ ମତରେ ଅତୀତରେ ତତ୍ତ୍ୱମୀମାଂସକ ଦାର୍ଶନିକଗଣ ଜଗତର ଅବବୋଧ ପରିପ୍ରେକ୍ଷୀରେ ଏକ ପ୍ରତ୍ୟୟାତ୍ମକ ଆଧାର (Conceptual framework) ଦେବାକୁ ପ୍ରୟାସ କରିଛନ୍ତି । ଆମର ବାସ୍ତବ ଚିନ୍ତନ ଶୈଳୀ ବା ଆଧାରକୁ ଅପୂର୍ଣ୍ଣ ବୋଲି ମନେ କରି କେତେକ ମୌଳିକ ପ୍ରତ୍ୟୟର ସଂଜ୍ଞାରେ ସଂଶୋଧନ ଆଣିଛନ୍ତି । ଆମର ବୌଦ୍ଧିକ ଆଧାରଟି କ୍ଷେତ୍ରରେ ପ୍ରତ୍ୟୟମାନଙ୍କର ସଂଶୋଧନ କରାଯାଇ ଏକ ଭିନ୍ନ ଭିତ୍ତି ପ୍ରସ୍ତୁତ କରିବାକୁ – ଯାହା ଅତୀତରେ ହୋଇଛି – ଷ୍ଟ୍ରସନ ସଂଶୋଧନାତ୍ମକ ବୋଲି ଦର୍ଶାଇଛନ୍ତି । ମୌଳିକ ପ୍ରତ୍ୟୟଗୁଡ଼ିକର ସଂଜ୍ଞା ଓ ଅର୍ଥରେ ପରିବର୍ତ୍ତନ ଆଣି ଏକ ଏକ ଭିତ୍ତିଭୂମି ବାହାର କରି ସେହି ମାନଦଣ୍ଡରେ ଜଗତକୁ ବୁଝିବା ପାଇଁ ବା ବ୍ୟାଖ୍ୟା କରିବାର ପ୍ରୟାସକୁ ସେ ସଂଶୋଧନାତ୍ମକ ତତ୍ତ୍ୱମୀମାଂସା ବୋଲି ଅଭିହିତ କରିଛନ୍ତି । ଏହି ସଂଶୋଧନାତ୍ମକ ତତ୍ତ୍ୱ ମୀମାଂସାକୁ ସେ ବର୍ଣ୍ଣନାତ୍ମକ ତତ୍ତ୍ୱମୀମାଂସଠାରୁ ପୃଥକ କରିଛନ୍ତି । ତାଙ୍କ ମତରେ ଆମର ପ୍ରତ୍ୟୟାତ୍ମକ ଆଧାରରେ କୌଣସି ସଂଶୋଧନ ନ ଆଣି ବରଂ ଆମର ମୌଳିକ ପ୍ରତ୍ୟୟ, ଭାବନା ଓ ଅନୁଭୂତିର ବିଶ୍ଲେଷଣକରି ଜଗତ ସମ୍ବନ୍ଧରେ କେତେକ ସାର୍ବିକ ସିଦ୍ଧାନ୍ତରେ ଉପନୀତ ହୋଇପାରିବା । ସେହି ସାର୍ବିକ ଆଧାର କିପରି ଜ୍ଞାନ ଅର୍ଜନ ବା ଜଗତ ସମ୍ବନ୍ଧରେ ଆଲୋଚନା ପାଇଁ ଅପରିହାର୍ଯ୍ୟ ତାହା ପ୍ରକାଶ କରାଯାଇ ପାରିବ । ଯେକୌଣସି ଅର୍ଥପୂର୍ଣ୍ଣ ବିନିମୟ ବା ବିବରଣ ପାଇଁ କେତେକ ସାର୍ବିକ ଆଧାରକୁ ଗ୍ରହଣ କରିବାକୁ ହେବ, ସେ ପ୍ରତି ସେ ଦୃଷ୍ଟି ଆକର୍ଷଣ କରିଛନ୍ତି । ସୁତରାଂ ଷ୍ଟ୍ରସନ ସଂଶୋଧନାତ୍ମକ ତତ୍ତ୍ୱମୀମାଂସାକୁ ବିରୋଧ କରୁଥିଲେ

ବି ଭାଷା ବିଶ୍ଳେଷଣ ବା ପ୍ରତ୍ୟୟ ଅନୁଶୀଳନ ମଧ୍ୟ ଦେଇ ଏକ ବିବରଣାତ୍ମକ ତତ୍ତ୍ୱମୀମାଂସାକୁ ସମର୍ଥନ କରିଛନ୍ତି ଓ ତାଙ୍କର ଦୃଷ୍ଟିମାନଙ୍କରେ ଏକ ବିବରଣାତ୍ମକ ତତ୍ତ୍ୱମୀମାଂସାର ରୂପରେଖ ଦେଇଛନ୍ତି । ଜଗତ ସମ୍ବନ୍ଧରେ ଦର୍ଶନ ବସ୍ତୁନିଷ୍ଠ ଜ୍ଞାନ ଦେବା ପାଇଁ ଉଦ୍ଦିଷ୍ଟ ନ ହୋଇ ସର୍ବଦା ଏକ ଭିନ୍ନ ସ୍ତରରେ ଜ୍ଞାନର ମୌଳିକ ପ୍ରତ୍ୟୟମାନଙ୍କୁ ବିଶ୍ଳେଷଣ କରିବାର ପରମ୍ପରା ସହିତ ଷ୍ଟ୍ରସନ ଏକମତ ହୋଇଛନ୍ତି ।' କିନ୍ତୁ ଏ କ୍ଷେତ୍ରରେ ଆମର ପ୍ରତ୍ୟୟାତ୍ମକ ଆଧାରକୁ ପରିବର୍ତ୍ତନ ନ କରି ବରଂ ଆମର ବାସ୍ତବ ଆଧାରଟିର ଅପରିହାର୍ଯ୍ୟ ସମ୍ଭାବନାଗୁଡ଼ିକୁ ବାହାର କରିବା ଦାର୍ଶନିକ ବ୍ୟାଖ୍ୟାର ଆଭିମୁଖ୍ୟ ବୋଲି ସେ ନେଇଛନ୍ତି । ତାଙ୍କ ମତରେ ଭାଷା – ପ୍ରତ୍ୟୟ–ବିଶ୍ଳେଷଣସହ ବିବରଣାତ୍ମକ ତତ୍ତ୍ୱମୀମାଂସା ସମତାଳ ରକ୍ଷାକରିବା ସହ ବୋଧଗମ୍ୟତାର ମୌଳିକ ଓ ଅବଶ୍ୟମ୍ଭାବୀ ଲକ୍ଷଣଗୁଡ଼ିକୁ ବ୍ୟକ୍ତ କରିପାରିବ ।

ମୋଟ ଉପରେ କହିବାକୁ ଗଲେ ଏହି ଗୋଟିଏ ଶତାବ୍ଦୀ ଭିତରେ ଦର୍ଶନର ଇତିହାସରେ ଏକ ନୂଆ ବିପ୍ଳବ ସଂଘଟିତ ହୋଇଯାଇଛି । ଦର୍ଶନର ବିଷୟବସ୍ତୁ ଏକ ନୂଆ ଦିଗନ୍ତର ସନ୍ଧାନ ଦେଇଛି ଓ ଏକ ଭିନ୍ନ ପର୍ଯ୍ୟାୟରେ ଉପନୀତ ହୋଇଛି । ଦର୍ଶନର ସୁଦୀର୍ଘ ଇତିହାସରେ ଗୋଟିଏ ଶତାବ୍ଦୀ ଦୀର୍ଘ ନହେଲେ ମଧ୍ୟ ଦର୍ଶନ କ୍ଷେତ୍ରରେ ଯେଉଁ ବୈଚାରିକ ଆଲୋଡ଼ନଟି ସୃଷ୍ଟି ହୋଇଛି ତାହାର ସୁଦୂରପ୍ରସାରୀ ସମ୍ଭାବନାକୁ ନ୍ୟୂନ କରିହେବ ନାହିଁ । ଅବଶ୍ୟ ଦାର୍ଶନିକ ଜିଜ୍ଞାସା ଭିତରେ 'ମୁକ୍ତ ଚିନ୍ତା' ହିଁ ସର୍ବଦା ନୂଆ ଭାବରେ ଜଗତ ଓ ଜୀବନକୁ ବ୍ୟାଖ୍ୟା କରିବା ପାଇଁ ପ୍ରେରଣାର ଉତ୍ସ ହୋଇଛି । କୌଣସି ବିଚାର ବା ମତକୁ ପବିତ୍ର ବା ଚିରନ୍ତନ ବୋଲି ଗ୍ରହଣ କରିବା ଦାର୍ଶନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ । ବରଂ ତର୍କର କଷଟିରେ ଯେଉଁ ଭାବନା ବା ନିଷ୍କର୍ଷ ଯୁକ୍ତ ବୋଲି ସାବ୍ୟସ୍ତ ହୋଇଛି ତାହା ରହିପାରିଛି ଅଥଚ ଅନେକ ମତବାଦ, ବିଶ୍ୱାସ ଓ ଧାରା ସମୟର ସ୍ରୁଅରେ ନିଶ୍ଚିହ୍ନ ହୋଇ ଯାଇଛନ୍ତି । ଦର୍ଶନରେ ଭାଷା ବିଶ୍ଳେଷଣ ଜନିତ ଏହି ନୂତନ ସମ୍ଭାବନାଟି ଦର୍ଶନର ଗୌରବମୟ ପରମ୍ପରା ପଥରେ ସହାୟକ ହେବ ନା ଅନ୍ୟ କିଛି ବଳିଷ୍ଠ ଚିନ୍ତା ଏହାର ମୂଲ୍ୟ ହ୍ରାସ କରିବ ତାହା ଆଗାମୀ ଭବିଷ୍ୟତ ହିଁ ନିର୍ଣ୍ଣୟ କରିବ ।

■■

# ଭାରତୀୟ ଦର୍ଶନ ଆଧ୍ୟାତ୍ମିକ କି ?

ଭାରତୀୟ ଦର୍ଶନ ଭାରତୀୟ ସଂସ୍କୃତି ପରି ବହୁ ସମୟରେ ଏକ ଭାବପ୍ରବଣତା ସୃଷ୍ଟି କରିଥାଏ । ଏହି ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଭାରତୀୟ ଦର୍ଶନ ପୃଥିବୀର ସକଳ ଦାର୍ଶନିକ ପରମ୍ପରା ଭିତରେ ସର୍ବଶ୍ରେଷ୍ଠ ବୋଲି କେତେକ ମତପୋଷଣ କଲାବେଳେ ଅନ୍ୟ କେତେକ ଦର୍ଶନର ଇତିହାସରେ ଏହା କୌଣସି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇ ନାହିଁ ବୋଲି ମତ ଦେଇଥାନ୍ତି । ବସ୍ତୁତଃ କେତେକ ଏହି ଦର୍ଶନ ଓ ତା'ର ପରମ୍ପରା ପ୍ରତି ଅତ୍ୟଧିକ ଶ୍ରଦ୍ଧା ପ୍ରକାଶ କରିବା ବେଳେ ଅନ୍ୟ କେତେକ ଏହା ପ୍ରତି ବୀତସ୍ପୃହ ମନୋଭାବ ପୋଷଣ କରିଥାନ୍ତି । ଏକ ଭାବାବେଗ ଦ୍ୱାରା ପରିଚାଳିତ ହୋଇଯିବା ଫଳରେ ଏହାର ଯଥାର୍ଥ ମୂଲ୍ୟାୟନ ବାଧାପ୍ରାପ୍ତ ହୋଇଥାଏ ଓ ଏକ ବସ୍ତୁନିଷ୍ଠ ତଥା ତର୍କସିଦ୍ଧ ମୂଲ୍ୟାୟନ ବ୍ୟତୀତ କୌଣସି ଦାର୍ଶନିକ ପରମ୍ପରାର ଯଥାର୍ଥ ଗୁରୁତ୍ୱ ଅନୁଭୂତ ହୋଇନଥାଏ । ନାନା କାରଣ ଭିତରୁ ଯେଉଁ ଏକକ କାରଣଟି ଏହି ଭାବାବେଗ ସୃଷ୍ଟି କରିଥାଏ ତାହା ହେଲା ଆଧ୍ୟାତ୍ମିକତା । ବହୁ ସମୟରେ ଭାରତୀୟ ଦର୍ଶନକୁ ଆଧ୍ୟାତ୍ମିକ ଦର୍ଶନ କୁହାଯାଇଥାଏ ଓ ଏହି କାରଣ ପାଇଁ ଏହାର ପୃଷ୍ଠପୋଷକମାନେ ଏହା ପୃଥିବୀର ଅନ୍ୟ ସକଳ ଦାର୍ଶନିକ ପରମ୍ପରାଠାରୁ ଶ୍ରେଷ୍ଠ ବୋଲି ବିଚାର କରିଥାନ୍ତି । ଠିକ୍ ସେହିପରି ଏହାର ସମାଲୋଚକମାନେ ଦର୍ଶନ ସହ ଆଧ୍ୟାତ୍ମିକତା ସଂଶ୍ଳିଷ୍ଟ ଥିବା ଯୋଗୁଁ ଦାର୍ଶନିକ ପ୍ରଶ୍ନମାନଙ୍କର ତର୍କସିଦ୍ଧ ଅନୁଶୀଳନ କରାନଯାଇ ରହସ୍ୟବାଦ ଓ ଅତୀନ୍ଦ୍ରିୟବାଦକୁ ଏହି ପରମ୍ପରାରେ ଗ୍ରହଣ କରାଯାଇଥିବା ଯୋଗୁଁ ଏହାକୁ ନ୍ୟୂନ କରିଥାନ୍ତି । ଅର୍ଥାତ୍ ଭାରତୀୟ ଦର୍ଶନକୁ ଆଧ୍ୟାତ୍ମିକ ବୋଲି ବିଚାର କରିବା ଫଳରେ ଏହା ଦୁଇ ଭିନ୍ନ ପ୍ରକାରର ଭାବାବେଗ ସୃଷ୍ଟି କରିଥାଏ; ଯଦ୍ଦ୍ୱାରା ଭିନ୍ନ ଭିନ୍ନ ଦାର୍ଶନିକ ପଦ୍ଧତି ବା ସିଷ୍ଟମମାନଙ୍କରେ ଜ୍ଞାନ, ତର୍କ, ନୀତି, ବୈଧତା, ଅର୍ଥ ଇତ୍ୟାଦି ସଂକ୍ରାନ୍ତରେ ଉଠିଥିବା ଜଟିଳ ଦାର୍ଶନିକ ବ୍ୟାଖ୍ୟାଗୁଡ଼ିକ ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆଯାଇପାରେ ନାହିଁ ।

କିନ୍ତୁ ପ୍ରଶ୍ନ ଉଠୁଛି, ଭାରତୀୟ ଦର୍ଶନ ଆଧ୍ୟାତ୍ମିକ କି ? ଭାରତୀୟ ଦର୍ଶନ ଯେ ଆଧ୍ୟାତ୍ମିକ ଏହାକୁ ଏକ ନିଶ୍ଚିତ ନିର୍ଯ୍ୟାସ ଭାବରେ ଭାରତୀୟ ଦର୍ଶନର ପୃଷ୍ଠପୋଷକ ଓ

ସମାଲୋଚକ ଉଭୟ ଧରି ନେଇଥାନ୍ତି । ଏପରିକି ବହୁ ଲେଖକ ଭାରତୀୟ ଦର୍ଶନର ମୌଳିକ ବିଶିଷ୍ଟ୍ୟ ଦେଖାଇବାକୁ ଯାଇ ଏହା ଯେ ଏକ ଆଧ୍ୟାତ୍ମିକ ଦର୍ଶନ ଏହା ଉଲ୍ଲେଖ କରିଥାନ୍ତି । ଦର୍ଶନର ଛାତ୍ର ଓ ଅଣଛାତ୍ର ଅଧିକାଂଶ ଭାରତୀୟ ଦର୍ଶନ ଯେ ଆଧ୍ୟାତ୍ମିକ ଏହି ବିଶ୍ୱାସଟିକୁ ଏପରି ଭାବରେ ଧରି ନେଇଥାନ୍ତି ଯଦ୍ୱାରା ଏଥିପାଇଁ କୌଣସି ଯୁକ୍ତିର ଆବଶ୍ୟକତା ଅନୁଭବ କରନ୍ତି ନାହିଁ । ବରଂ ଏହି ବିଶ୍ୱାସଦ୍ୱାରା ପରିଚାଳିତ ହୋଇ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ପ୍ରଶ୍ନମାନଙ୍କର ବିଶ୍ଳେଷଣ କରି ତା'ର ସୈଦ୍ଧାନ୍ତିକ ଭିତ୍ତି ଦେଖାଇବା ପରିବର୍ତ୍ତେ ଏହାର ବ୍ୟବହାରିକ ଦିଗ ପ୍ରତି ଗୁରୁତ୍ୱ ଆରୋପ କରିଥାନ୍ତି । କିନ୍ତୁ ଏହି ବିଶ୍ୱାସ ପଶ୍ଚାତରେ ଯେ କୌଣସି ଯୁକ୍ତି ସଙ୍ଗତ କାରଣ ନାହିଁ ଭାରତୀୟ ଦର୍ଶନ ସହ ସଂଶ୍ଳିଷ୍ଟ ଥିବା ବିଭିନ୍ନ ସିଷ୍ଟମଗୁଡ଼ିକର ପର୍ଯ୍ୟାଲୋଚନାରୁ ଏହା ସ୍ପଷ୍ଟ କରାଯାଇ ପାରିବ ।

ଦର୍ଶନର ପରିଭାଷାରେ "ଆଧ୍ୟାତ୍ମିକତା"ର ତାତ୍ତ୍ୱିକ ଓ ନୈତିକ ମାନଦଣ୍ଡରୁ ଦୁଇଟି ଅର୍ଥ ବିଚାର ପରିସରକୁ ଆସିଥାଏ । ତାତ୍ତ୍ୱିକ ମାନଦଣ୍ଡରୁ ବିଚାର କଲେ ଯାହା ବସ୍ତୁସତ୍ତା ବା ପ୍ରକୃତି ପରିବର୍ତ୍ତେ ଚେତନସତ୍ତାର ଅସ୍ତିତ୍ୱକୁ ଅବିନାଶୀ ବା ଚିରନ୍ତନ ବୋଲି ସ୍ୱୀକାର କରେ ଓ ପ୍ରକୃତି ଅପେକ୍ଷା ଚେତନର ମୌଳିକତ୍ୱ ପ୍ରତିପାଦନ କରି ବସ୍ତୁସତ୍ତାକୁ ଗୌଣ ବା ଚେତନସତ୍ତା ଉପରେ ନିର୍ଭରଶୀଳ ବୋଲି ଦେଖାଇଥାଏ ତାହାକୁ ଆଧ୍ୟାତ୍ମିକ କୁହାଯାଏ । ତାତ୍ତ୍ୱିକ ମାନଦଣ୍ଡରୁ ଆଧ୍ୟାତ୍ମିକତାର ଏହି ଅର୍ଥକୁ ଗ୍ରହଣ କଲେ ଭାରତୀୟ ଦର୍ଶନ ଯେ ଆଧ୍ୟାତ୍ମିକ ନୁହଁ ଏହା ଅତ୍ୟନ୍ତ ସ୍ପଷ୍ଟ ଜଣାପଡ଼େ । ଅବଶ୍ୟ ଭାରତୀୟ ଦର୍ଶନର କେତେକ ସିଷ୍ଟମରେ ଚେତନର ମୌଳିକତ୍ୱକୁ ପ୍ରତିପାଦନ କରାଯାଇଛି; କିନ୍ତୁ ଏହା ସହିତ ଜଡ଼ ବା ପ୍ରକୃତିର ମୌଳିକତ୍ୱକୁ ଅସ୍ୱୀକାର କରାଯାଇ ନାହିଁ ବା ଏହାକୁ ଗୌଣ ସ୍ଥାନ ଦିଆଯାଇ ନାହିଁ । ସାଂଖ୍ୟ ଦର୍ଶନରେ ପ୍ରକୃତିକୁ - ଯାହା ଚେତନ ନୁହେଁ ଓ ଜଡ଼ ମଧ୍ୟ - ଚିରନ୍ତନ ବୋଲି ଗ୍ରହଣ କରାଯାଇଛି ଓ ଏହା ପୁରୁଷ - ଯାହା ଚେତନ ପରି ମୌଳିକ ଓ ଅବିନାଶୀ ବୋଲି ଦର୍ଶାଯାଇଛି । ସେହିପରି ବୈଶେଷିକ ଦର୍ଶନରେ ଦ୍ରବ୍ୟର ଅନିତ୍ୟତାକୁ ଅସ୍ୱୀକାର କରାଯାଇ ନାହିଁ ଓ ଅଣୁବାଦର ପ୍ରତିଷ୍ଠା କରିବାକୁ ଯାଇ ଏଠାରେ ବସ୍ତୁସତ୍ତାର ଚିରନ୍ତନତାକୁ ସ୍ୱୀକାର କରାଯାଇଛି । ସେହିପରି ଜୈନ ଦର୍ଶନରେ ବସ୍ତୁର ମୌଳିକତାକୁ ଗ୍ରହଣ କରାଯାଇଛି । ଜୈନମାନେ ଜଡ଼ ବସ୍ତୁ ସକଳର ଭିନ୍ନତା ଓ ପରିବର୍ତ୍ତନକୁ ସ୍ୱୀକାର କରୁଥିଲେ ବି ବସ୍ତୁ ଓ ଗୁଣ ଭିତରେ ଥିବା ବିଭେଦକୁ ଅସ୍ୱୀକାର କରିଛନ୍ତି । ଏକକ ବସ୍ତୁ ସତ୍ତା କେବଳ ଭିନ୍ନ ଭିନ୍ନ ଆକାର ଓ ପ୍ରକାର ଭିତରେ ପ୍ରକାଶିତ ହୋଇଥାଏ । ବସ୍ତୁସତ୍ତା ଯେ ସବୁ ଅସ୍ତିତ୍ୱର ମୂଳ ଏହା ସେମାନେ ଗ୍ରହଣ କରିଛନ୍ତି । ମୋଟ ଉପରେ ସାଂଖ୍ୟ, ବୈଶେଷିକ ଓ ଜୈନ ଦର୍ଶନ ସିଷ୍ଟମମାନଙ୍କରେ ବସ୍ତୁର ମୌଳିକତା ଗ୍ରହଣ କରାଯାଇଛି ଓ ଏହାକୁ ଚେତନଠାରୁ ଗୌଣ କରାଯାଇ ନାହିଁ ।

ନ୍ୟାୟ ଓ ବୈଶେଷିକ ଦର୍ଶନର ତତ୍ତ୍ୱ ମୀମାଂସା ଭିତରେ ମୌଳିକ ପାର୍ଥକ୍ୟ

ପରିଲକ୍ଷିତ ହୁଏ ନାହିଁ ଓ ନ୍ୟାୟ ଦର୍ଶନ ବୈଶେଷିକ ମତକୁ ଗ୍ରହଣ କରି ନେଇଥାଏ । ଅବଶ୍ୟ ନ୍ୟାୟ ଦର୍ଶନରେ ବସ୍ତୁର ଅସ୍ତିତ୍ୱକୁ ଅବିନାଶୀ ବୋଲି ଗ୍ରହଣ କରିବା ବେଳେ ଆତ୍ମାକୁ ମଧ୍ୟ ସ୍ୱୀକାର କରାଯାଇଛି । କିନ୍ତୁ ନ୍ୟାୟ ଦର୍ଶନରେ ଚେତନା ଆତ୍ମାର ମୌଳିକ ସ୍ୱରୂପ ନ ହୋଇ ଆତ୍ମାର ଏକ ବିବର୍ତ୍ତିତ ଗୁଣ ବୋଲି ନିଆଯାଇଛି । ଜଡ଼ବାଦୀମାନେ ଯେପରି ଚେତନାକୁ ବସ୍ତୁର ଏକ ବିଶେଷ ଗୁଣ ବୋଲି ବିଚାର କରିଥାନ୍ତି, ନୈୟାୟିକମାନେ ସେହିପରି ଆତ୍ମା ତା'ର ସ୍ୱରୂପରେ ଚେତନ ନ ହୋଇ କେତେକ ସ୍ୱତନ୍ତ୍ର ଅବସ୍ଥା ପ୍ରାପ୍ତ ହେଲେ ଚେତନ ଯୁକ୍ତ ହୁଏ ବୋଲି ସ୍ୱୀକାର କରିବା ଫଳରେ ସେମାନେ ଜଡ଼ବାଦର ନିକଟବର୍ତ୍ତୀ ହୋଇଛନ୍ତି । ମୀମାଂସା ଦର୍ଶନରେ ନ୍ୟାୟ-ବୈଶେଷିକ ସିଷ୍ଟମରେ ଗ୍ରହଣ କରାଯାଇଥିବା ବସ୍ତୁ ସକଳର ନିତ୍ୟତା ସହିତ ଆଉ କେତେକ ବସ୍ତୁକୁ ଗ୍ରହଣ କରାଯାଇଛି । ମୀମାଂସକ ମାନେ ଚେତନ ବା ଆତ୍ମାର ନିତ୍ୟତାକୁ ସ୍ୱୀକାର କରୁଛନ୍ତି ଓ ତା' ସହିତ କ୍ଷିତି, ଅପ୍, ତେଜଃ, ମରୁତ ଓ ବ୍ୟୋମ ଏହି ପଞ୍ଚଭୂତର ଅବିନାଶୀ ସ୍ଥିତିକୁ ମଧ୍ୟ ଗ୍ରହଣ କରୁଛନ୍ତି । ବୌଦ୍ଧ ଦର୍ଶନରେ ସକଳ ପ୍ରକାର ବସ୍ତୁ ସତ୍ତାର - ତାହା ଜଡ଼ ହେଉ ବା ଚେତନ ହେଉ - ନିତ୍ୟତାକୁ ଅସ୍ୱୀକାର କରାଯାଇଛି । ଅବଶ୍ୟ ବୌଦ୍ଧ ଦର୍ଶନରେ ବିଭିନ୍ନ ଦାର୍ଶନିକ ମତବାଦ ସୃଷ୍ଟି ହୋଇ ଏହା ବିଭିନ୍ନ ବିଦ୍ୟାଳୟରେ ପରିଣତ ହୋଇଛି । କେବଳ ବୌଦ୍ଧ ଦର୍ଶନର ଯୋଗାଚାର ସିଷ୍ଟମରେ ମନ ବା ଚୈତନ୍ୟର ମୌଳିକତାକୁ ଗ୍ରହଣ କରାଯାଇ ସକଳ ଅସ୍ତିତ୍ୱକୁ ଏହା ଉପରେ ନିର୍ଭରଶୀଳ କରାଯାଇଛି । କିନ୍ତୁ ମାଧ୍ୟମିକ ସିଷ୍ଟମରେ ବ୍ୟବହାରିକ ସ୍ତରରେ ବସ୍ତୁ ଓ ଚେତନ ଉଭୟର ବାସ୍ତବତାକୁ ଗ୍ରହଣ କରାଯାଇଥିଲେ ବି କାହାକୁ ଅବିନାଶୀ ବୋଲି ଗ୍ରହଣ କରାଯାଇ ନାହିଁ ।

ବେଦାନ୍ତ ଦର୍ଶନ ବୌଦ୍ଧ ଦର୍ଶନ ପରି ବିଭିନ୍ନ ବିଦ୍ୟାଳୟରେ ବିଭକ୍ତ ହୋଇଛି । ଅବଶ୍ୟ କେତେକ ଦାର୍ଶନିକ ବିଚାର ଉପନିଷଦର ପ୍ରକୃତ ଓ ବାସ୍ତବ ବ୍ୟାଖ୍ୟା ବୋଲି ଦାବୀ କରିବା ଫଳରେ ଭିନ୍ନ ଭିନ୍ନ ବେଦାନ୍ତ ବିଦ୍ୟାଳୟ ମାନ ସୃଷ୍ଟି ହୋଇଛି । ମାଧବାଚାର୍ଯ୍ୟ ଉପନିଷଦର ବ୍ୟାଖ୍ୟା କରିବାକୁ ଯାଇ ସାଂଖ୍ୟ ଭଳି ଏକ ଦ୍ୱୈତବାଦର ଅବତାରଣା କରିଛନ୍ତି ଓ ଚେତନ ସତ୍ତା ସହ ଜଡ଼ ବା ପ୍ରକୃତିର ନିତ୍ୟତାକୁ ଗ୍ରହଣ କରିଛନ୍ତି । ରାମାନୁଜ ତାଙ୍କ ବେଦାନ୍ତ ଦର୍ଶନରେ ଜଡ଼କୁ ଈଶ୍ୱରଙ୍କଠାରୁ ପୃଥକ ଦର୍ଶାଇଛନ୍ତି ଓ ଏହାକୁ ଅଜ ବୋଲି ଗ୍ରହଣ କରିଛନ୍ତି । ଏହା ଈଶ୍ୱରଙ୍କର ଶରୀର ସ୍ୱରୂପ ଓ ସୃଷ୍ଟି ଆରମ୍ଭରେ ଏଥିରେ ଥିବା ଗୁଣ ତ୍ରୟର ବିବର୍ତ୍ତନ ଯୋଗୁଁ ବସ୍ତୁ ସକଳର ସୃଷ୍ଟି ବୋଲି ଦର୍ଶାଇଛନ୍ତି । ପ୍ରଳୟ ସମୟରେ ଏହାର ସ୍ୱତନ୍ତ୍ର ସ୍ଥିତିକୁ ମଧ୍ୟ ସେ ଗ୍ରହଣ କରିଛନ୍ତି । ଶଙ୍କର ତାଙ୍କର ଅଦ୍ୱୈତ ବେଦାନ୍ତରେ ଜଡ଼କୁ ଯେଉଁପରି ଅନିତ୍ୟ ବୋଲି ଗ୍ରହଣ କରିଛନ୍ତି ଆତ୍ମା ଓ ସଗୁଣ ଈଶ୍ୱରଙ୍କୁ ସେହିପରି ଅନିତ୍ୟ ବୋଲି ମଧ୍ୟ ସ୍ୱୀକାର କରିଛନ୍ତି । ବ୍ୟବହାରିକ ସ୍ତରରେ ଏସବୁର ବାସ୍ତବତାକୁ ଗ୍ରହଣ କରାଯାଉଥିଲେ ବି ପରମାର୍ଥିକ ସ୍ତରରେ ଏହାକୁ ଅନିତ୍ୟ

ବୋଲି ଦର୍ଶାଇଛନ୍ତି । ତାଙ୍କ ପାଇଁ ଯାହା ନିତ୍ୟ ତାହା ଅନିର୍ବଚନୀୟ । ଅର୍ଥାତ୍ ତାଙ୍କ ପାଇଁ ଆତ୍ମା ଓ ଈଶ୍ୱର ଯେଉଁପରି ବାସ୍ତବ, ପ୍ରକୃତି ବା ଜଡ଼ ସେହିପରି ବାସ୍ତବ ।

ପରିଶେଷରେ ଭାରତୀୟ ଦର୍ଶନ ଇତିହାସରେ ଗ୍ରହଣ କରାଯାଉଥିବା ଚାର୍ବାକ ଓ ଯୋଗ ଦର୍ଶନ ଏହି ପରିପ୍ରେକ୍ଷୀରେ ଆଲୋଚନାର ଯଥେଷ୍ଟ ଆବଶ୍ୟକତା ନାହିଁ । ଚାର୍ବାକମାନେ କେବଳ ବସ୍ତୁର ଅସ୍ତିତ୍ୱ ଓ ବସ୍ତୁସତ୍ତାର ନିତ୍ୟତାକୁ ଗ୍ରହଣ କରିଛନ୍ତି । ସକଳ ଅସ୍ତିତ୍ୱକୁ ବସ୍ତୁସତ୍ତା ଉପରେ ନିର୍ଭରଶୀଳ ବୋଲି ଦର୍ଶାଇଥିବାରୁ ସେହି ସିଷ୍ଟମରେ ଏ ପ୍ରଶ୍ନଟି ଅବାନ୍ତର ହୋଇ ପଡ଼ିଛି । ସେହିପରି ଯୋଗ ଦର୍ଶନକୁ ଦର୍ଶନ ଇତିହାସରେ ସ୍ଥାନ ଦିଆଯାଉଥିଲେ ବି ଦାର୍ଶନିକ ପର୍ଯ୍ୟାଲୋଚନାରେ ଏହାର ସେପରି ଗୁରୁତ୍ୱ ନାହିଁ । କେବଳ କେତେକ ବ୍ୟବହାରିକ ଜୀବନଚର୍ଯ୍ୟା ନିର୍ଦ୍ଦେଶ କରିବା ଛଡ଼ା ଏଥିରେ କୌଣସି ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରାଯାଇ ନାହିଁ । ତଥାପି ବସ୍ତୁସତ୍ତାର ନିତ୍ୟ-ଅନିତ୍ୟ ପ୍ରଶ୍ନ ଉପରେ ଏହା ସାଂଖ୍ୟ ମତକୁ ଗ୍ରହଣ କରିନେଇଛି ଓ ପ୍ରକୃତିକୁ ଅବିନାଶୀ ବୋଲି ଦର୍ଶାଇଛି ।

ବସ୍ତୁତଃ ଭାରତୀୟ ଦର୍ଶନର ଆସ୍ତିକ ଓ ନାସ୍ତିକ ଦୁଇ ପରମ୍ପରା ଭିତରେ କୌଣସି ସିଷ୍ଟମରେ ଚେତନକୁ ନିରଙ୍କୁଶ ଭାବରେ ସ୍ୱୀକାର କରାଯାଇ ବସ୍ତୁ-ସତ୍ତାକୁ ଅସ୍ୱୀକାର ବା ଗୌଣ କରାଯାଇ ନାହିଁ । ଏପରି ସ୍ଥଳେ ତାତ୍ତ୍ୱିକ ମାନଦଣ୍ଡରୁ ଭାରତୀୟ ଦର୍ଶନକୁ ଆଧ୍ୟାତ୍ମିକ ବୋଲି ସ୍ୱୀକାର କରିବା ପଛାତରେ ସେପରି ସୁଦୃଢ଼ ସୈଦ୍ଧାନ୍ତିକ ଭିତ୍ତି ନାହିଁ ।

ନୈତିକ ମାନଦଣ୍ଡରୁ ଆଧ୍ୟାତ୍ମିକତାର ଏକ ଅର୍ଥ ଦିଆଯାଇ ଭାରତୀୟ ଦର୍ଶନକୁ ଆଧ୍ୟାତ୍ମିକ କୁହାଯାଇପାରେ । ଭାରତୀୟ ଦର୍ଶନର ବିଭିନ୍ନ ବିଦ୍ୟାଳୟମାନଙ୍କରେ ମୁକ୍ତି ବା ନିର୍ବାଣ ପ୍ରାପ୍ତିକୁ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ ବା ପୁରୁଷାର୍ଥ ଭାବରେ ନିଆଯାଇ ଥିବାରୁ ଏହାକୁ ଆଧ୍ୟାତ୍ମିକ କହିବା ଅଧିକ ପ୍ରାସଙ୍ଗିକ ମନେହୁଏ । ଭାରତର ଅଧିକାଂଶ ଦର୍ଶନବିଦ୍ୟାଳୟ ମାନଙ୍କରେ ମୁକ୍ତି ବା ନିର୍ବାଣ ବିଷୟରେ ଆଲୋଚନା କରାଯାଇ ଏହା ଯେ ପ୍ରତ୍ୟେକ ବ୍ୟକ୍ତିର ଶ୍ରେୟ ଏହା କୁହାଯାଇଥାଏ । ଅବଶ୍ୟ ଭିନ୍ନ ଭିନ୍ନ ଦର୍ଶନ ମାନଙ୍କରେ ମୁକ୍ତି ବିଷୟରେ ଯେଉଁସବୁ ଆଲୋଚନା କରାଯାଇଛି ତା'ର ଏକ ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ସେସବୁ କିପରି ପରସ୍ପର ବିରୋଧୀ ଓ ପ୍ରତ୍ୟେକର ସୈଦ୍ଧାନ୍ତିକ ଭିତ୍ତି କିପରି ଦୁର୍ବଳ ତାହା ଦର୍ଶାଯାଇପାରେ । କିନ୍ତୁ ତାହା ଏକ ଭିନ୍ନ ପ୍ରଶ୍ନ ହୋଇଥିବାରୁ ଏଠାରେ ଆଲୋଚନା କରିବାର ଅବକାଶ ନାହିଁ । ମୁକ୍ତି, ମୋକ୍ଷ ବା ନିର୍ବାଣ ସଂକ୍ରାନ୍ତୀୟ ଆଲୋଚନାଗୁଡ଼ିକ ଭିତରେ ଯାହା କିଛି ତାର୍କିକ ଅସଙ୍ଗତି ଥିଲେ ବି ତାହାକୁ ବ୍ୟକ୍ତି ଜୀବନରେ ପୁରୁଷାର୍ଥ ଭାବରେ ଗ୍ରହଣ କରାଯାଇଥିବାରୁ ଭାରତୀୟ ଦର୍ଶନ ପରମ୍ପରାକୁ ଆଧ୍ୟାତ୍ମିକ କହିବା ଅଧିକ ଯୁକ୍ତି ସଙ୍ଗତ ମନେହୁଏ ।

ଅବଶ୍ୟ ଏଠାରେ ଯୁକ୍ତି କରାଯାଇପାରେ ଯେ କେବଳ ଭାରତୀୟ ଦର୍ଶନଶାସ୍ତ୍ର କାହିଁକି ପ୍ରାଚୀନ ଭାରତୀୟ ସାହିତ୍ୟ, ଧର୍ମ, ପୁରାଣ ଇତ୍ୟାଦି କ୍ଷେତ୍ରରେ ମୁକ୍ତି ଓ ଆଧ୍ୟାତ୍ମିକ ସିଦ୍ଧି ବିଷୟରେ ବର୍ଣ୍ଣନା ଦେଖିବାକୁ ମିଳେ । କେବଳ ଦର୍ଶନ ନୁହେଁ ପ୍ରାଚୀନ ଭାରତୀୟ

ଅନ୍ୱେଷା ଭିତରେ ଏହି ପ୍ରସଙ୍ଗଟି ଉପରେ ଆଲୋଚନା ହେବାର ଦେଖାଯାଏ । ମୋଟ ଉପରେ ଭାରତୀୟ ସଂସ୍କୃତିରେ ଜୀବନ୍‌ର ଶ୍ରେୟ ଆନୟନ କରିବାକୁ ଯାଇ ମୁକ୍ତି ବା ମୋକ୍ଷ ବିଷୟରେ କୁହାଯାଇଥାଏ ଓ ଏହି ପ୍ରସଙ୍ଗଟି ଭାରତୀୟ ସାଂସ୍କୃତିକ ଚେତନାର ଅଙ୍ଗାଙ୍ଗୀ ଭାବରେ ସଂଶ୍ଳିଷ୍ଟ ହେବା ଲକ୍ଷ୍ୟ କରାଯାଏ । ଗୋଟିଏ ସଂସ୍କୃତି ଭିତରେ ଜୀବନର ସର୍ବଶ୍ରେଷ୍ଠ ମୂଲ୍ୟବୋଧ ନେଇ ଯେଉଁ ଦୃଷ୍ଟିଭଙ୍ଗୀ ବିକାଶ ଲାଭ କରିଥାଏ ଦର୍ଶନ ତାହାକୁ ବିଶ୍ଳେଷଣ କରେ ଓ ତା'ର ଦୋଷତ୍ରୁଟିକୁ ପର୍ଯ୍ୟାଲୋଚନା ଦରି ତା'ର ସୈଦ୍ଧାନ୍ତିକ ଭିତ୍ତି ନିରୂପଣ କରିଥାଏ । ସୁତରାଂ ମୁକ୍ତି ବିଷୟଟି କେବଳ ଭାରତୀୟ ଦର୍ଶନ ନୁହଁ ଭାରତୀୟ ଧର୍ମ ଚେତନା ଓ ସଂସ୍କୃତିର ଅଙ୍ଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏତଦ୍‌ବ୍ୟତୀତ ଦର୍ଶନ ବିଦ୍ୟାଳୟମାନଙ୍କର ଇତିହାସକୁ ମୁକ୍ତି ବିଷୟକ ଆଲୋଚନା ବହୁ ପଛରେ ଦର୍ଶନର ପରିସରଭୁକ୍ତ ହେବା ଦେଖାଯାଏ । ଜୀବନର ପୁରୁଷାର୍ଥ ଆନୟନ କ୍ଷେତ୍ରରେ ଧର୍ମ, ଅର୍ଥ ଓ କାମ ଏହିପରି ତିନୋଟି ମୂଲ୍ୟଚୟକୁ ଭାରତୀୟ ଦର୍ଶନର ଆସ୍ତିକ ସିଷ୍ଟମମାନଙ୍କରେ ଓ ବୈଦିକ ପରମ୍ପରାରେ ଗ୍ରହଣ କରାଯାଇଥିବା ଜଣାପଡ଼େ । ନାସ୍ତିକ ଦର୍ଶନର ସିଷ୍ଟମମାନଙ୍କରୁ ମୁକ୍ତି ବିଷୟଟି ଆସ୍ତିକ ସିଷ୍ଟମ ଭିତରକୁ ଆସିବା ଦେଖାଯାଏ । ଆସ୍ତିକ ସିଷ୍ଟମମାନ ଜୀବନର ଶ୍ରେୟ ନିରୂପଣ କରିବା କ୍ଷେତ୍ରରେ ଧର୍ମ, ଅର୍ଥ ଓ କାମ ମୂଲ୍ୟଚୟର ସୈଦ୍ଧାନ୍ତିକ ଭିତ୍ତିକୁ ସୁଦୃଢ଼ କରିବା ପାଇଁ ଏକ ଦାର୍ଶନିକ ଜିଜ୍ଞାସା ସ୍ୱରୂପ ପ୍ରଥମରୁ ମୁକ୍ତିକୁ ଆଉ ଏକ ମୂଲ୍ୟଚୟ ସ୍ୱରୂପ ଗ୍ରହଣ କରିବା ପରିବର୍ତ୍ତେ ଧର୍ମୀୟ ଚେତନା ଓ ନାସ୍ତିକ ସିଷ୍ଟମମାନଙ୍କର ପ୍ରଭାବରେ ମୁକ୍ତିକୁ ଜୀବନର ଏକ ପୁରୁଷାର୍ଥ ଭାବରେ ଗ୍ରହଣ କରିବା ସବୁଠାରୁ କୌତୂହଳକର ବିଷୟ ଅଟେ । ଶ୍ରମଣ, ବୌଦ୍ଧ ଓ ଜୈନଧର୍ମୀୟ ପରମ୍ପରାରେ ମୁକ୍ତି ବା ନିର୍ବାଣ ପ୍ରାପ୍ତି ପାଇଁ ପ୍ରଚଳିତ କର୍ମକାଣ୍ଡ ଓ ଜୀବନଚର୍ଯ୍ୟାର ବିଧି ଦେଖିବାକୁ ମିଳିଥାଏ । ବୌଦ୍ଧ ଓ ଜୈନଧର୍ମର ଅଭ୍ୟୁଦୟ ପରେ ସେଥିରେ ସଂଶ୍ଳିଷ୍ଟ ରହିଥିବା ବିଷୟଗୁଡ଼ିକର ଦାର୍ଶନିକ ପର୍ଯ୍ୟାଲୋଚନା ଆରମ୍ଭ ହୋଇଥିଲା । ସେହି ପରମ୍ପରାରୁ ସୃଷ୍ଟ ଦାର୍ଶନିକମାନେ ଧର୍ମ ଧାରଣା ସ୍ତରରେ ଅବତାରଣା ହୋଇଥିବା ବିଷୟ ବା ପ୍ରସଙ୍ଗଗୁଡ଼ିକ ଉପରେ ତାତ୍ତ୍ୱିକ ଅନୁଶୀଳନ କରି ବୌଦ୍ଧ ଓ ଜୈନ ବିଚାରଧାରାର ଦାର୍ଶନିକ ଭିତ୍ତି ଆଣିଥିଲେ ଓ ପୂର୍ବରୁ ରହିଥିବା ଦାର୍ଶନିକ ସିଷ୍ଟମ ମାନଙ୍କଠାରୁ ଏହାର ପାର୍ଥକ୍ୟ ସୂଚାଇଥିଲେ । ବସ୍ତୁତ ଧର୍ମ ଧାରଣା ସ୍ତରରେ ରହିଥିବା ମୋକ୍ଷକୁ ଏକ ନୈତିକ ମୂଲ୍ୟଚୟ ଭାବରେ ଦର୍ଶନରେ ବିଶ୍ଳେଷଣ କରାଯାଇଥିଲା । ପରେ ବୌଦ୍ଧ ଓ ଜୈନ ପରମ୍ପରାରୁ ଏହି ବିଷୟଟିକୁ ଗ୍ରହଣ କରି ଆସ୍ତିକ ପରମ୍ପରାର ଦାର୍ଶନିକମାନେ ଏହାକୁ ଆଉ ଏକ ପୁରୁଷାର୍ଥ ଭାବେ ଗ୍ରହଣ କରିନେଲେ । ମୋକ୍ଷକୁ ଏକ ପୁରୁଷାର୍ଥ ଭାବରେ ଗ୍ରହଣ କରିବା ପରେ ଆସ୍ତିକ ପରମ୍ପରାର ପ୍ରତ୍ୟେକ ସିଷ୍ଟମରେ ଏହା ବିଷୟରେ ନାନା ତାତ୍ତ୍ୱିକ, ତାର୍କିକ, ନୈତିକ ଓ ରହସ୍ୟାତ୍ମକ ବ୍ୟାଖ୍ୟାର ସୂତ୍ରପାତ ହେଲା । ଆସ୍ତିକ ପରମ୍ପରାରେ ଏହି ପ୍ରତ୍ୟୟ ଉପରେ ନାନା ପ୍ରକାରର ବ୍ୟାଖ୍ୟା

ରହିଥିଲେ ମଧ୍ୟ ଏହା ଯେ ପ୍ରଥମେ ନାସ୍ତିକ ପରମ୍ପରାରୁ ଗ୍ରହଣ କରାଯାଇଛି; ଏହା ଅଧିକ କୌତୂହଳପ୍ରଦ ଅଟେ ।

ମୋକ୍ଷକୁ ଭାରତୀୟ ପରମ୍ପରାରେ ଜୀବନର ସର୍ବୋତ୍ତମ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଉଥିଲେ ବି ଅନ୍ୟ ତିନୋଟି ଲକ୍ଷ୍ୟର ପ୍ରାପ୍ତି ସ୍ୱରୂପ ଏହାର ପ୍ରାପ୍ତିକୁ ଗୁରୁତ୍ୱ ଦିଆନଯାଇ ବରଂ ଏହାର ପ୍ରାପ୍ତି ପାଇଁ ବେଳକେ ସେସବୁକୁ ଅସ୍ୱୀକାର କରିବାର ଦେଖାଯାଏ । ବସ୍ତୁତଃ ନୈତିକତା ଓ ଆଧ୍ୟାତ୍ମିକତା ଭିତରେ ଏକ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ ଓ ଆଧ୍ୟାତ୍ମିକ ପ୍ରାପ୍ତି ପାଇଁ ନୈତିକତାର ଗୁରୁତ୍ୱ ବେଳକେ ଅନୁଭୂତ ହୋଇନଥାଏ । ଅବଶ୍ୟ ପରବର୍ତ୍ତୀ ଦାର୍ଶନିକମାନେ ନୈତିକତା ଓ ଆଧ୍ୟାତ୍ମିକତା ଭିତରେ ସାମଞ୍ଜସ୍ୟ ଆଣିବାକୁ ଉଦ୍ୟମ କରିଛନ୍ତି, ତଥାପି ଉଭୟ ଭିତରେ ପାର୍ଥକ୍ୟ ସର୍ବଦା ରହିଆସିଛି । ବସ୍ତୁତଃ ଗୋଟିଏ ଦେଶର ପରମ୍ପରାକୁ ଆଧ୍ୟାତ୍ମିକ କୁହାଯାଉଥିବା ବେଳେ ସେ ଦେଶର ସାମାଜିକ ଜୀବନରେ ନୈତିକତାର ଉତ୍କର୍ଷ ଦେଖାଯାଏ ନାହିଁ ଓ ନୈତିକ ଆଚରଣ ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆଯାଏ ନାହିଁ । ସାମାଜିକ ନ୍ୟାୟ ଓ ନୈତିକ ଆଚରଣ ପ୍ରତି ଉଦାସୀନ ରହି ଆସିଥିବା ଗୋଟିଏ ଦେଶର ପରମ୍ପରା ଯେ ଆଧ୍ୟାତ୍ମିକ ଏହା ସମ୍ଭବତଃ ଭାରତୀୟ ସଂସ୍କୃତିର ସବୁଠାରୁ ବଡ଼ ପ୍ରହେଳିକା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଭିନ୍ନ ମହାନ ପରମ୍ପରାରେ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ ନେଇ ଭିନ୍ନ ଭିନ୍ନ ଦୃଷ୍ଟିଭଙ୍ଗୀ ବିକାଶ ଲାଭକରିଛି । ପ୍ରତ୍ୟେକ ସଭ୍ୟତା ଓ ସଂସ୍କୃତି ଭିତରେ ଜୀବନର ସର୍ବୋତ୍ତମ ଲକ୍ଷ୍ୟ ନେଇ ବିକାଶ ଲାଭ କରିଥିବା ମୂଲ୍ୟବୋଧ ଆଧ୍ୟାତ୍ମିକ ନୁହେଁ । କେତେକ ସଂସ୍କୃତିରେ ବ୍ୟକ୍ତିର ଆଧ୍ୟାତ୍ମିକ ପ୍ରାପ୍ତି ଅପେକ୍ଷା ସାମାଜିକ ନ୍ୟାୟ ଓ ନୈତିକ ଶୃଙ୍ଖଳାକୁ ସାମାଜିକ ଶ୍ରେୟ ଭାବରେ ଅଧିକ ଗୁରୁତ୍ୱ ଦିଆଯାଇଛି ଓ ଭିନ୍ନ ଭିନ୍ନ ସଂସ୍କୃତିରେ ବ୍ୟକ୍ତି ଓ ବ୍ୟଷ୍ଟି ପାଇଁ ଭିନ୍ନ ଲକ୍ଷ୍ୟର ଅବତାରଣା କରାଯାଇଛି । ଗୋଟିଏ ଦେଶର ସାଂସ୍କୃତିକ ଚେତନାରେ ଯେଉଁ ଲକ୍ଷ୍ୟକୁ ସର୍ବାଧିକ ମୂଲ୍ୟ ଦିଆଯାଇଥାଏ ସେ ଦେଶର ଦର୍ଶନର ଇତିହାସରେ ତା'ର ତାତ୍ତ୍ୱିକ ବିଶ୍ଳେଷଣ ଓ ପର୍ଯ୍ୟାଲୋଚନା ହୋଇଥାଏ । ସମାଜର କୌଣସି ବିଶ୍ୱାସ ଓ ମୂଲ୍ୟବୋଧକୁ ଦର୍ଶନ ଗ୍ରହଣ କରିନଯାଇ ତାହାର ଅନୁଶୀଳନ କରିଥାଏ ଏବଂ ତାହାର ଉତ୍କର୍ଷ ଓ ଅପକର୍ଷ ଦିଗ ପ୍ରତି ଆଲୋକପାତ କରିଥାଏ । ସେହିପରି ଭାରତୀୟ ସଂସ୍କୃତି ଭିତରେ ଜୀବନର ପୁରୁଷାର୍ଥ ନେଇ ବିକାଶ ଲାଭ କରିଥିବା ଦୃଷ୍ଟିଭଙ୍ଗୀର ସୂକ୍ଷ୍ମ ବିଶ୍ଳେଷଣ ଭାରତୀୟ ଦର୍ଶନ ଇତିହାସରେ ଦେଖିବାକୁ ମିଳେ । ସୁତରାଂ ମୋକ୍ଷ ନେଇ ନାନା ତାତ୍ତ୍ୱିକ ଆଲୋଚନା ଭାରତୀୟ ଦର୍ଶନରେ ସ୍ଥାନ ପାଇଛି । କିନ୍ତୁ ସେନେଇ ଭାରତୀୟ ଦର୍ଶନକୁ ଆଧ୍ୟାତ୍ମିକ କହି ଭାବାବେଗ ସୃଷ୍ଟି କରିବା ଯଥାର୍ଥ ମନେ ହୁଏ ନାହିଁ ।

■■

# ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ

ଆସ୍ତିକତାବାଦ ଓ ନିରୀଶ୍ୱରବାଦ ଦୁଇଟି ବୌଦ୍ଧିକ ପ୍ରତୀତି । ଦର୍ଶନ ଇତିହାସରେ ଏ ଉଭୟ ପ୍ରତ୍ୟୟ ଉପରେ ବହୁବିଧ ବିଚାର ବିମର୍ଷ ହୋଇଛି । ସେହିପରି ପୃଥିବୀରେ ବିକାଶ ଲାଭ କରିଥିବା ଅଧିକାଂଶ ଧର୍ମରେ ଈଶ୍ୱର ପ୍ରସଙ୍ଗ ଉପରେ ନାନା ଆଲୋଚନା ମଧ୍ୟ ଦେଖିବାକୁ ମିଳିଥାଏ । ଧର୍ମ ମାନଙ୍କରେ ଈଶ୍ୱର ସଂକ୍ରାନ୍ତୀୟ ଆଲୋଚନା ବିଶ୍ୱାସ ଉପରେ ଆଧାରିତ ହୋଇଥିବା ବେଳେ ଦର୍ଶନ ଶାସ୍ତ୍ରରେ ଈଶ୍ୱର ପ୍ରତୀତି ଉପରେ ନାନା ଜଟିଳ ତାର୍କିକ ପ୍ରଶ୍ନ ଉତ୍‌ଥାପିତ ହୋଇଥାଏ । ଆସ୍ତିକତାବାଦୀ ମାନେ ଈଶ୍ୱରଙ୍କ ଉପରେ ଏକକ ମତ ପୋଷଣ କରନ୍ତି ନାହିଁ । ସବୁ ଧର୍ମରେ ଈଶ୍ୱର ପ୍ରତୀତି ମଧ୍ୟ ସମାନ ନୁହେଁ । ବିଭିନ୍ନ ଧର୍ମ ଓ ଦର୍ଶନ ବିଦ୍ୟାଳୟ ମାନଙ୍କରେ ଭିନ୍ନ ଭିନ୍ନ ଈଶ୍ୱର ପ୍ରତୀତି ରହିଥିବା ଜଣାଯାଏ । ଏହି ଭିନ୍ନତା ପୃଷ୍ଠଭୂମିରେ ଈଶ୍ୱର ସଂକ୍ରାନ୍ତୀୟ ବିଶ୍ୱାସକୁ ମୋଟାମୋଟି ଭାବରେ ତିନୋଟି ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରାଯାଇପାରେ, ଯଥା- ବହୁ ଈଶ୍ୱରବାଦ (polytheism), ଏକୈକାଧିଈଶ୍ୱରବାଦ (henotheism) ଓ ଏକେଶ୍ୱରବାଦ (mono-theism) । ସଭ୍ୟତାର ଆରମ୍ଭ ପର୍ବରେ ପ୍ରକୃତିର ବିଭିନ୍ନ କ୍ଷେତ୍ର ଭିନ୍ନ ଭିନ୍ନ ଶକ୍ତିଦ୍ୱାରା ନିୟନ୍ତ୍ରିତ ବୋଲି ମଣିଷ ଧାରଣା କରୁଥିଲା । ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର, ଅଗ୍ନି, ବରୁଣ ଇତ୍ୟାଦିଙ୍କୁ ଦେବତା ଭାବରେ ଗ୍ରହଣ କରି ନିଜ ଜିଜ୍ଞାସାକୁ ଚରିତାର୍ଥ କରୁଥିଲା । ଧନ, ଜ୍ଞାନ, ସଫଳତା ଇତ୍ୟାଦି ଲାଭ ପାଇଁ ବିଭିନ୍ନ ଦେବା ଦେବୀଙ୍କୁ ପୂଜା କରିବା ବହୁ-ଈଶ୍ୱରବାଦ ଭାବନାକୁ ବ୍ୟକ୍ତ କରିଥାଏ । ଭିନ୍ନ ଭିନ୍ନ ଆନୁବଂଶିକ ଓ ସାମାଜିକ ଗୋଷ୍ଠୀ ଭିତରେ ଏକ ଏକ ଈଶ୍ୱରଙ୍କୁ ପରିକଳ୍ପନା କରାଗଲା । ଭିନ୍ନ ଭିନ୍ନ ଗୋଷ୍ଠୀ କାଳକ୍ରମେ ନିଜ ନିଜ ଗୋଷ୍ଠୀର ଆରାଧ୍ୟ ଈଶ୍ୱରଙ୍କୁ ଉପାସନା କଲେ । ଦାର୍ଶନିକ ଚିନ୍ତନର ଅଭ୍ୟୁଦୟ ସହିତ ମଣିଷର ମାନସିକତାରେ ପରିବର୍ତ୍ତନ ହୋଇ ଏକେଶ୍ୱରବାଦର ପରିକଳ୍ପନା ସୃଷ୍ଟି ହେଲା । ଏପରିକି ଦାର୍ଶନିକ ଯୁକ୍ତିଦ୍ୱାରା ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବାକୁ ପ୍ରୟାସ କରାଯାଇ ଯୁକ୍ତିର ଅବତାରଣା କରାଗଲା । ପରବର୍ତ୍ତୀ ସମୟରେ ଏହି ଯୁକ୍ତିଗୁଡ଼ିକର ବୈଧତାକୁ ବିଶ୍ଳେଷଣ କରାଯାଇ ପ୍ରଦତ୍ତ ଯୁକ୍ତିଗୁଡ଼ିକର ଅସାରତା ପ୍ରତିପାଦନ କରାଗଲା । କିନ୍ତୁ ନାନା

ମନସ୍ତାତ୍ତ୍ୱିକ, ସାଂସ୍କୃତିକ ଓ ନୈତିକ କାରଣରୁ ଈଶ୍ୱର ବିଶ୍ୱାସ ସମାଜରେ ବଳବତ୍ତର ରହିଲା ।

ଦର୍ଶନ ଇତିହାସରେ ଈଶ୍ୱରବାଦ ସହ ନିରୀଶ୍ୱରବାଦ ପ୍ରତୀତି ମଧ୍ୟ ସୃଷ୍ଟି ହୋଇଛି । ଆସ୍ତିକତାବାଦ ପରି ନିରୀଶ୍ୱରବାଦ ଭିନ୍ନ ଭିନ୍ନ ତାର୍କିକ ଓ ତାତ୍ତ୍ୱିକ ଆଧାର ଉପରେ ଆଧାରିତ ହୋଇ ରହିଛି । ସଂଶୟବାଦ, ଅଜ୍ଞେୟତାବାଦ ଓ ପ୍ରକୃତିବାଦ ପରସ୍ପରଠାରୁ ପୃଥକ ହେଲେ ମଧ୍ୟ ନିରୀଶ୍ୱରବାଦକୁ ଗ୍ରହଣ କରିଥାନ୍ତି । ସଂଶୟବାଦ ସର୍ବଶକ୍ତିମାନ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କର ଅସ୍ତିତ୍ୱକୁ ସନ୍ଦେହ କରିଛି । ଅଜ୍ଞେୟତାବାଦ ଅନୁଯାୟୀ ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରମାଣ କରିବାକୁ ଯଥେଷ୍ଟ ଯୁକ୍ତି ବା ବୌଦ୍ଧିକ ଭିତ୍ତିନାହିଁ । ଈଶ୍ୱରଙ୍କ ସମ୍ବନ୍ଧରେ ଯାହା କିଛି କୁହାଯାଉଛି ତାହା କେବଳ ବିଶ୍ୱାସ ଜନିତ କଳ୍ପନା ମାତ୍ର, ତା'ର ବୌଦ୍ଧିକ ଭିତ୍ତି ସୁଦୃଢ଼ ନୁହେଁ । ପ୍ରକୃତିବାଦ ଅନୁଯାୟୀ ପ୍ରକୃତିର୍ ସୃଷ୍ଟି ପ୍ରତ୍ୟେକଟି ଘଟଣା ପଶ୍ଚାତରେ ପ୍ରାକୃତିକ ନିୟମ ବିଦ୍ୟମାନ ଓ କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ ଅଲୌକିକ ବା ଆଧିଦୈବିକ କାରଣ ନାହିଁ । ସଂଶୟବାଦ, ଅଜ୍ଞେୟତାବାଦ ଓ ପ୍ରକୃତିବାଦ ନିଜ ନିଜ ଧାରାରେ ଓ ସ୍ୱକୀୟ ଯୁକ୍ତି ବଳରେ ନିରୀଶ୍ୱରବାଦକୁ ପୁଷ୍ଟ କରିଛନ୍ତି ।

ବିଭିନ୍ନ ଧର୍ମମାନଙ୍କରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଏକ ସ୍ୱତଃସିଦ୍ଧ ସତ୍ୟ ଭାବରେ ଗ୍ରହଣ କରାଯାଇ ତାହାକୁ ଯୁକ୍ତିର ପରିସରରୁ ପୃଥକ କରାଯାଇଛି । କିନ୍ତୁ ଦର୍ଶନରେ କୌଣସି ବିଶ୍ୱାସର ତାତ୍ତ୍ୱିକ ଭିତ୍ତିକୁ ଯୁକ୍ତିର କଷଟିରେ ପରୀକ୍ଷା କରାଯାଇ ଜ୍ଞାନ ଓ ବିଶ୍ୱାସର ପରିସରକୁ ପୃଥକ କରାଯାଏ । ଅବଶ୍ୟ ବିଭିନ୍ନ ବିଦ୍ୟାଳୟର ଦାର୍ଶନିକ ବିଚାର କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଯୁକ୍ତି ରହିଥିଲେ ବି ପ୍ରତ୍ୟେକ ସ୍ତରରେ ପ୍ରଦତ୍ତ ତର୍କ ତ୍ରୁଟିଶୂନ୍ୟ ବୋଲି କୁହାଯାଇ ପାରିବ ନାହିଁ । କୌଣସି ଯୁକ୍ତିର ପଶ୍ଚାତରେ ଥିବା ତ୍ରୁଟିକୁ ଜାଣିବା ପାଇଁ ଅନେକ ସମୟ ବା ଯୁଗ ବିତି ଯାଇପାରେ । ସୂକ୍ଷ୍ମ ବୌଦ୍ଧିକ ବିଶ୍ଳେଷଣ ଜନିତ ଚିନ୍ତନକୁ ଦର୍ଶନର ଇତିହାସ ଋଦ୍ଧିମନ୍ତ ହୋଇଆସିଛି । ଈଶ୍ୱରବାଦ ବା ନିରୀଶ୍ୱରବାଦ ପ୍ରତୀତି ଉପରେ ଦାର୍ଶନିକ ଚିନ୍ତନ ଏହି ସୂକ୍ଷ୍ମ ବୌଦ୍ଧିକ ତୀକ୍ଷ୍ଣତାର ସ୍ୱାକ୍ଷର ବହନ କରେ ।

ଏହି ପୃଷ୍ଠଭୂମିରେ ଭାରତୀୟ ଦର୍ଶନ ପରମ୍ପରାରେ ଏହି ପ୍ରତ୍ୟୟ ସକଳ କିପରି ବିକାଶ ଲାଭ କରିଛି ତାହା ପର୍ଯ୍ୟାଲୋଚନା କରାଯାଉ । ଭାରତୀୟ ଦର୍ଶନ ଅତି ପ୍ରାଚୀନ ଓ ସମ୍ଭବତଃ ଦର୍ଶନର ଇତିହାସରେ ସବୁଠାରୁ ପୁରାତନ । ଏହାକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ ଯଥା, ଆସ୍ତିକ ଓ ନାସ୍ତିକ ଦର୍ଶନ । ଏଠାରେ ଆସ୍ତିକ ଓ ନାସ୍ତିକ ପ୍ରତ୍ୟୟ ଏକ ବୈଷୟିକ ଅର୍ଥରେ ବ୍ୟବହୃତ ହୋଇଛି । ଯେଉଁ ଦାର୍ଶନିକ ପଦ୍ଧତି ବା ସିଷ୍ଟମ ସକଳ ବେଦର ପ୍ରାଧାନ୍ୟକୁ ଗ୍ରହଣ କରିଛନ୍ତି ସେହି ପଦ୍ଧତିମାନଙ୍କୁ ଆସ୍ତିକ କୁହାଯିବା ବେଳେ ଯେଉଁମାନେ ବେଦର ମହତ୍ତ୍ୱକୁ ଗ୍ରହଣ କରି ନାହାନ୍ତି ସେମାନଙ୍କୁ ନାସ୍ତିକ କୁହାଯାଉଛି । ବସ୍ତୁତଃ ଚାର୍ବାକ, ବୌଦ୍ଧ ଓ ଜୈନ ଦର୍ଶନକୁ ନାସ୍ତିକ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଉଥିବା

ବେଳେ ସାଂଖ୍ୟ, ମୀମାଂସା, ନ୍ୟାୟ, ବୈଶେଷିକ, ଯୋଗ ଓ ବେଦାନ୍ତକୁ ଆସ୍ତିକ ଶ୍ରେଣୀର ପର୍ଯ୍ୟାୟଭୁକ୍ତ କରାଯାଉଛି ।

ନାସ୍ତିକ ଦର୍ଶନଧାରାରେ ଅନ୍ତର୍ଭୁକ୍ତ ଥିବା ବୌଦ୍ଧ, ଜୈନ ଓ ଚାର୍ବାକ ସିଷ୍ଟମଗୁଡ଼ିକରେ ନୀରିଶ୍ୱରବାଦର ସ୍ପଷ୍ଟ ପ୍ରତିଫଳନ ଦେଖିବାକୁ ମିଳେ । ବୌଦ୍ଧ ଦର୍ଶନରେ ଈଶ୍ୱର ସଂକ୍ରାନ୍ତୀୟ ତାତ୍ତ୍ୱିକ ପ୍ରଶ୍ନମାନଙ୍କୁ ଏଡାଇ ଦିଆଯାଇଛି । ବୁଦ୍ଧ ଈଶ୍ୱର ସଂପର୍କୀୟ ପ୍ରଶ୍ନମାନଙ୍କ ଉପରେ ନୀରବ ରହିଛନ୍ତି । ଶୃଙ୍ଖଳିତ ଜୀବନ ଓ ନୈତିକ ମୂଲ୍ୟବୋଧ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଥିବା ଏହି ଧର୍ମ ଈଶ୍ୱର-ନିରପେକ୍ଷ ରହିବା ଉଲ୍ଲେଖନୀୟ ଅଟେ । ବୌଦ୍ଧ ଦର୍ଶନରେ ଯେଉଁ ଅଷ୍ଟାଙ୍ଗ ମାର୍ଗର ବିବରଣ ରହିଛି ତାହା ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ନୈତିକ ଉନ୍ମେଷ ପାଇଁ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ସେଥିରେ କିନ୍ତୁ ଈଶ୍ୱର ବିଶ୍ୱାସକୁ ବାଦ ଦିଆଯାଇଛି ।

ଜୈନ ଦର୍ଶନ ନିରୀଶ୍ୱରବାଦୀ । କୌଣସି ଈଶ୍ୱରଙ୍କର ସତ୍ତାକୁ ଏଥିରେ ଗ୍ରହଣ କରାଯାଇ ନାହିଁ । ଜୈନ ଦର୍ଶନରେ ଜଗତ ସତ୍ୟ ଓ ସନାତନ । ଏହା ସ୍ୱଧର୍ମ ଦ୍ୱାରା ପରିଚାଳିତ । ଏହାର କୌଣସି ସ୍ରଷ୍ଟା, ପାଳନ କର୍ତ୍ତା ବା ସଂହର୍ତ୍ତା ନାହାନ୍ତି । ଜଗତରେ ଯାହା କିଛି ଅଛି ତାହା ଦୁଇ ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ ଯଥା ଅଜୀବ ଓ ଜୀବ । ଅଜୀବ ପଞ୍ଚବିଧ । ସେଗୁଡ଼ିକ ମଧ୍ୟରେ ପୁଦଗଳ ମୂର୍ତ୍ତ ଓ ଅନ୍ୟ ଚାରୋଟି ଅମୂର୍ତ୍ତ । ସେହିପରି ପ୍ରତ୍ୟେକ ପ୍ରାଣୀଭିତରେ ଜୀବ ରହିଛି । ଜୀବଗଣ ଚେତନଶୀଳ ଓ ସନାତନ । ଜୀବର ଅନ୍ତିମ ଲକ୍ଷ୍ୟ ମୋକ୍ଷ ପ୍ରାପ୍ତି । ପୁନର୍ଜନ୍ମରୁ ମୁକ୍ତ ହେବାହିଁ ମୁକ୍ତି । ସୁତରାଂ କର୍ମକାଣ୍ଡ ବା ଉପାସନା ପରିବର୍ତ୍ତେ ଅହିଂସା, ପବିତ୍ରତା, କରୁଣା, ଭ୍ରାତୃତ୍ୱ ଓ ସମ୍ୟକ ଚରିତ୍ର ଇତ୍ୟାଦି ନୈତିକ ଆଚରଣ ଦ୍ୱାରା ଜୀବ ଜୀବନ-ମୃତ୍ୟୁ ଚକ୍ରରୁ ଉଦ୍ଧାର ପାଏ । ଅହିଂସା, ସତ୍ୟ, ଅସ୍ତେୟ, ଅପରିଗ୍ରହ ଓ ବ୍ରହ୍ମଚର୍ଯ୍ୟ ଏହି ପଞ୍ଚ ମହାବ୍ରତ ପାଳନ କରିବାଦ୍ୱାରା ଜୀବର ଉତ୍କର୍ଷ ସାଧିତ ହୁଏ । ମୋଟ ଉପରେ ବୌଦ୍ଧ ଧର୍ମ ଦର୍ଶନ ପରି ଜୈନ ଦର୍ଶନରେ ନୈତିକ ଆଚରଣ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯିବା ବେଳେ ଈଶ୍ୱର ବିଶ୍ୱାସ ସମ୍ବନ୍ଧରେ କୌଣସି ପରାମର୍ଶ ଦିଆଯାଇନାହିଁ ।

ଚାର୍ବାକ ଦର୍ଶନ ନିରୀଶ୍ୱରବାଦୀ । ନାସ୍ତିକ ଦର୍ଶନଧାରାରେ ଚାର୍ବାକ ଦର୍ଶନକୁ ଲୋକାୟତ କୁହାଯାଏ । ଲୋକାୟତ ଶବ୍ଦର ଉତ୍ପତ୍ତି ଲୋକ ଅର୍ଥାତ୍ ଇହଲୋକ ଓ ଆୟତ ଅର୍ଥାତ୍ ମୂଳ ଶବ୍ଦରୁ ହୋଇଛି । ସୁତରାଂ ପରଲୋକ ପରିବର୍ତ୍ତେ ଇହଲୋକକୁ ଆଧାର ଭାବରେ ନେଇ ଯେଉଁ ଦାର୍ଶନିକ ଚିନ୍ତନ ହୋଇଛି ତାହାର ନାମ ଲୋକାୟତ । ଚାର୍ବାକ ଦର୍ଶନ ଇନ୍ଦ୍ରିୟାନୁଭବିକ ପ୍ରତ୍ୟକ୍ଷକୁ ଜ୍ଞାନଲାଭର ମୂଳ ଭିତ୍ତି ଭାବରେ ନେଇ ବସ୍ତୁବାଦକୁ ପ୍ରତିଷ୍ଠା କରିଛି । ପ୍ରାକୃତିକ କ୍ରିୟାକୁ ବୁଝିବା ପାଇଁ ପ୍ରକୃତିକୁ ଅନୁସନ୍ଧାନ କରିବାକୁ ହେବ; କୌଣସି ଅଲୌକିକ ବା ଐଶ୍ୱରୀୟ ବ୍ୟାଖ୍ୟାର ମୂଲ୍ୟ ହିଁ ନାହିଁ । ଏହି ଦର୍ଶନରେ ବସ୍ତୁକୁ

ସତ୍ୟ ଓ ସନାତନ ବୋଲି ଗ୍ରହଣ କରାଯାଇଛି । ମାଟି, ପାଣି, ପବନ ଓ ଅଗ୍ନିକୁ ଅବିନାଶୀ ଭାବରେ ନେଇ ପ୍ରାଣ ବା ଚେତନାକୁ ବସ୍ତୁର ବିଶିଷ୍ଟ ଲକ୍ଷଣ ଭାବରେ ନିଆଯାଇଛି । ଈଶ୍ୱର ମଣିଷ ମନର ଏକ କଳ୍ପନା ମାତ୍ର ଓ ଏହା ପଶ୍ଚାତରେ ଯୁକ୍ତିନିଷ୍ଠ ବା ବସ୍ତୁନିଷ୍ଠ ଆଧାର ନାହିଁ ।

ଚାର୍ବାକ ଦର୍ଶନ ଉପରେ ସେପରି କିଛି ମୂଳ ବା ପ୍ରାମାଣିକ ଗ୍ରନ୍ଥ ନାହିଁ, ସମ୍ଭବତଃ ପ୍ରାଚୀନ ଭାରତରେ ତାହାକୁ ନଷ୍ଟ କରି ଦିଆଯାଇଛି । ତଥାପି ଭାରତୀୟ ଦର୍ଶନ ପରମ୍ପରାରେ ବୈଚାରିକ ସ୍ତରରେ ଚାର୍ବାକ ଦର୍ଶନ ଯେ ଏକ ବୈପ୍ଳବିକ ଚିନ୍ତନ ଥିଲା ତାହା ଅସ୍ୱୀକାର କରିହେବନାହିଁ । ୟୁରୋପୀୟ ଚିନ୍ତା ରାଜ୍ୟରେ ସୃଷ୍ଟିଅନୁଭବବାଦ, ମାର୍କ୍ସବାଦ, ପ୍ରକୃତିବାଦ ପରି ଚିନ୍ତନର ବହୁ ପୂର୍ବରୁ ଭାରତ ବର୍ଷରେ ଜନ୍ମ ନେଇଥିବା ଲୋକାୟତ ଦର୍ଶନ ଚିନ୍ତାରାଜ୍ୟରେ ଏକ ନୂତନ ଦିଗନ୍ତର ସନ୍ଧାନ ଦେଇଥିଲା ।

ଆସ୍ତିକ ଦର୍ଶନ ଧାରାରେ ସାଂଖ୍ୟ ଦର୍ଶନରେ ଈଶ୍ୱର ପ୍ରତୀତି ଦେଖିବାକୁ ମିଳେ ନାହିଁ । ଏହି ଦର୍ଶନରେ ଏକ ବିବର୍ତ୍ତନ ପ୍ରତ୍ୟୟ ଦେଖିବାକୁ ମିଳେ । ସାଂଖ୍ୟ ମତରେ ଜଗତର କେହି କର୍ତ୍ତା ନାହାନ୍ତି, ଏହା ପ୍ରକୃତିରୁ ବିବର୍ତ୍ତିତ ହୋଇଆସିଛି । ପ୍ରକୃତିକୁ କ୍ରିୟାଶୀଳ କରାଇ ବିବର୍ତ୍ତନର ଧାରାକୁ ବୁଝାଇବାକୁ କୌଣସି ଈଶ୍ୱରଙ୍କର ଆବଶ୍ୟକତା ନାହିଁ । ପ୍ରକୃତି ସହିତ ପୁରୁଷର ସ୍ଥିତିକୁ ମୌଳିକ ଭାବରେ ନିଆଯାଇଛି । ପ୍ରକୃତି ଓ ପୁରୁଷ ଉଭୟ ଅବିନାଶୀ ଓ ସନାତନ । ସାଂଖ୍ୟ ଏହି ଦୃଷ୍ଟିରୁ ଦ୍ୱୈତବାଦୀ ଅବଶ୍ୟ ଏଥିରେ ପୁରୁଷର ଅନେକତ୍ୱକୁ ଗ୍ରହଣ କରାଯାଇଥିବାରୁ ସଂଖ୍ୟା ଦୃଷ୍ଟିରୁ ସାଂଖ୍ୟକୁ ବହୁତତ୍ତ୍ୱବାଦୀ କହିବା ଅସମୀଚୀନ ନୁହେଁ । କିନ୍ତୁ ଏହି ଦର୍ଶନ ସଂପୂର୍ଣ୍ଣ ନିରୀଶ୍ୱରବାଦୀ ।

ମୀମାଂସା ଦର୍ଶନ ଦୁଇଟି ଭାଗରେ ବିଭକ୍ତ ଯଥା ପୂର୍ବମୀମାଂସା ଓ ଉତ୍ତର ମୀମାଂସା । ଉତ୍ତର ମୀମାଂସାକୁ ବେଦାନ୍ତ କୁହାଯାଏ । ପୂର୍ବ ମୀମାଂସା ନିରୀଶ୍ୱରବାଦୀ, କାରଣ ଏଥିରେ ଈଶ୍ୱରଙ୍କର ଅସ୍ତିତ୍ୱକୁ ଗ୍ରହଣ କରାଯାଇ ନାହିଁ । ଏହା ଅନୁଯାୟୀ ଏହି ଜଗତର କେହି ସ୍ରଷ୍ଟା ନାହାନ୍ତି । ଜଗତ, ମୀମାଂସା ମତରେ, ସନାତନ ଯଦିବା ପରିବର୍ତ୍ତନଶୀଳ । ସେହିପରି ଜୀବାତ୍ମାମାନଙ୍କୁ ଏଥିରେ ସନାତନ ବୋଲି ଗ୍ରହଣ କରାଯାଏ । ସ୍ୱର୍ଗବାସ ବା ମୋକ୍ଷକୁ ଜୀବାତ୍ମାର ଲକ୍ଷ୍ୟ ଭାବରେ ନିଆଯାଇଛି । ଏହି ଦର୍ଶନରେ ଅପୂର୍ବ ନାମରେ ଏକ ପ୍ରତୀତି ରହିଛି ଯାହା ବ୍ୟକ୍ତିର କାମ୍ୟ କର୍ମ ବା ନୈତିକ ଆଚରଣଦ୍ୱାରା ସୃଷ୍ଟିହୁଏ । ଏହି ଅପୂର୍ବ ଦ୍ୱାରା ବ୍ୟକ୍ତି ଜନ୍ମ ମୃତ୍ୟୁ ଚକ୍ରରୁ ନିଷ୍କୃତି ପାଏ । କିନ୍ତୁ ଏହି ଦର୍ଶନରେ ଈଶ୍ୱର ପ୍ରତୀତି ନଥିବାରୁ ଏହା ନିରୀଶ୍ୱରବାଦୀ ।

ନ୍ୟାୟ ଓ ବୈଶେଷିକ ଦର୍ଶନ ଦ୍ୱୟ ପରସ୍ପରଠାରୁ ପୃଥକ ହେଲେ ବି ମୌଳିକ ପ୍ରଶ୍ନମାନଙ୍କ ଉପରେ ଉଭୟ ଭିତରେ ମତର ଭିନ୍ନତା ନଥିବାରୁ ସେମାନଙ୍କୁ ଏକତ୍ର ଆଲୋଚନା କରାଯାଏ । ବୈଶେଷିକ ଦର୍ଶନର ମୌଳିକ ଅବଦାନ ହେଉଛି ଏହାର

ଅଣୁବାଦ । ଏହା ମତରେ ଜଗତ ପଦାର୍ଥରେ ତିଆରି ଓ ସାତୋଟି ପଦାର୍ଥର ସୂଚନା ଏଥିରେ ମିଳେ । ସାତୋଟି ପଦାର୍ଥ ମଧ୍ୟରୁ ପ୍ରଥମଟି ହେଉଛି ଦ୍ରବ୍ୟ ଓ ବୈଶେଷିକ ମତରେ ନ'ଟି ଦ୍ରବ୍ୟ ରହିଛି । ନ'ଟି ଦ୍ରବ୍ୟ ମଧ୍ୟରୁ ପୃଥିବୀ, ଜଳ, ଅଗ୍ନି ଓ ବାୟୁ ପରମାଣୁରେ ତିଆରି । ସେଗୁଡ଼ିକର ପରମାଣୁ ଅବିଭାଜ୍ୟ ଓ ନିତ୍ୟ । ଗୋଟିଏ ଦ୍ରବ୍ୟର ପରମାଣୁ ସମାନ କିନ୍ତୁ ଦୁଇଟି ଦ୍ରବ୍ୟର ପରମାଣୁ ପୃଥକ । ଆକାଶ, କାଳ ଓ ଦିକ୍ ଦ୍ରବ୍ୟଗୁଡ଼ିକ ଅସୀମ ଓ ନିତ୍ୟ । ଆତ୍ମା ଜଡ଼, ଓ ଚେତନା ଏହାର ଏକ ଗୁଣ । ମନର ସଂଯୋଗରେ ଆତ୍ମା ଚେତନ ହୁଏ ଓ ମନର ବିଲୋପରେ ଆତ୍ମା ଚେତନ ଶକ୍ତି ହରାଏ । ନ୍ୟାୟ ବୈଶେଷିକ ଦର୍ଶନରେ ଈଶ୍ୱର ପ୍ରତୀତି ରହିଛି ଓ ସେମାନେ ନିରୀଶ୍ୱରବାଦୀ ନୁହନ୍ତି । କିନ୍ତୁ କୌଣସି ଜାଗତିକ ଘଟଣା ବା ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ଈଶ୍ୱରଙ୍କର ଆବଶ୍ୟକତା ନାହିଁ । ବରଂ ପରବର୍ତ୍ତୀ କାଳରେ ଜଡ଼ ଅଦୃଷ୍ଟ ଜଗତର ନିୟାମକ ହୋଇପାରିବ ନାହିଁ ବୋଲି ଭାବି ଈଶ୍ୱର ପ୍ରତୀତିକୁ ଗ୍ରହଣ କରାଯାଇଛି ।

ଯୋଗ ଦର୍ଶନ ମୁଖ୍ୟତଃ ଜୀବନ ଚର୍ଯ୍ୟା ଉପରେ ଆଧାରିତ । ଏହାର ଦର୍ଶନ ପ୍ରତି ସେପରି ମୌଳିକ ଅବଦାନ ନାହିଁ । ଏହି ଦର୍ଶନ ମୁଖ୍ୟତଃ ସାଂଖ୍ୟର ତତ୍ତ୍ୱକୁ ଗ୍ରହଣ କରିଛି । ଯଦିବା ସଂଖ୍ୟା ନିରୀଶ୍ୱରବାଦୀ, ଯୋଗ ଦର୍ଶନରେ ଈଶ୍ୱର ପ୍ରତୀତି ରହିଛି । ସାଂଖ୍ୟ ପରି ଏହି ଦର୍ଶନ ଜୀବ ଭିତରେ ଥିବା ଜୀବାତ୍ମାମାନଙ୍କୁ ପୃଥକ ପୃଥକ ବୋଲି ବିଚାର କରି ଅସଂଖ୍ୟ ପୁରୁଷଙ୍କୁ ଗ୍ରହଣ କରିଛି । ଈଶ୍ୱରଙ୍କୁ ଜଣେ ପୁରୁଷ ବୋଲି କଳ୍ପନା କରାଯାଇଛି । କିନ୍ତୁ ସେ ହେଉଛନ୍ତି ଜଣେ ବିଶେଷ ପୁରୁଷ । ସେ ସର୍ବଜ୍ଞ ଓ ସଦା ମୁକ୍ତ । କିନ୍ତୁ ଈଶ୍ୱରଙ୍କୁ ସେପରି କିଛି ଅନିବାର୍ଯ୍ୟ ଭୂମିକା ପ୍ରଦାନ କରାଯାଇ ନାହିଁ ।

ଶେଷରେ ବେଦାନ୍ତ ଦର୍ଶନ । ବେଦାନ୍ତ ଦର୍ଶନ ଉପନିଷଦ, ବ୍ରହ୍ମସୂତ୍ର ଓ ଗୀତାର ବ୍ୟାଖ୍ୟାକୁ ଆଧାର କରି ଗଢ଼ି ଉଠିଛି । ବେଦାନ୍ତର ନାନା ବିଦ୍ୟାଳୟ ରହିଥିଲେ ମଧ୍ୟ ଭାରତୀୟ ଦର୍ଶନ ଇତିହାସରେ ଅଦ୍ୱୈତ ବେଦାନ୍ତ ମୁଖ୍ୟସ୍ଥାନ ନେଇଆସିଛି । ଅଦ୍ୱୈତ ବେଦାନ୍ତ ଅନୁଯାୟୀ ବ୍ରହ୍ମ ହିଁ ମୂଳ ଓ ସନାତନ । ତାଙ୍କର ଗୁଣ ନାହିଁ ବା ତାଙ୍କୁ ଭାଷାରେ ବର୍ଣ୍ଣନା କରିହେବ ନାହିଁ । ସେ ନିର୍ଗୁଣ ଓ ଅବର୍ଣ୍ଣନୀୟ । ଜଗତ ସନାତନ ନୁହେଁ, ଏହା ସଦା ପରିବର୍ତ୍ତନଶୀଳ ଓ ମିଥ୍ୟା । ସୁତରାଂ ଜଗତର ସୃଷ୍ଟି ବିଷୟକ ପ୍ରଶ୍ନଟି ବେଦାନ୍ତରେ ଅବାନ୍ତର । ଏକ ନିର୍ଦ୍ଦିଷ୍ଟ ଯୁକ୍ତିର ଆଧାର ଉପରେ ଅଦ୍ୱୈତ ବେଦାନ୍ତର ମୂଳଭିତ୍ତି ଗଢ଼ି ଉଠିଛି ଓ ଏକ ତତ୍ତ୍ୱମୀମାଂସା ପ୍ରତିଷ୍ଠା କରିଛି । ପ୍ରତ୍ୟେକ ତତ୍ତ୍ୱମୀମାଂସା ପରି ଅଦ୍ୱୈତ ବେଦାନ୍ତର ଯୁକ୍ତି ପ୍ରତ୍ୟୟଗତ ଜଟିଳତାରୁ ଉଦ୍ଭବ ହୋଇଛି । ବୈଚାରିକ ସ୍ତରରେ ଅଦ୍ୱୈତ ବେଦାନ୍ତ ନିରୀଶ୍ୱରବାଦୀ ନ ହେଲେ ମଧ୍ୟ ଏଥିରେ ଥିବା ବ୍ରହ୍ମ ପ୍ରତୀତି ଧର୍ମୀୟ ଈଶ୍ୱର ଭାବନାଠାରୁ ସଂପୂର୍ଣ୍ଣ ଭିନ୍ନ ।

ମୋଟ ଉପରେ କହିବାକୁ ଗଲେ ଭାରତୀୟ ଦର୍ଶନ ସହ ସଂପୃକ୍ତ ଥିବା ଆସ୍ତିକ

ଓ ନାସ୍ତିକ ଦର୍ଶନ ବିଦ୍ୟାଳୟ ମାନଙ୍କରେ ଈଶ୍ବର ଏକ ଅପରିହାର୍ଯ୍ୟ ପ୍ରତୀତି ନୁହେଁ । ଅଧିକାଂଶ ସିଷ୍ଟମରେ ଈଶ୍ବର ଭାବନା ସ୍ଥାନ ପାଇନାହିଁ ଓ ଯେଉଁ ଯେଉଁ ସିଷ୍ଟମରେ ଏହା ସ୍ଥାନ ପାଇଛି ସେଥିରେ ଈଶ୍ବରଙ୍କୁ ସେପରି କିଛି ଅନିବାର୍ଯ୍ୟ ସ୍ଥାନ ଦିଆଯାଇନାହିଁ । ଅନ୍ୟ ଭାବରେ କହିଲେ ଈଶ୍ବର ପ୍ରତ୍ୟୟ ସହିତ ସୃଷ୍ଟି, ସ୍ଥିତି ଓ ପ୍ରଳୟର ସମ୍ବନ୍ଧ ନାହିଁ । ଧର୍ମମାନଙ୍କରେ ଈଶ୍ବରଙ୍କୁ ଜଗତର ସ୍ରଷ୍ଟା ଓ ସଂହର୍ତ୍ତାଭାବରେ ଯେପରି ଚିତ୍ରଣ କରାଯାଇଛି - ଏପରିକି ହିନ୍ଦୁ ଧର୍ମରେ ମଧ୍ୟ କରାଯାଇଛି - ଭାରତୀୟ ଦର୍ଶନରେ ସେପରି କରାଯାଇନାହିଁ । ସେହିପରି ବ୍ୟକ୍ତିର ପୁରୁଷାର୍ଥ ନେଇ ମୋକ୍ଷର ପ୍ରତ୍ୟୟ ଥିଲେ ବି ଏଥିପାଇଁ ଈଶ୍ବରଙ୍କର ସେପରି ଅପରିହାର୍ଯ୍ୟ ଭୂମିକା ନାହିଁ ସୁତରାଂ ଭାରତୀୟ ଦର୍ଶନ ପରମ୍ପରାରେ କେତେକ ବିଦ୍ୟାଳୟରେ ଈଶ୍ବର ପ୍ରତୀତି ରହିଥିଲେ ବି ଏହାର ମୌଳିକ ନିର୍ଯ୍ୟାସ ନିରୀଶ୍ବରବାଦର ଅଧିକ ସମୀପବର୍ତ୍ତୀ କହିବା ଅସମୀଚୀନ ନୁହେଁ ।

■■

# ଈଶ୍ୱର ଓ ନୈତିକତା

ସମାଜର ବହୁ ଲୋକ ଈଶ୍ୱରଙ୍କ ଉପରେ ବିଶ୍ୱାସ କରନ୍ତି । କିନ୍ତୁ ଈଶ୍ୱର ଧାରଣା ସବୁ ଲୋକଙ୍କର ସମାନ ନୁହେଁ । ବିଭିନ୍ନ ଶାସ୍ତ୍ରରେ ଈଶ୍ୱରଙ୍କ ଉପରେ ଆଲୋଚନା ହୋଇଛି । ଏହି ପ୍ରତ୍ୟୟର ଉତ୍ପତ୍ତି, ତାତ୍ପର୍ଯ୍ୟ ଓ ଅର୍ଥକୁ ନେଇ ଧର୍ମ, ଦର୍ଶନ ଇତ୍ୟାଦିରେ କେତେ କେତେ ବିଚାର ବିମର୍ଷ ହୋଇଛି । ଏପରି କୁହାଯାଇଛି ଯେ ସଭ୍ୟତା ବିକାଶର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ଈଶ୍ୱର ଭାବନା ସୃଷ୍ଟି ହୋଇଛି । ସଭ୍ୟତାର ପହିଲି ପର୍ବରେ ଈଶ୍ୱର ନାହାନ୍ତି ବା ମଣିଷ ତାଙ୍କର ଆବଶ୍ୟକତା ଅନୁଭବ କରି ନାହିଁ । ଏହି ମତ ଯେ ଅବିବାଦୀୟ ଏହା ମଧ୍ୟ କୁହାଯାଇ ପାରିବ ନାହିଁ । ଯୁକ୍ତି ଦୃଷ୍ଟିରୁ ଯଦିବି ଧରି ନିଆଯାଏ ଯେ ସଭ୍ୟତାର ଉନ୍ମେଷ ସହିତ ଈଶ୍ୱର, ଅଲୌକିକତା, ଆଧିଦୈବିକ ଶକ୍ତି ଇତ୍ୟାଦି ଭାବନା ଗୁଡ଼ିକ ସୃଷ୍ଟି ହୋଇଛି ତେବେ ଅନ୍ତତଃ ଏତିକି କୁହାଯାଇ ପାରିବ ଯେ ଈଶ୍ୱର ପ୍ରତୀତି ବ୍ୟକ୍ତିର ଏକ ସହଜାତ ବିଶ୍ୱାସ ନୁହେଁ । ବରଂ ସାମାଜିକ ଓ ସାଂସ୍କୃତିକ ଚେତନାର ପ୍ରଭାବ ବ୍ୟକ୍ତିର ଜୀବନାଦର୍ଶକୁ ଯେପରି ପ୍ରଭାବିତ କରିଥାଏ ସେହି ପ୍ରଭାବ ଭିତରୁ ଧାର୍ମିକ ଜୀବନରେ ପରିବ୍ୟାପ୍ତ ଥିବା ଈଶ୍ୱର ଧାରଣା ବ୍ୟକ୍ତିର ମାନସିକତାକୁ ପ୍ରସାରିତ ହୋଇ ଆସିଥାଏ । ଜଣେ ସାଧାରଣ ବ୍ୟକ୍ତି ତା'ର ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ ପରିବେଶରୁ ଯେଉଁ ଈଶ୍ୱର ପ୍ରତୀତି ପାଏ ତାହାକୁ ହିଁ ନିର୍ଦ୍ୱନ୍ଦରେ ଗ୍ରହଣ କରି ନେଇଥାଏ । ହୁଏତ ଜଣେ ଜଣେ ବ୍ୟକ୍ତି ଏ କ୍ଷେତ୍ରରେ ଗଭୀର ଅନୁଶୀଳନ କରି ନିଜସ୍ୱ ସିଦ୍ଧାନ୍ତକୁ ଆସିଥାନ୍ତି, କିନ୍ତୁ ସମାଜର ସାଧାରଣ ଧାରାରେ ବିଚାର ଦୃଷ୍ଟିରୁ ଜଣେ ଅପରିପକ୍ୱ ବ୍ୟକ୍ତି ସମାଜର ପ୍ରଚଳିତ ବିଶ୍ୱାସକୁ ଗ୍ରହଣ କରି ତାହାକୁ ନିଜର ଆବେଗ ଓ ଜୀବନଧାରାରେ ମିଶାଇ ଦେଇଥାଏ ।

ଈଶ୍ୱର ବିଶ୍ୱାସର ଉତ୍ପତ୍ତି ନେଇ ସମାଜ ବିଜ୍ଞାନ କ୍ଷେତ୍ରରେ ଭିନ୍ନ ଭିନ୍ନ ମତର ଅବତାରଣା ଦେଖିବାକୁ ମିଳେ । କେତେକ ମନସ୍ତାତ୍ତ୍ୱିକ କାରଣ ବଶତଃ ମଣିଷ ଏକ ଅତିପ୍ରାକୃତିକ ଚେତନ ସତ୍ତାର ପ୍ରକଳ୍ପ ସୃଷ୍ଟି କରି ସେହି ବିଶ୍ୱାସକୁ ସାମୂହିକ ଜୀବନ ପ୍ରବାହ ସହିତ ସଂଶ୍ଳିଷ୍ଟ କରିବାର ଧାରଣା ଅମୂଳକ ନୁହେଁ । ସମାଜରୁ ଅନ୍ୟାୟ ଓ ଅନୀତିକୁ ଦୂର କରିବା ପାଇଁ ତଥା ଦୁଃଖ ଓ ଦୁର୍ବିପାକରୁ ରକ୍ଷା କରିବା ପାଇଁ ଅଲୌକିକ ଶକ୍ତିର ଆବାହନ

କରାଯାଇଛି । ସେହିପରି ସମାଜରେ ନୈତିକ ସନ୍ତୁଳନ ରକ୍ଷା କରିବାକୁ ଗୋଟିଏ ସୋପାନରେ ମଣିଷ ଈଶ୍ୱରଙ୍କୁ କଳ୍ପନା କରିଛି । ସାମାଜିକ ଜୀବନକୁ ସୁସଂହତ ଓ ଶୃଙ୍ଖଳିତ କରିବା ପାଇଁ ଈଶ୍ୱର ଓ ଧର୍ମର ଆବଶ୍ୟକତା ହୋଇଛି । ଦାର୍ଶନିକ ବା ବୈଜ୍ଞାନିକ କ୍ରିୟାଶୀଳତା ପୂର୍ବରୁ ପ୍ରକୃତିର ରହସ୍ୟ ଓ ଜୀବନର ଘନଘଟାକୁ ବୁଝିବା ପାଇଁ ମଣିଷ ଈଶ୍ୱରଙ୍କୁ ସୃଷ୍ଟି କରିଛି । ମଣିଷ ମନର ବହୁ କୌତୂହଳ ପ୍ରଶ୍ନର ମୀମାଂସା କରିବାକୁ ଈଶ୍ୱର ସୃଷ୍ଟି ହୋଇଛନ୍ତି । ବ୍ୟକ୍ତି ବା ଗୋଷ୍ଠୀ ଜୀବନର ନିରାପତ୍ତା ପାଇଁ ଦୁର୍ବଳ ମୁହୂର୍ତ୍ତରେ ମାନସିକ ଶକ୍ତି ଓ ସାମର୍ଥ୍ୟ ପାଇଁ ଈଶ୍ୱର ଦରକାର ପଡ଼ିଛନ୍ତି । ଏହିପରି ଅନେକ କିଛି କାରଣ ବାହାର କରାଯାଇପାରେ । ଭୟ ବା ଅଜ୍ଞତା ଯୋଗୁଁ ହେଉ କିମ୍ବା ସାମାଜିକ ସ୍ଥିରତା ଓ ନୈତିକ ଶୃଙ୍ଖଳା ପ୍ରତିଷ୍ଠା ପାଇଁ ହେଉ ଈଶ୍ୱର ଧାରଣା ମଣିଷର ମାନସିକତାକୁ ପ୍ରଭାବିତ କରିଛି । ସଭ୍ୟତାର ବିକାଶ ଧାରାରେ ଧର୍ମ, ଦର୍ଶନ ଓ ନୀତିବୋଧ ଭାବନା ସହିତ ଈଶ୍ୱର ସଂଶ୍ଳିଷ୍ଟ ହୋଇ ରହିଛନ୍ତି । ଏପରିକି ସମାଜର ଆଙ୍ଗିକ ଓ ଆତ୍ମିକ ସ୍ତରରେ ଈଶ୍ୱର ଭାବନା ନିବିଡ଼ ହୋଇଯାଇଛି । ସଭ୍ୟତାର ବିକାଶ ସହିତ ଅନ୍ୟାନ୍ୟ ଭାବନା ପରି ଈଶ୍ୱରଭାବନାର କ୍ରମ ବିବର୍ତ୍ତନ ହୋଇଛି । ଧର୍ମ ଓ ସଭ୍ୟତା ମାନଙ୍କର ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ଈଶ୍ୱର ପ୍ରତୀତିର ଅଭ୍ୟୁଦୟକୁ ନିରୂପଣ କରିବା ଅସମ୍ଭବ ନୁହେଁ ।

ତର୍କ, ବିଚାରଶୀଳତା ଓ ଅନୁଭୂତିକୁ ଆଧାର କରି କେତେକ ବ୍ୟକ୍ତି ଜଗତ ଓ ଜୀବନକୁ ବୁଝିବାକୁ ପ୍ରୟାସ କରିଛନ୍ତି । ବିଶ୍ୱାସର ଊର୍ଦ୍ଧ୍ୱକୁ ଯାଇ ସବୁ ବିଷୟରେ ହେତୁର ସନ୍ଧାନ କରିବାକୁ ଉଦ୍ୟମ କରିଛନ୍ତି । ଏହି ପ୍ରୟାସ ଭିତରେ/ଅଲୌକିକ ଶକ୍ତି ଓ ଈଶ୍ୱର ସମ୍ବନ୍ଧରେ ସନ୍ଦିହାନ ହୋଇଛନ୍ତି । କେତେକ ଚିନ୍ତାଶୀଳ ଦାର୍ଶନିକ ସମାଜର ପ୍ରଚଳିତ ବିଶ୍ୱାସ, ଧର୍ମୀୟ ଆବେଗ, ପାରଲୌକିକ ଆକାଙ୍କ୍ଷା ଇତ୍ୟାଦି ସଂପର୍କରେ ନିଜ ନିଜର ଅନୁଭୂତି ଓ ଯୁକ୍ତି ମାଧ୍ୟମରେ ସନ୍ଦେହ ପୋଷଣ କରିଛନ୍ତି । ଅନୁଭୂତି ଓ ତର୍କ ମାଧ୍ୟମରେ ସେମାନେ ଜଗତର ଅବଧାରଣା କ୍ଷେତ୍ରରେ ଈଶ୍ୱରବିହୀନ ବୌଦ୍ଧିକ ମାନଦଣ୍ଡ ଦେଇଛନ୍ତି । ମୋଟ ଉପରେ ଦାର୍ଶନିକ କ୍ରିୟାଶୀଳତା ଯୋଗୁଁ ଜଗତ ଓ ଜୀବନର ଅବବୋଧ ଭିତରେ ଦୁଇଟି ଭାବଧାରା ସମାନ୍ତରାଳ ଭାବରେ ଗତି କରି ଆସିଛନ୍ତି । ଆସ୍ତିକତାବାଦ ଓ ନିରୀଶ୍ୱରବାଦ ବିରୋଧାତ୍ମକ ଭାବରେ ଜଗତ ଓ ଜୀବନକୁ ବୁଝିବାପାଇଁ ଦୁଇଟି ପୃଥକ ମାନଦଣ୍ଡ ଦେଇଛନ୍ତି । ସାମାଜିକ ବିକାଶ ପ୍ରକ୍ରିୟାରେ ଆସ୍ତିକତାବାଦର କ୍ରମ ବିବର୍ତ୍ତନ ହୋଇଛି । ଜଡ଼ ବସ୍ତୁର ଉଦଣ୍ଡ ପୂଜାଠାରୁ ଆରମ୍ଭ କରି ବହୁ ଦେବାଦେବୀ ବା ପ୍ରାକୃତିକ ଆରାଧନା ମଧ୍ୟ ଦେଇ ଶେଷରେ ଏକେଶ୍ୱରବାଦ ଆସିଛି । ଦୃଷ୍ଟିର ଅନ୍ତରାଳରେ ରହି ସବୁକିଛିକୁ ନିୟନ୍ତ୍ରଣ କରିବାର ଶକ୍ତି ରଖିଥିବା ଏକ ଅତିପ୍ରାକୃତିକ ସତ୍ତାର ବିଶ୍ୱାସ ପର୍ଯ୍ୟାୟକ୍ରମେ ବହୁ ଈଶ୍ୱରବାଦ, ଏକ-ଏକାଧି-ଈଶ୍ୱରବାଦ, ଏକେଶ୍ୱରବାଦ, ସଗୁଣ ଈଶ୍ୱରବାଦ, ନିର୍ଗୁଣ ବ୍ରହ୍ମବାଦ ପରି ଅମୂର୍ତ୍ତ ଭାବନାକୁ ସୃଷ୍ଟି କରିଛି । ଈଶ୍ୱରଙ୍କୁ ସର୍ବଜ୍ଞ,

ସର୍ବଶକ୍ତିମାନ, ସର୍ବବିଦ୍ୟମାନ, ପ୍ରେମମୟ ଓ ଏକ କରୁଣାମୟ ବ୍ୟକ୍ତି ଭାବରେ ପରିକଳ୍ପନା ଯୋଗୁଁ ଭକ୍ତି, ଅର୍ଘ୍ୟ, ସମର୍ପଣ, ପୂଜା ଇତ୍ୟାଦି ମାଧ୍ୟମରେ ତାଙ୍କୁ ସନ୍ତୁଷ୍ଟ କରିବାକୁ ମଣିଷ ପ୍ରୟାସ କରିଛି । ସେହିପରି ଈଶ୍ୱରଙ୍କୁ କେତେକ ଏକ ଅମୂର୍ତ୍ତ ପରିକଳ୍ପନା ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ଭାବବାଦ ନେତି ନେତି କହି ନିର୍ଗୁଣ ବ୍ରହ୍ମର ଅମୂର୍ତ୍ତ ଭାବନା ସୃଷ୍ଟି କରିଛି । କିଛି ତାତ୍ତ୍ୱିକ ଯୁକ୍ତି ମାଧ୍ୟମରେ ନିର୍ଗୁଣ ବ୍ରହ୍ମ ଭାବନା ଦର୍ଶନର ପୃଷ୍ଠା ମଣ୍ଡନ କରିଛି ।

ଆସ୍ତିକତାବାଦର ଆଧାରଟି ଭିତରେ ଜଗତ ସହିତ ଈଶ୍ୱରଙ୍କ ସମ୍ବନ୍ଧ ନେଇ ନାନା ଭାବନା ମଧ୍ୟ ସୃଷ୍ଟି ହୋଇଛି । ସୃଷ୍ଟିସ୍ୱାତନ୍ତ୍ର୍ୟ ଈଶ୍ୱରବାଦ (deism) ଅନୁଯାୟୀ ଈଶ୍ୱର ଏ ବିଶ୍ୱକୁ ସୃଷ୍ଟି କରିବା ପରେ ଏହାଠାରୁ ସମ୍ପର୍କ ଛିନ୍ନ କରିଛନ୍ତି । ସୃଷ୍ଟି ଏପରି ଅସୀମ ପ୍ରଜ୍ଞା ଓ ଅଭିନବ କୌଶଳରେ ନିର୍ମିତ ହୋଇଛି ଯେ ଈଶ୍ୱରଙ୍କର ଏଥିରେ ହସ୍ତକ୍ଷେପ କରିବାର କୌଣସି ଆବଶ୍ୟକତା ନାହିଁ । ସର୍ବେଶ୍ୱରବାଦ (pantheism) ଅନୁଯାୟୀ ସବୁ କିଛି ଈଶ୍ୱରମୟ । ପ୍ରତ୍ୟେକଟି ବସ୍ତୁ, ବ୍ୟକ୍ତି ବା ସତ୍ତା ମଧ୍ୟ ଦେଇ ଈଶ୍ୱରସତ୍ତାର ପ୍ରତିଫଳନ ହୋଇଛି । ସବୁରି ଘଟରେ ଈଶ୍ୱରଙ୍କର ଉପସ୍ଥିତି । ଆନ୍ତରାତୀତ ଈଶ୍ୱରବାଦ (panentheism) ଅନୁଯାୟୀ ଈଶ୍ୱର ଜଗତରେ ବ୍ୟକ୍ତ ଏବଂ ଅନୁଭୂତିର ଅତୀତ । ଏହି ମତରେ ଈଶ୍ୱର ଜଗତର ଅନ୍ତର୍ବର୍ତ୍ତୀ ଓ ବହିର୍ବର୍ତ୍ତୀ ଉଭୟ । ଅପ୍ରପଞ୍ଚବାଦ (acosmism) ଅନୁଯାୟୀ ଜଗତ ଅଳୀକ ବା ଏକ ଭ୍ରମ । ଏହାର ଅସ୍ତିତ୍ୱ ଏକ ଭ୍ରମର ପରିଣାମ । କେବଳ ବ୍ରହ୍ମ ହିଁ ପରମ ସତ୍ତା ଓ ସତ୍ୟ । ଜଗତ ବ୍ରହ୍ମ ଉପରେ ଆରୋପିତ ।

ନିରୀଶ୍ୱରବାଦର ଆଧାର ଭିତରେ ସଂଶୟବାଦ, ଅଜ୍ଞେୟବାଦ, ହେତୁବାଦ, ପ୍ରକୃତିବାଦ ଇତ୍ୟାଦି ବିଚାରଗୁଡ଼ିକ ଜଗତ ଓ ଜୀବନ ସମ୍ବନ୍ଧରେ ଏକ ପୃଥକ ଚିତ୍ର ପ୍ରଦାନ କରିଛନ୍ତି । ପ୍ରକୃତିର ପ୍ରତ୍ୟେକଟି ବସ୍ତୁ ବା ଘଟଣାକୁ ଏକ ବସ୍ତୁନିଷ୍ଠ ଆଧାର ମାଧ୍ୟମରେ ବିଶ୍ଳେଷଣ କରିହେବ ଓ ଏ କ୍ଷେତ୍ରରେ କୌଣସି ଈଶ୍ୱର ବା ଅତିପ୍ରାକୃତିକ ସତ୍ତାର କଳ୍ପନା କରିବାର ଆବଶ୍ୟକତା ହିଁ ନାହିଁ । ଏହି ସୈଦ୍ଧାନ୍ତିକ ଦୃଷ୍ଟିକୋଣଟି ଭିତରେ ଈଶ୍ୱର ଏକ ପ୍ରତ୍ୟୟ ବା ଭାବନା କିନ୍ତୁ ତାହା ସ୍ଥିତିଥିବା ଏକ ଚେତନ ସତ୍ତା ବା ଶକ୍ତି ନୁହେଁ । ସ୍ଥିତି ଥିବା ସେପରି କୌଣସି ସର୍ବଜ୍ଞ ଚେତନ ସତ୍ତା ବା ଶକ୍ତିର ସନ୍ଧାନ ମଣିଷ ବୋଧର ପରିସରକୁ ଏପର୍ଯ୍ୟନ୍ତ ଆସିପାରି ନାହିଁ ବୋଲି ନିରୀଶ୍ୱରବାଦର ଭାବନା ମଧ୍ୟରେ ବ୍ୟକ୍ତ କରାଯାଇଛି । ବସ୍ତୁତଃ ଆସ୍ତିକତାବାଦ ଓ ନିରୀଶ୍ୱରବାଦ ବୌଦ୍ଧିକ ଚିନ୍ତନ ସ୍ତରରେ ଦୁଇଟି ପୃଥକ ସିଦ୍ଧାନ୍ତ ଉପସ୍ଥାପନ କରିଛନ୍ତି ।

ଈଶ୍ୱର ଭାବନା ଏକ ବିଶ୍ୱାସ ଓ ଏକ ପ୍ରକଳ୍ପ ହେଲେ ମଧ୍ୟ ଈଶ୍ୱର ସତ୍ତାର ପ୍ରମାଣ ପାଇଁ ଅତୀତରେ ଧର୍ମ ଓ ଦର୍ଶନ ଇତିହାସରେ ପ୍ରୟାସ ହୋଇଛି । ତର୍କଶୀଳ ଯୁକ୍ତିର ଆଶ୍ରୟ ନେଇ ଈଶ୍ୱରଙ୍କ ଅସ୍ତିତ୍ୱର ପ୍ରମାଣ କରିହେବ ବୋଲି ଧର୍ମଦର୍ଶନରେ ଯୁକ୍ତି-ପରଖ ବ୍ରହ୍ମବିଦ୍ୟା (Rational theology) ଉଦ୍ଭବ ହୋଇଛି । ଯୁକ୍ତି ପରଖ ବ୍ରହ୍ମବିଦ୍ୟା କ୍ଷେତ୍ରରେ ତାତ୍ତ୍ୱିକ

ସତ୍ତା, ଜଗତକାରଣ, ଉଦ୍ଦେଶ୍ୟବାଦ ବା ନୈତିକ ଯୁକ୍ତିଗୁଡ଼ିକ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ସହକାରେ ନାନା ଭାବରେ ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରମାଣ କରିବାକୁ ପ୍ରୟାସ କରିଛନ୍ତି । ଈଶ୍ୱର ପ୍ରତ୍ୟୟରେ ଈଶ୍ୱର ସତ୍ତାର ସ୍ଥିତି ଅନ୍ତର୍ନିହିତ ବୋଲି ତାତ୍ତ୍ୱିକ ସତ୍ତା ଯୁକ୍ତିରେ (ontological argument) କୁହାଯାଇଛି । ଈଶ୍ୱରଙ୍କ ସଂଜ୍ଞା ପୂର୍ଣ୍ଣତମ ସତ୍ତା ବୋଲି ନିଆ ଯାଇଥାଏ । ପୂର୍ଣ୍ଣତମ ସତ୍ତାର ଅସ୍ତିତ୍ୱ ନ ରହିଲେ ତାହା ପୂର୍ଣ୍ଣତମ ହୋଇପାରିବ ନାହିଁ କାରଣ ଅସ୍ତିତ୍ୱର ଅଭାବ ଏହାକୁ ଅପୂର୍ଣ୍ଣ କରି ରଖିବ । ଈଶ୍ୱର ପ୍ରତ୍ୟୟର ସଂଜ୍ଞାରୁ ଈଶ୍ୱରଙ୍କର ଅସ୍ତିତ୍ୱ ନିଃସୃତ ହେବା ସମ୍ଭବ ବୋଲି ଏହି ଯୁକ୍ତିରେ କୁହାଯାଏ । ଜଗତକାରଣ ପ୍ରମାଣ (cosmological argument) ଯୁକ୍ତିରେ ଏହା କୁହାଯାଇଛି ଯେ ଈଶ୍ୱର ହେଉଛନ୍ତି ଆଦିକାରଣ, ଆଦିମୂଳ ଓ ଆଦିଗତି । ପ୍ରତ୍ୟେକ ବସ୍ତୁର ଯଦି କାରଣ ଅଛି, ତେବେ ସାରା ବିଶ୍ୱର କାରଣ କ'ଣ ହୋଇପାରେ ? ଜଗତରେ ଗତି ରହିଛି, କିନ୍ତୁ ଏହି ଗତି କେଉଁଠୁ ଆସିଲା ? ଜଡ଼ ବସ୍ତୁର ନିଜସ୍ୱ ଗତିଶୀଳତା ନାହିଁ । ତେଣୁ ଈଶ୍ୱରଙ୍କୁ ଆଦିମୂଳ ଓ ଆଦିଗତି ଭାବରେ ନ ନେଲେ ଜଗତ ଓ ଗତିକୁ ବୁଝାଇ ହେବ ନାହିଁ । ସେହିପରି ଉଦ୍ଦେଶ୍ୟ ସଂସ୍ଥାପକ (Teleological argument) ପ୍ରମାଣ ଅନୁଯାୟୀ ପ୍ରକୃତିର ପ୍ରତ୍ୟେକ କ୍ଷେତ୍ରରେ ପରିଲକ୍ଷିତ ହେଉଥିବା ବୈଚିତ୍ର୍ୟ, ଏକରୂପତା, ଶୃଙ୍ଖଳା ଓ ନିୟମକୁ ବୁଝାଇବାକୁ ହେଲେ ଜଣେ ବିଶ୍ୱନିୟନ୍ତାକୁ ଗ୍ରହଣ କରିବାକୁ ହେବ । ଈଶ୍ୱରଙ୍କ ଦ୍ୱାରା ପ୍ରକୃତିକୁ ସୁବ୍ୟବସ୍ଥିତ ଓ ଶୃଙ୍ଖଳିତ କରାଯାଇଛି ଯଦ୍ୱାରା ପ୍ରକୃତି ଭିତରେ ବ୍ୟତିକ୍ରମବିହୀନ ଏକରୂପତା ଦେଖାଯାଉଛି । ଏହିପରି ଯୁକ୍ତି ଗୁଡ଼ିକଦ୍ୱାରା ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରମାଣ କରିବା ପାଇଁ ପ୍ରୟାସ ହୋଇଛି । କିନ୍ତୁ ଦାର୍ଶନିକ କ୍ରିୟାଶୀଳତା ଯେତିକି ବୃଦ୍ଧି ପାଇଛି ଏହିସବୁ ଯୁକ୍ତିଗୁଡ଼ିକୁ ବିଶ୍ଳେଷଣ କରାଯାଇ ସେଗୁଡ଼ିକର ଅନ୍ତର୍ନିହିତ ଦୁର୍ବଳତାକୁ ସ୍ପଷ୍ଟ କରାଯାଇଛି । କୌଣସି ପ୍ରତ୍ୟୟର ସଂଜ୍ଞାରୁ ଅବସ୍ଥିତିକୁ ନିଃସୃତ କରାଇବା ତର୍କ ଦୃଷ୍ଟିରୁ କିପରି ଅବୈଧ ତାହା ନାନା ଢଙ୍ଗରେ ଦର୍ଶନ ପରିଭାଷାରେ ବ୍ୟକ୍ତ କରାଯାଇଛି । ତାତ୍ତ୍ୱିକ ସତ୍ତା ପ୍ରମାଣ କିପରି ଦୋଷଯୁକ୍ତ ତାହା ଦର୍ଶନ ଇତିହାସରେ ଏକ ପ୍ରତିଷ୍ଠିତ ଭାବନା । ସେହିପରି ଜଗତ କାରଣ ଯୁକ୍ତି ଯେ ଆଧାରହୀନ ଏହା ମଧ୍ୟ ଜଣାପଡ଼ିଛି । କାର୍ଯ୍ୟକାରଣ ଯୁକ୍ତିର ଆଧାର କେବଳ ବସ୍ତୁନିଷ୍ଠ ଘଟଣାର ପରିସରରେ ପ୍ରଯୋଗ ହେଉଥିବା ବେଳେ ସେଥିରେ ଲମ୍ଫ ପ୍ରଦାନ କରି ଆଦିମୂଳ ବା ଆଦିଗତିକୁ ଚିନ୍ତା କରିବା ଓ ତାହାକୁ ଏକ ଚେତନ ସତ୍ତା ବୋଲି ଗ୍ରହଣ କରିବା ଅଯୌକ୍ତିକ ଓ ଅବୈଧ ବୋଲି ଦର୍ଶାଯାଇଛି । ପୁନଶ୍ଚ ଉଦ୍ଦେଶ୍ୟ ସଂସ୍ଥାପକ ଯୁକ୍ତି ମଧ୍ୟ କିପରି ଅସାର ଓ ତ୍ରୁଟିପୂର୍ଣ୍ଣ ଦର୍ଶନ ଇତିହାସରେ ତା'ର ବିସ୍ତୃତ ଆଲୋଚନା ହୋଇଛି । ପ୍ରାକୃତିକ ଏକରୂପତାରୁ ଏକ ନିୟନ୍ତା ବା ନିୟାମକର ପରିକଳ୍ପନା ଆଧାରହୀନ ବୋଲି ଦର୍ଶାଯାଇଛି । ମୋଟ ଉପରେ ତର୍କ ପରଖ ବ୍ରହ୍ମବିଦ୍ୟାର ମୂଳଭିତ୍ତିକୁ ଦର୍ଶନ ଅବୈଧ ଓ ତର୍କ ଦୃଷ୍ଟିରୁ ଅଯୌକ୍ତିକ ବୋଲି ଦର୍ଶାଇବାଦ୍ୱାରା ଈଶ୍ୱରଙ୍କର

ଅସ୍ତିତ୍ୱକୁ ଯୁକ୍ତି ଦୃଷ୍ଟିରୁ ପ୍ରମାଣ କରିବାର ଭାବନା ମଉଳି ଯାଇଛି । ଏହା ପରେ ଈଶ୍ୱର ଭାବନା ବିଶ୍ୱାସର ପରିସର ମଧ୍ୟରେ ସଂପୃକ୍ତ ରହିଲା ଓ ଅନ୍ୟାନ୍ୟ ବିଶ୍ୱାସ ପରି ଏହାର ପ୍ରାସଙ୍ଗିକତା ନେଇ ବିଚାର ବିମର୍ଷ ହେଲା ।

ଈଶ୍ୱରଙ୍କର ଅସ୍ତିତ୍ୱ ସଂପର୍କରେ ଯୁକ୍ତିଗୁଡ଼ିକର ଦୁର୍ବଳତା ଓ ଅବୈଧତା ପ୍ରତିଷ୍ଠା ପରେ ଈଶ୍ୱର ଯେ କେବଳ ଅନୁଭବ ଜନ୍ୟ ଏହା କୁହାଗଲା । ଧର୍ମୀୟ ଭାବନା ପରିସରରେ କେତେକ ଅନୁଭୂତି, ଆବେଗ, ସମ୍ମୋହନ, ସମର୍ପଣ, ଭକ୍ତିଭାବ ମଧ୍ୟ ଦେଇ ଈଶ୍ୱର ଅବଧାରଣାକୁ ବ୍ୟକ୍ତ କରାଗଲା । ଧର୍ମଗୁଡ଼ିକରେ ଈଶ୍ୱରଙ୍କ ବିଭୂତି ଓ ଅଲୌକିକ କ୍ରିୟାନେଇ ନାନା କୌତୂହଳପୂର୍ଣ୍ଣ କାହାଣୀ ଦେଖିବାକୁ ମିଳେ । ଅବଶ୍ୟ କେତେକ ଧର୍ମରେ ଈଶ୍ୱରଙ୍କୁ ସେପରି କୌଣସି ସ୍ଥାନ ଦିଆଯାଇ ନାହିଁ, କିନ୍ତୁ ଅଧିକାଂଶ ଧର୍ମରେ ଈଶ୍ୱରଙ୍କୁ ଅତି ଗୁରୁତ୍ୱପୂର୍ଣ୍ଣ ଦିଆଯାଇଛି । ଈଶ୍ୱରଙ୍କୁ ସର୍ବଜ୍ଞ, ସର୍ବଶକ୍ତିମାନ, ସର୍ବବିଦ୍ୟମାନ, ମହାନ କାରୁଣିକ, ପ୍ରେମମୟ, ଧର୍ମ ସଂସ୍ଥାପକ, ସତ୍ୟପାଳକ ଇତ୍ୟାଦି କେତେ କେତେ ଆବେଗପୂର୍ଣ୍ଣ ଶୈଳୀରେ ବର୍ଣ୍ଣନା କରାଯାଇଛି । କିନ୍ତୁ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ବିଭିନ୍ନ ଧର୍ମମାନଙ୍କର ଈଶ୍ୱର ଭାବନା କିପରି ପରସ୍ପରଠାରୁ ପୃଥକ ତାହା ଜଣାପଡ଼େ । ଗୋଟିଏ ଧର୍ମର ବିଶ୍ୱାସ ଅନୁଯାୟୀ ଈଶ୍ୱରଙ୍କୁ ଅବତାର ନେବାକୁ ହେଉଥିବା ବେଳେ ଅନ୍ୟ ଧର୍ମର ମତାନୁଯାୟୀ ଈଶ୍ୱର କେବେବି ମାନବିକ ସ୍ତରରେ ନିଜକୁ ଅବତାରଣ କରାନ୍ତି ନାହିଁ ବୋଲି ବିଶ୍ୱାସ କରାଯାଏ । କୌଣସି କୌଣସି ଧର୍ମରେ ଈଶ୍ୱରଙ୍କୁ ଏକ ବ୍ୟକ୍ତି ଭାବରେ ଗ୍ରହଣ କରାଯିବା ବେଳେ ଅନ୍ୟ ଧର୍ମରେ ନୈର୍ବକ୍ତିକ ଭାବନା ରହିଥିବା ଦେଖାଯାଏ ।

ବିଭିନ୍ନ ଧର୍ମୀୟ ପରମ୍ପରାରେ ମୁଷ୍ଟିମେୟ ବ୍ୟକ୍ତିଙ୍କର ଅଲୌକିକ ଅନୁଭୂତିର କଥା କୁହାଯାଏ । କେତେକ ବ୍ୟକ୍ତି ନିଜର ଆଧ୍ୟାତ୍ମିକ ଉତ୍କର୍ଷତା ଯୋଗୁଁ କେତେକ ଦିବ୍ୟ ଅନୁଭୂତି ଲାଭ କରିବା କଥା ବିଶ୍ୱାସ କରାଯାଏ । ସେହି ଅନୁଭୂତିର ଆଧାର ଉପରେ ଈଶ୍ୱର ବିଶ୍ୱାସ ସମାଜରେ ବ୍ୟାପକ ହୋଇଥାଏ ଓ ସେହି ଅନୁଭୂତି ଲାଭ କରିଥିବା ବ୍ୟକ୍ତିମାନଙ୍କୁ ଦିବ୍ୟ ପୁରୁଷ ବା ପବିତ୍ର ଆତ୍ମା ଭାବରେ ଚିତ୍ରଣ କରାଯାଏ । କୌଣସି ବ୍ୟକ୍ତିଙ୍କର ସ୍ୱକୀୟ ଅନୁଭୂତିକୁ ଅସ୍ୱୀକାର କରାଯିବା ସମ୍ଭବ ନୁହେଁ, କାରଣ ଜଣଙ୍କର ଅନୁଭୂତିକୁ ଅନ୍ୟ ଜଣେ ଅନୁଭବ କରିପାରିବ ନାହିଁ । କିନ୍ତୁ ପ୍ରଶ୍ନ ହେଉଛି : ବ୍ୟକ୍ତିନିଷ୍ଠ ଅନୁଭୂତି ଓ ଆବେଗକୁ ମାନଦଣ୍ଡ ଭାବରେ ନେଇ ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରତିଷ୍ଠା କରାଯାଇ ପାରିବ କି ? ଭିନ୍ନ ଭିନ୍ନ ବ୍ୟକ୍ତିଙ୍କର ବ୍ୟକ୍ତିନିଷ୍ଠ ଅନୁଭୂତି କ୍ଷେତ୍ରରେ ଭିନ୍ନତା ରହିଥାଏ । ଆଧୁନିକ ମନୋବିଜ୍ଞାନ ମତରେ ମଣିଷର ମନ ଯେପରି ଭାବନା ଭିତରେ ସମ୍ବନ୍ଧ ହୋଇଥାଏ, ବ୍ୟକ୍ତିର ଅନୁଭୂତି ସେହି ପ୍ରକାରର ହୋଇଥାଏ । ସମ୍ମୋହନ ଜନିତ ମନସ୍ତାତ୍ତ୍ୱିକ ଆବେଗରୁ ଆତ୍ମନିଷ୍ଠ ଅନୁଭୂତି ମଧ୍ୟ ସମ୍ଭବ ହୋଇଥାଏ । ବ୍ୟକ୍ତିନିଷ୍ଠ ଅନୁଭୂତି ପଶ୍ଚାତରେ ନାନାବିଧ କାରଣ ରହିପାରେ । ସୁତରାଂ ବ୍ୟକ୍ତିନିଷ୍ଠ ଅନୁଭୂତିର ସତ୍ୟତାକୁ ଗ୍ରହଣ କରାଗଲେ ମଧ୍ୟ ତାହା

ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବା କ୍ଷେତ୍ରରେ ଏକ ମାନଦଣ୍ଡ ହୋଇପାରିବ ନାହିଁ ।

ବହୁ ସମୟରେ ନୈତିକତା ପରିପ୍ରେକ୍ଷୀରେ ଈଶ୍ୱର ପ୍ରତୀତି ଆବଶ୍ୟକ ମନେହୁଏ । ଏକ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ଈଶ୍ୱର ବିଶ୍ୱାସରୁ ଆସିଥାଏ ଓ ଈଶ୍ୱର ବିଶ୍ୱାସୀ ଲୋକମାନେ ନୈତିକ ଜୀବନ ପାଇଁ ନିଜ ବିଶ୍ୱାସରୁ ଅଭିନିବେଶ ପାଇଥାନ୍ତି । ସାମାଜିକ ଜୀବନ ପୃଷ୍ଠଭୂମିରେ ନୈତିକ ଆଚରଣ ଅବଶ୍ୟମ୍ଭାବୀ ମନେହୁଏ କାରଣ ଅନୈତିକତା ସାମାଜିକ ସମ୍ବନ୍ଧକୁ କ୍ଷୟଶୀଳ କରାଇଥାଏ । ସୁତରାଂ ସମାଜର ନୈତିକ ପ୍ରଗତି ପାଇଁ ଈଶ୍ୱର ରହିବା ଆବଶ୍ୟକ ବୋଲି ଯୁକ୍ତି କରାଯାଏ । ଏପରିକି ସମୟରେ ଈଶ୍ୱର ଓ ନୈତିକତାକୁ ଅଭିନ୍ନ ଭାବରେ ନିଆଯାଏ । ଦୁଇଟି ପ୍ରତ୍ୟୟକୁ ଅଭିନ୍ନ ବୋଲି ନେଇ ଗୋଟିକର ଆଧାର ଉପରେ ଅନ୍ୟଟିକୁ ପ୍ରତିଷ୍ଠା କରିବା ସଙ୍ଗତ ମନେହୁଏ ନାହିଁ । ଈଶ୍ୱର ଓ ନୈତିକତାକୁ ଦୁଇଟି ଭିନ୍ନ ପ୍ରତ୍ୟୟ ଭାବରେ ନେବାଦ୍ୱାରା ସେମାନଙ୍କ ମଧ୍ୟର ସମ୍ବନ୍ଧ ଆଲୋଚନା ପରିସରକୁ ଆସିଥାଏ । ଏକ୍ଷେତ୍ରରେ ବିଷୟଟିର ବ୍ୟାପକତା ଦୃଷ୍ଟିରୁ ଗୋଟିଏ ସୀମିତ ଅଥଚ ଅତି ପ୍ରଚଳିତ ପ୍ରଶ୍ନ ଉପରେ ଆଲୋଚନା କରାଯାଉ ।

ନୈତିକ ଜୀବନ ପାଇଁ ବ୍ୟକ୍ତିକୁ ଈଶ୍ୱର ବିଶ୍ୱାସରୁ ଅଭିନିବେଶ ମିଳେ ନାହିଁ କି ? ଅନେକ ସମୟରେ ଯୁକ୍ତି କରାଯାଏ ଯେ ପ୍ରତ୍ୟେକଟି ନୈତିକ କାର୍ଯ୍ୟ ପଶ୍ଚାତରେ ଈଶ୍ୱରୀୟ ବିଶ୍ୱାସ ରହିଥାଏ ଓ ଈଶ୍ୱର ବିଶ୍ୱାସ ହିଁ ଏକ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ଦେଇଥାଏ । ପ୍ରତ୍ୟେକଟି ନୈତିକ କାର୍ଯ୍ୟ ପଶ୍ଚାତରେ ଈଶ୍ୱର ବିଶ୍ୱାସ ରହିବା ବସ୍ତୁନିଷ୍ଠ ଭାବରେ ସତ୍ୟ ନୁହେଁ । ବହୁ ନିରୀଶ୍ୱରବାଦୀଙ୍କର ଜୀବନଚର୍ଯ୍ୟା ଓ ମହତ୍ତର ଜୀବନ ଯାପନ ପୃଷ୍ଠଭୂମିରେ ଏହା ଦେଖିବାକୁ ମିଳେ ଯେ ସେମାନଙ୍କର ଅନେକ ଆଚରଣ ମହତ୍ୱପୂର୍ଣ୍ଣ ମନେହେଲେ ବି ସେମାନଙ୍କର ସେହି କାର୍ଯ୍ୟ ପଶ୍ଚାତରେ ଈଶ୍ୱର ବିଶ୍ୱାସ ନଥାଏ । ପରନ୍ତୁ ଏପରି ମଧ୍ୟ ସମ୍ଭବ ଯେ ଈଶ୍ୱରଙ୍କ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରି କେହି କେହି ଅତି ଅନୈତିକ ଓ ଗର୍ହିତ କାର୍ଯ୍ୟ ମଧ୍ୟ କରିଥାନ୍ତି । ନିଜ ଧର୍ମର ଈଶ୍ୱର ବିଶ୍ୱାସ ଦ୍ୱାରା ପ୍ରଭାବିତ ହୋଇ ଜଣେ ଅନ୍ୟ ଧର୍ମର ପୂଜାସ୍ଥଳକୁ ଧ୍ୱଂସ କରିପାରେ, ନିଜ ଦେବତାକୁ ସନ୍ତୁଷ୍ଟ କରିବାର ମାନସିକତାରୁ ଅନ୍ୟକୁ ବଧ କରିବା ପାଇଁ ବେଳକେ ପ୍ରସ୍ତୁତ ହୁଏ ଓ ଏପରିକି ଇତର ଜୀବମାନଙ୍କୁ ବଳି ମଧ୍ୟ ଦେଇଥାଏ । ଗୋଟିଏ ପଟରେ ଈଶ୍ୱର ବିଶ୍ୱାସକୁ ସଚେତନ ଭାବରେ ପ୍ରତ୍ୟାଖ୍ୟାନ କରି ମଧ୍ୟ କେହି କେହି ମହାନ କାର୍ଯ୍ୟ ଓ ମହତ୍ତର ଜୀବନ ବଞ୍ଚିଥିବା ବେଳେ ଅନ୍ୟ କେତେକ ଈଶ୍ୱର ବିଶ୍ୱାସରୁ ପ୍ରେରଣା ପାଇ ଗର୍ହିତ କାର୍ଯ୍ୟରେ ଲିପ୍ତ ହୋଇଥାନ୍ତି । ସୁତରାଂ ପ୍ରତ୍ୟେକଟି ନୈତିକ କାର୍ଯ୍ୟ ପଶ୍ଚାତରେ ଯେ ଈଶ୍ୱର ବିଶ୍ୱାସ ଥାଏ ଏହା ବସ୍ତୁନିଷ୍ଠ ଭାବରେ ସତ୍ୟ ନୁହେଁ । ଦ୍ୱିତୀୟରେ ଈଶ୍ୱର ବିଶ୍ୱାସରୁ ସ୍ଥଳ ବିଶେଷରେ ନୈତିକ ଜୀବନ ପାଇଁ ପ୍ରେରଣା ମିଳିଥାଏ । କିନ୍ତୁ ନୈତିକ ଜୀବନ ପାଇଁ ଅଭିନିବେଶ ଅନ୍ୟାନ୍ତରରୁ ଆସିବା ମଧ୍ୟ ଅସମ୍ଭବ ନୁହେଁ । ଜଣେ ଯଦି ନୈତିକ ଜୀବନର ଅନ୍ତର୍ନିହିତ

ପବିତ୍ରତାକୁ ଶ୍ରେୟ ଭାବରେ ଗ୍ରହଣ କରେ, ନୈତିକ ଜୀବନ ଯାପନ ଦ୍ୱାରା ସାମାଜିକ ଉତ୍କର୍ଷ ସାଧିତ ହୁଏ ଓ ସାମାଜିକ ଉତ୍କର୍ଷ ସାଧନରେ ବ୍ୟକ୍ତିଗତ ଜୀବନ ସୁଖ ଶାନ୍ତିପୂର୍ଣ୍ଣ ହୋଇପାରେ ବୋଲି ଧାରଣା ରଖେ କିମ୍ବା ଅନୈତିକ ଜୀବନ ଯାପନ ଦ୍ୱାରା ସାମାଜିକ ପ୍ରତିଷ୍ଠା ଓ ସମ୍ମାନ ହରାଇବାର ଭୟ ରଖିଥାଏ, ତେବେ ସେ ବହୁ ସମୟରେ ନୈତିକ ଜୀବନ ପାଇଁ ପ୍ରେରଣା ପାଇପାରିବ । ଅର୍ଥାତ୍ ନୈତିକ ଜୀବନ ପାଇଁ ପ୍ରେରଣା ଈଶ୍ୱର ବ୍ୟତୀତ ଅନ୍ୟ ସ୍ତରରୁ ଆସିଥାଏ ଓ ଏ କ୍ଷେତ୍ରରେ ଏହି ଅଭିନିବେଶ ବେଳକେ ନୈତିକ ଜୀବନ ଧାରାର ମହତ୍ତ୍ୱକୁ ପ୍ରତିପାଦନ କରିଥାଏ । ନୈତିକତାର ଯୁକ୍ତି ସମ୍ମତ ଭିତ୍ତି ହିଁ ବ୍ୟକ୍ତି ମାନସିକତାକୁ ପ୍ରଭାବିତ କରି ବ୍ୟକ୍ତି ଭିତରେ ନୈତିକ ଆବେଗ ସୃଷ୍ଟି କରିଥାଏ । ଅପରପକ୍ଷରେ ଈଶ୍ୱର ବିଶ୍ୱାସ ଜନିତ ନୈତିକ ପ୍ରେରଣା ପ୍ରତିକୂଳ ସ୍ଥିତିରେ ନଷ୍ଟ ହୋଇଯିବାର ସମ୍ଭାବନା ଥାଏ । କୌଣସି ବ୍ୟକ୍ତି ଅନାୟାସରେ ଓ ନିଜର ସାମାଜିକ ପ୍ରତିଷ୍ଠାରେ ସାମାନ୍ୟତମ ଆଞ୍ଚ ନ ଆଣି ଯଦି ଦୁର୍ନୀତିପୂର୍ଣ୍ଣ ଉପାୟରେ ଅର୍ଥ ଉପାର୍ଜନ ପାଇଁ ପ୍ରଶ୍ରୟ ପାଏ ତେବେ ଈଶ୍ୱରଙ୍କୁ ବିଶ୍ୱାସ କରି ଓ ଭକ୍ତି ଭାବ ରଖି ମଧ୍ୟ ଦୁର୍ନୀତିରେ ଲିପ୍ତ ହେବାରେ ଅସଙ୍ଗତି ଦେଖେ ନାହିଁ । ସୁତରାଂ ନୈତିକତାର ଆଧାର ଯୁକ୍ତିନିଷ୍ଠ ନ ହୋଇ ଭକ୍ତିନିଷ୍ଠ ହେଲେ ଏହା ବିଫଳ ହେବାର ସମ୍ଭାବନା ଅଧିକ ଥାଏ । ସୁତରାଂ ନୈତିକତା ଓ ଈଶ୍ୱର ବିଶ୍ୱାସ ମଧ୍ୟରେ ମନସ୍ତାତ୍ତ୍ୱିକ ସମ୍ବନ୍ଧ ଥିଲେ ବି ସେମାନେ ପରସ୍ପରଠାରୁ ପୃଥକ ବୋଲି ଗ୍ରହଣ କରିବା ଅଧିକ ସମୀଚୀନ ମନେହୁଏ ।

ଅବଶ୍ୟ ଆସ୍ତିକତାବାଦୀ ବିଶ୍ୱାସର ପରିସର ଭିତରେ ରହି ଜଣେ ଏକ ମହାନ ଜୀବନର ଅଧିକାରୀ ହୋଇପାରନ୍ତି । ତା ସତ୍ତ୍ୱେ ଆସ୍ତିକତାବାଦ ଦୃଷ୍ଟିକୋଣରୁ ଏପରି କେତେକ ଧର୍ମୀୟ ବିଶ୍ୱାସ ଆସିଥାଏ ଯାହା ଯୋଗୁଁ ସମାଜରେ ମତଭେଦ ସୃଷ୍ଟି ହୋଇଥାଏ । ମନେ କରାଯାଉ ଜଣେ ଈଶ୍ୱର ବିଶ୍ୱାସୀ ବ୍ୟକ୍ତି ଈଶ୍ୱରଙ୍କ ଇଚ୍ଛା କେବଳ ଏକ ନିର୍ଦ୍ଦିଷ୍ଟ ଧର୍ମଗ୍ରନ୍ଥରେ ପ୍ରତିଫଳିତ ଓ ସେହି ଗ୍ରନ୍ଥରେ ମଣିଷ ଜୀବନର ଅନ୍ତିମ ପରଣତି ବିଷୟରେ ଯେଉଁ ବର୍ଣ୍ଣନା ରହିଛି ତାକୁ ନିଷ୍ଠାର ସହ ବିଶ୍ୱାସ କରନ୍ତି । ସେପରି କ୍ଷେତ୍ରରେ ବିଭିନ୍ନ ଧର୍ମଗୋଷ୍ଠୀର ଈଶ୍ୱର ବିଶ୍ୱାସ ବା ଉପାସନାକୁ ନେଇ ଲୋକମାନଙ୍କ ଭିତରେ ବିବାଦ ରହିବା ସାଧାରଣ ଘଟଣା ହୋଇଥାଏ । ଏପରିକି ଈଶ୍ୱରଙ୍କୁ ନିଷ୍ଠାର ସହ ବିଶ୍ୱାସ କରୁଥିବା ଲୋକମାନେ ଈଶ୍ୱରଙ୍କର ଜନ୍ମ, ସ୍ୱରୂପ, ଆରାଧନା ପୀଠ, ଅଧିମାନ୍ୟତା ଇତ୍ୟାଦି ପ୍ରସଙ୍ଗକୁ ନେଇ ପରସ୍ପର ମଧ୍ୟରେ ସଂଘର୍ଷ କରିବା ବିରଳ ନୁହେଁ । ଈଶ୍ୱର ବିଶ୍ୱାସ ସହ ସମ୍ବନ୍ଧିତ ଅନେକ ଆନୁଷଙ୍ଗିକ ବିଶ୍ୱାସ କ୍ଷେତ୍ରରେ ସମସ୍ତ ଲୋକମାନଙ୍କ ମଧ୍ୟରେ ସହମତି ପ୍ରତିଷ୍ଠା ହେବା ସହଜ ନୁହେଁ ।

ମହାତ୍ମା ଗାନ୍ଧୀ ଈଶ୍ୱର ବିଶ୍ୱାସୀ ଥିଲେ ଓ ଏକ ମହାନ୍ ଜୀବନର ଅଧିକାରୀ ହୋଇଥିଲେ । ସେହିପରି ମା' ଟେରେସା ଈଶ୍ୱର ବିଶ୍ୱାସୀ ଥାଇ ସେହି ବିଶ୍ୱାସର

ପ୍ରେରଣାରୁ ନିଜ ଜୀବନକୁ ଅବହେଳିତ ମଣିଷର ସେବାରେ ଉତ୍ସର୍ଗ କରିଥିଲେ । ସେମାନେ ମହାନ ଜୀବନର ଅଧିକାରୀ ନିଶ୍ଚୟ; କିନ୍ତୁ ସେଥିପାଇଁ ସେମାନଙ୍କର ''ଈଶ୍ୱର ବିଶ୍ୱାସ'' ଏକ ଆଦର୍ଶ ବିଶ୍ୱାସ ଏହା କୁହାଯାଇ ପାରିବ ନାହିଁ । ସେମାନଙ୍କ କାର୍ଯ୍ୟକଳାପରେ ସେମାନେ ଥିଲେ ମାନବ-ଦରଦୀ, ସେବା ଓ ଅହିଂସାର ପୂଜାରୀ । ସେ ପାଇଁ ସେମାନେ ମଣିଷର୍ଥି ଜାତିର ଆଦର୍ଶ ବା ନମସ୍ୟ, ସେମାନଙ୍କ ବ୍ୟକ୍ତିଗତ ବିଶ୍ୱାସ ପାଇଁ ନୁହେଁ । ନୋବେଲ ପୁରସ୍କାର ପାଇଥିବା ବିଶିଷ୍ଟ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ ଥିଲେ ସଂଶୟବାଦୀ ଓ ନିରୀଶ୍ୱରବାଦୀ, କିନ୍ତୁ ପୃଥିବୀକୁ ଯୁଦ୍ଧ ରହିତ କରି ଏକ ଶାନ୍ତିପୂର୍ଣ୍ଣ ବିଶ୍ୱଗଠନ ପାଇଁ ସେ ଜୀବନକୁ ଉତ୍ସର୍ଗ କରିଥିଲେ । ବିଶିଷ୍ଟ ସମାଜସେବୀ ଗୋରା ଥିଲେ ନାସ୍ତିକବାଦର ଜଣେ ବିଶିଷ୍ଟ ପ୍ରବକ୍ତା । ସାମାଜିକ ବୈଷମ୍ୟକୁ ଦୂର କରି ଏକ ସମତା ଭିତ୍ତିକ ସମାଜ ଗଠନ ପାଇଁ ସେ ଜୀବନବ୍ୟାପୀ ପ୍ରୟାସ କରିଥିଲେ ଓ ବ୍ୟକ୍ତିଗତ ଜୀବନରେ ସତ୍ୟ ଓ ଅହିଂସାକୁ ସର୍ବଶ୍ରେଷ୍ଠ ମହତ୍ତ୍ୱ ଦେଇଥିଲେ । ଗାନ୍ଧୀ ଓ ଗୋରା ହିନ୍ଦୁ ସାମାଜିକ ବ୍ୟବସ୍ଥା ଭିତରେ ଗଢ଼ି ଉଠି ଜଣେ ଈଶ୍ୱର ବିଶ୍ୱାସୀ ହୋଇଥିବା ବେଳେ ଅନ୍ୟ ଜଣେ ନାସ୍ତିକ ଥିଲେ । ସେହିପରି ରସେଲ ଓ ଟେରେସା ଖ୍ରୀଷ୍ଟିଆନ ଧର୍ମୀୟ ପରମ୍ପରା ଭିତରେ ଗଢ଼ି ଉଠି ଜଣେ ଧର୍ମକୁ ପ୍ରତ୍ୟାଖ୍ୟାନ କରିବା ବେଳେ ଅନ୍ୟ ଜଣେ ଧର୍ମୀୟ ଧାରାରେ ଜୀବନକୁ ପରିଚାଳିତ କରିଥିଲେ । କିନ୍ତୁ ସେମାନେ ସମସ୍ତେ ଥିଲେ ମାନବବାଦୀ, ଶାନ୍ତିକାମୀ ଓ ଆଦର୍ଶ ବ୍ୟକ୍ତି । ସୁତରାଂ ଈଶ୍ୱର ବିଶ୍ୱାସ ବା ନାସ୍ତିକତା ବଡ଼ କଥା ନୁହେଁ, ବରଂ ଗୁରୁତ୍ୱପୂର୍ଣ୍ଣ ହେଉଛି ନୈତିକତା ଓ ମାନବିକ ସମ୍ବେଦନଶୀଳତା । ତାହାହିଁ ହେଉଛି ମହାନ ଜୀବନର ମାନଦଣ୍ଡ ।

କେତେକ ବ୍ୟକ୍ତି ''ଈଶ୍ୱର'' ଶବ୍ଦଟିକୁ ଏପରି ଭଲ ପାଆନ୍ତି ଯେ ଈଶ୍ୱରବିହୀନ ଏକ ପରିକଳ୍ପନା ସେମାନଙ୍କ ପାଇଁ ଏକ ଭୟଙ୍କର ଭାବନା ଅଟେ । ଅବଶ୍ୟ ବିଚାରଶୀଳତାର ପ୍ରାଧାନ୍ୟକୁ ଗ୍ରହଣ କରି ମଧ୍ୟ କେହି ଈଶ୍ୱରଙ୍କୁ ବିଶ୍ୱାସ କରିପାରନ୍ତି । ଯେ ପର୍ଯ୍ୟନ୍ତ ଜଣେ ବିଚାରଶୀଳତାର ମହତ୍ତ୍ୱକୁ ମାନବିକ ଶ୍ରେୟ ଭାବରେ ଗ୍ରହଣ କରୁଥିବେ ସେପର୍ଯ୍ୟନ୍ତ ସେ ଈଶ୍ୱର ବିଶ୍ୱାସ ରଖିବା ବା ନ ରଖିବା ସେପରି ମହତ୍ତ୍ୱପୂର୍ଣ୍ଣ ନୁହେଁ । କିନ୍ତୁ ଯେଉଁ ସମୟରେ ଜଣେ ବିଶ୍ୱାସକୁ ପ୍ରାଧାନ୍ୟ ଦେଇ ବିବେକର ପଥରୁଦ୍ଧ କରିଦେବେ, ବିଚାରଶୀଳତା ପରିହାର କରି ବଳର ପ୍ରୟୋଗ କରିବେ, ଆବେଗର ଅନ୍ଧାନୁକରଣ କରି ମୁକ୍ତ ମନ ଓ ସୂକ୍ଷ୍ମ ବିଚାରକୁ ପ୍ରତ୍ୟାଖ୍ୟାନ କରିବେ ସେତେବେଳେ ସେ ଯଦି ଈଶ୍ୱରବିଶ୍ୱାସୀ ହୋଇଥାନ୍ତି ତେବେ ତାଦ୍ୱାରା ସେ ଈଶ୍ୱରଙ୍କୁ ହତ୍ୟା କରୁଛନ୍ତି ବୋଲି କୁହାଯିବ । କାରଣ ଈଶ୍ୱରଙ୍କୁ ପ୍ରତ୍ୟାଖ୍ୟାନ କରାଯାଇପାରେ, କିନ୍ତୁ ଏହି ସବୁ ମହନୀୟ ଭାବନାକୁ ପ୍ରତ୍ୟାଖ୍ୟାନ କଲେ ମଣିଷ ମଣିଷ ସ୍ତରରୁ ତଳକୁ ଖସିଯିବ ।

■■

# ଉଇଟଗେନଷ୍ଟାଇନ : ଏକ ଅସାଧାରଣ ବ୍ୟକ୍ତିତ୍ୱ

ଚିନ୍ତା ରାଜ୍ୟରେ ଜଣେ ଜଣେ ବ୍ୟକ୍ତିଙ୍କର ସ୍ୱକୀୟ ଚିନ୍ତନ ଓ ଅବଦାନ ଫଳରେ ଏକ ନୂଆ ଯୁଗର ଅଭ୍ୟୁତ୍ଥାନ ହୋଇଥାଏ । ମନୁଷ୍ୟ ସମାଜର ସଭ୍ୟତା ଓ ସଂସ୍କୃତିର ବିକାଶ ସାଧନ ପାଇଁ କେତେ ଜଣ ବ୍ୟକ୍ତିଙ୍କର ଜୀବନ ବ୍ୟାପୀ ସାଧନା ଓ ବୌଦ୍ଧିକ ଅବଦାନ ଯେ ଦାୟୀ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁମାନେ ନୂତନ ଭାବନା ଓ ଦିଗର ସନ୍ଧାନ ଦେଇ ଜ୍ଞାନର ସୀମାକୁ ଆଗେଇ ନିଅନ୍ତି ସେହିମାନେ ହିଁ ସଭ୍ୟତାର ପଥ ପ୍ରଦର୍ଶକ ହୁଅନ୍ତି । କାରଣ ସେହିମାନଙ୍କର ବୌଦ୍ଧିକ ଅବଦାନ ଫଳରେ ନୂଆ ଭାବନାର ସୂତ୍ରପାତ ହୋଇଥାଏ । ସେମାନେ ଯେକୌଣସି ଦେଶର, ଧର୍ମର ଓ ଜାତିର ହୁଅନ୍ତୁ ନା କାହିଁକି ସେମାନେ ହୁଅନ୍ତି ଇତିହାସର ଅମର ବ୍ୟକ୍ତିତ୍ୱ । ବିଂଶ ଶତାବ୍ଦୀର ଏହିପରି ଏକ ବିଶିଷ୍ଟ ଦାର୍ଶନିକ ହେଉଛନ୍ତି ଲୁଡଓ୍ୱିଗ ଉଇଟଗେନ୍‌ଷ୍ଟାଇନ ।

ଦାର୍ଶନିକ ଜିଜ୍ଞାସା ଓ ଜ୍ଞାନାନୁଶୀଳନ ଶତାବ୍ଦୀ ଶତାବ୍ଦୀ ଧରି ଚାଲି ଆସିଥିଲେ ମଧ୍ୟ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଦର୍ଶନ ଶାସ୍ତ୍ରରେ ଏକ ବିପ୍ଲବ ସଂଘଟିତ ହୋଇଛି ଓ ଏହି ବିପ୍ଲବର ପୁରୋଧାମାନଙ୍କ ମଧ୍ୟରେ ଉଇଟଗେନଷ୍ଟାଇନ୍ ହେଉଛନ୍ତି ଅନ୍ୟତମ । ଦର୍ଶନ ସମ୍ବନ୍ଧୀୟ ସମସ୍ୟାଗୁଡ଼ିକ ଉପରେ ଏହାଙ୍କର ବିଚାର ଓ ବିଶ୍ଳେଷଣ ଏକ ନୂତନ ଚିନ୍ତାଧାରାର ଅବତାରଣା କରାଇଛି । ଅତୀତର ଦାର୍ଶନିକ ପରମ୍ପରାରେ ସ୍ୱୀକୃତ ଥିବା ମତବାଦ ଗୁଡ଼ିକର ବିଶ୍ଳେଷଣ କରି ସେ ତା'ର ଯେଉଁ ସମାଧାନର ସୂତ୍ର ଦେଇଛନ୍ତି ତାହା ଦର୍ଶନ ଇତିହାସରେ ଏକ ବୈପ୍ଲବିକ ପରିବର୍ତ୍ତନର ଭିତ୍ତି ପକାଇଛି । ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ସେ ଯେଉଁ ଆଲୋଡ଼ନ ଆଣିଛନ୍ତି ତାହା ଦର୍ଶନର ଇତିହାସରେ ସୃଷ୍ଟି କରିଛି ଏକ ନୂତନ ସମ୍ଭାବନାର ଦିଗନ୍ତ । ଉଇଟଗେନଷ୍ଟାଇନ୍‌ଙ୍କର ଦର୍ଶନ ଯେପରି ଅଭିନବ ତାଙ୍କର ଜୀବନ ମଧ୍ୟ ସେହିପରି ରହସ୍ୟମୟ ଓ ରୋମାଞ୍ଚକର ।

ଉଇଟଗେନଷ୍ଟାଇନ୍‌ଙ୍କର ଜନ୍ମ ୧୮୮୯ରେ ଭିଏନାର ଏକ ସମ୍ଭ୍ରାନ୍ତ ପରିବାରରେ । ତାଙ୍କ ପିତା କାର୍ଲ ଉଇଟଗେନଷ୍ଟାଇନ୍ ଜଣେ ଶିଳ୍ପ ପ୍ରତିଷ୍ଠାତା ଥିଲେ ବି ତାଙ୍କ ପରିବାରର ବୈଶିଷ୍ଟ୍ୟ ଥିଲା ସଂଗୀତ ଚର୍ଚ୍ଚା ଓ ସୌନ୍ଦର୍ଯ୍ୟାନୁଶୀଳନ । ଏହା ଫଳରେ

ଉଇଟ୍‌ଗେନ୍‌ଷ୍ଟାଇନ୍‌ଙ୍କର ବାଲ୍ୟକାଳରୁ ସଂଗୀତ ପ୍ରତି ଗଭୀର ଅନୁରାଗ ରହିଥିଲା । ଜୀବନରେ କ୍ଲାରିଓନେଟ୍ ବଜାଇବାରେ ଓ ସଂଗୀତର ମୂର୍ଚ୍ଛନା ଭିତରେ ସେ ଆତ୍ମ ବିଭୋର ହୋଇ ଯାଉଥିଲେ । ବାଲ୍ୟକାଳରୁ ଏହା ସହିତ ତାଙ୍କର ଯନ୍ତ୍ରପାତି ପ୍ରତି ଆଗ୍ରହ ରହିଥିଲା ଓ ମାଧ୍ୟମିକ ଶିକ୍ଷା ପରେ ଯାନ୍ତ୍ରିକ ବିଦ୍ୟା ସେ ଅଧ୍ୟୟନ କଲେ । ତା'ପରେ ଏରୋନେଟିକ୍ ଇଞ୍ଜିନିୟରିଂ ଅଧ୍ୟୟନ କରି ଇଂଲଣ୍ଡର ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟରେ ସେହି ବିଷୟରେ ଗବେଷଣା ଆରମ୍ଭ କଲେ । ଏହି ଗବେଷଣା ସମୟରେ ସେ ଭାବିଲେ ଯେ ଇଂଜିନିୟରିଂର ମୌଳିକ ସମସ୍ୟାଗୁଡ଼ିକ ଗଣିତ ଶାସ୍ତ୍ରର ସମସ୍ୟା ହୋଇଥିବାରୁ ସେ ଗଣିତ ଶାସ୍ତ୍ର ପ୍ରଥମେ ଅଧ୍ୟୟନ କରିବା ଉଚିତ ହେବ । ଗଣିତରେ ସେ ମନୋନିବେଶ କରି ତାହାର ମୌଳିକ ନିୟମ ପ୍ରତି ଆଗ୍ରହୀ ହେଲେ ଓ ବର୍ଟ୍ରାଣ୍ଡ ରସେଲ ଓ ହ୍ୱାଇଟହେଡଙ୍କର ଲିଖିତ ଗଣିତର ମୌଳିକ ନିୟମାବଳୀ (Principia Mathematica) ଅଧ୍ୟୟନ କରି ତହିଁରେ ଉଦ୍‌ବୁଦ୍ଧ ହେଲେ । ଗଣିତର ମୌଳିକ ନିୟମଗୁଡ଼ିକ ଅଧ୍ୟୟନ କରୁ କରୁ ଏହାର ସମସ୍ୟାଗୁଡ଼ିକୁ ଦର୍ଶନର ପରିସର ଭୁକ୍ତ ଭାବି ଦର୍ଶନ ଶାସ୍ତ୍ର ଅଧ୍ୟୟନ ପ୍ରତି ଆଗ୍ରହୀ ହେଲେ ଓ ଏହାପରେ ୧୯୧୨ ମସିହାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ଆସି ପ୍ରଖ୍ୟାତ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ ଓ ଜି.ଇ ମୁରଙ୍କର ଛାତ୍ର ହେବାର ସୁଯୋଗ ଲାଭ କଲେ । ଦର୍ଶନ ସମ୍ବନ୍ଧୀୟ ପ୍ରଶ୍ନଗୁଡ଼ିକ ଉପରେ ଗଭୀର ଚିନ୍ତାରେ ସେ ଏପରି ନିବିଷ୍ଟ ରହୁଥିଲେ ଯେ ସେ ଦର୍ଶନ ଶାସ୍ତ୍ର ଅଧ୍ୟୟନ ପ୍ରତି ନିଜର ସାମର୍ଥ୍ୟ ବିଷୟରେ ସନ୍ଦିହାନ ରହି ରସେଲଙ୍କର ପରାମର୍ଶ ଲୋଡ଼ିଥିଲେ । ରସେଲଙ୍କ ଠାରୁ ସେ ଜାଣିବାକୁ ଚାହିଁଥିଲେ ଯେ ସେ ନିର୍ବୋଧ କି; ଯଦିଓ ସେ ନିର୍ବୋଧ ହୋଇଥାନ୍ତି ତେବେ ସେ ତାଙ୍କର ଇଞ୍ଜିନିୟରିଂ ଶାସ୍ତ୍ରରେ ନିଜକୁ ସୀମିତ ରଖିବେ, ଯଦିଓ ନୁହେଁ ତେବେ ଦାର୍ଶନିକ ହେବେ । ରସେଲ ତାଙ୍କୁ କୌଣସି ଦାର୍ଶନିକ ବିଷୟ ଉପରେ ଏକ ନିବନ୍ଧ ଲେଖିବାକୁ ପରାମର୍ଶ ଦେଲେ, ତା'ପରେ ହୁଏତ ସେ କହିପାରିବେ ତାଙ୍କର ଦର୍ଶନ କ୍ଷେତ୍ରରେ ମନୋନିବେଶ କରିବା ଉଚିତ ହେବ କି ନାହିଁ । ତାଙ୍କର ଏହି ପରାମର୍ଶ ରକ୍ଷା କରି ଉଇଟ୍‌ଗେନଷ୍ଟାଇନ ଯେଉଁ ନିବନ୍ଧ ଲେଖିଲେ ତାହାର କେତୋଟି ବାକ୍ୟ ପାଠ କରି ସେ ଦାର୍ଶନିକ ହେବେ ବୋଲି ରସେଲ କହିଥିଲେ । ଅଧାପକ ମୁର୍ ମଧ ଛାତ୍ର ଉଇଟ୍‌ଗେନଷ୍ଟାଇନଙ୍କର ଦର୍ଶନ ପ୍ରତି ମନୋନିବେଶ ଓ ମୌଳିକତା ଲକ୍ଷ୍ୟ କରି ମନ୍ତବ୍ୟ ଦେଇଥିଲେ ଯେ ଦାର୍ଶନିକ ସମସ୍ୟାଗୁଡ଼ିକୁ ଗଭୀର ଭାବରେ ଚିନ୍ତା କରି ନୂତନ ବିଚାର ଓ ସମାଧାନ ଦେବାରେ ଉଇଟଗେନ୍‌ଷ୍ଟାଇନ୍‌ଙ୍କର ପ୍ରତିଭା ହେଉଛି ଅସାଧାରଣ । ଛାତ୍ର ଜୀବନ ପରେ ଉଇଟଗେନଷ୍ଟାଇନ ପ୍ରଥମ ବିଶ୍ୱଯୁଦ୍ଧରେ ଯୋଗ ଦେଇ ଇଟାଲୀୟ ମାନଙ୍କଦ୍ୱାରା ଯୁଦ୍ଧ ବନ୍ଦୀ ହୋଇ ୧୯୨୦ରେ ମୁକ୍ତ ହେଲେ । ଏହାପରେ ତାଙ୍କର ପ୍ରଥମ ଦର୍ଶନ ଗ୍ରନ୍ଥ ଟାକ୍ଟାର୍ଟସ ଲଜିକୋ ଫିଲୋସଫିକସ୍ (Tractatus Logico Philosophicus) ପ୍ରକାଶ ପାଇଲା ଓ ଏହା ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ଏକ

ଆଲୋଡ଼ନ ସୃଷ୍ଟି କଲା । ଏହି ଗ୍ରନ୍ଥର ପ୍ରଭାବରେ ତାର୍କିକ ପ୍ରତ୍ୟକ୍ଷାନୁବାଦ (Logical positivism) ନାମକ ଏକ ଦାର୍ଶନିକ ଧାରା ଜନ୍ମଲାଭ କଲା । ଅବଶ୍ୟ ଏହି ଗ୍ରନ୍ଥରେ ବ୍ୟକ୍ତ ହୋଇଥିବା ସିଦ୍ଧାନ୍ତଗୁଡ଼ିକ ପ୍ରମାଦପୂର୍ଣ୍ଣ ବୋଲି ଉଇଟଗେନଷ୍ଟାଇନ ନିଜେ ଦେଖାଇଲେ ଓ ଏହାକୁ ଅନ୍ୟ ପ୍ରକାର ବିଶ୍ଳେଷଣ ପ୍ରଣାଳୀରେ ଖଣ୍ଡନ କଲେ ।

ବିଶ୍ୱଯୁଦ୍ଧ ପରେ ସେ କେମ୍ବ୍ରିଜ ପ୍ରତ୍ୟାବର୍ତ୍ତନ ନ କରି ଅଷ୍ଟ୍ରିଆର ଏକ ଗ୍ରାମରେ ଜଣେ ପ୍ରାଥମିକ ଶିକ୍ଷକ ଭାବରେ ଯୋଗଦେଲେ । ଜଣେ ଶିକ୍ଷକ ହିସାବରେ ତାଙ୍କର ପ୍ରତିଭା, ନୂତନ ଶିକ୍ଷା ପ୍ରଣାଳୀ ବାହାର କରିବାରେ କୁଶଳତା, ନିରାଡମ୍ବର ଜୀବନ ଓ ଶୃଙ୍ଖଳାବୋଧ ତାଙ୍କୁ ପ୍ରିୟ କରାଇ ପାରିଥିଲା ତଥାପି ତାଙ୍କର ଶୃଙ୍ଖଳା ଜ୍ଞାନ ଜନିତ କଠୋରତା ଯୋଗୁଁ ଜଣେ ଶିକ୍ଷକ ହିସାବରେ ସେ ନିଜକୁ ଅନୁପଯୁକ୍ତ ମନେ କରି ବିଦ୍ୟାଳୟରୁ ଇସ୍ତଫା ଦେଇ ୧୯୨୬ ରେ ଚାଲି ଆସିଲେ । ଏହା ପରେ ଭିଏନାସ୍ଥିତ ଗୋଟିଏ ମଠରେ ମାଳୀ ରୂପେ କିଛି ଦିନ କାର୍ଯ୍ୟ କରିଥିଲେ ।

ଏହା ଭିତରେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ଗଣିତ ଦାର୍ଶନିକ ରାମସେ, ତାର୍କିକ ପ୍ରତ୍ୟକ୍ଷାନୁବାଦର ପ୍ରବର୍ତ୍ତକ ମୋରିଜ ସ୍ଲିକ୍ ଓ ହଲାଣ୍ଡର ବିଶିଷ୍ଟ ଗାଣିତିକ ବ୍ରାଉଓରଙ୍କର ସମ୍ପର୍କରେ ଆସିଲେ । ୧୯୨୯ରେ ତାଙ୍କର ପ୍ରକାଶିତ ପୁସ୍ତକ ଟ୍ରାକ୍ଟାଟସ ପାଇଁ ତାଙ୍କୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ପ୍ରଦାନ କରାଯାଇଥିଲା ଓ ସେ ଟ୍ରିନିଟ ମହାବିଦ୍ୟାଳୟରେ ଯୋଗଦାନ କରିଥିଲେ । ୧୯୩୩ ପରଠାରୁ ସେ ତାଙ୍କର ପୂର୍ବ ଦାର୍ଶନିକ ସିଦ୍ଧାନ୍ତଗୁଡ଼ିକ ପ୍ରମାଦପୂର୍ଣ୍ଣ ବୋଲି ବିଚାର କଲେ ଓ ଏକ ନୂତନ ପ୍ରକାରର ଦାର୍ଶନିକ ସିଦ୍ଧାନ୍ତଦ୍ୱାରା ଉଦ୍‌ବୁଦ୍ଧ ହେବାକୁ ଲାଗିଲେ । ଏହି ସମୟ ଭିତରେ ଜଟିଳ ଦାର୍ଶନିକ ପ୍ରଶ୍ନମାନଙ୍କର ଯେଉଁ ସମାଧାନର ସୂତ୍ରମାନ ଗଭୀର ଚିନ୍ତନ ଫଳରେ ଜାଣିପାରିଲେ ସେସବୁ ତାଙ୍କର ଜୀବନବ୍ୟାପୀ ବିଚାର ଓ ମନନର ବିଷୟ ହୋଇ ରହିଥିଲା । ଦାର୍ଶନିକ ସମସ୍ୟାମାନଙ୍କ ଉପରେ ଗଭୀର ଅନୁଚିନ୍ତନ ଫଳରେ ତାଙ୍କର ଯୁଗାନ୍ତକାରୀ ଗ୍ରନ୍ଥ ଫିଲୋସଫିକାଲ ଇନ୍‌ଭେଷ୍ଟିଗେସନ (Philosophical Investigation) ସେ ଲେଖିଥିଲେ, କିନ୍ତୁ ଏହି ଗ୍ରନ୍ଥ ତାଙ୍କ ମୃତ୍ୟୁ ପରେ ପ୍ରକାଶିତ ହେଲା । ଯେତେବେଳେ ସେ ତାଙ୍କର ପ୍ରଥମ ଗ୍ରନ୍ଥ ଟ୍ରାକ୍ଟାଟସର ଚିନ୍ତାଧାରାଠାରୁ ଦୂରେଇ ଗଲେ ଓ ଫିଲୋସଫିକାଲ ଇନ୍‌ଭେଷ୍ଟିଗେସନ ଲେଖିବା ଆରମ୍ଭ କଲେ ଏହି ମଧ୍ୟବର୍ତ୍ତୀ ସମୟରେ ଏହି ଦୁଇ ଗ୍ରନ୍ଥର ସିଦ୍ଧାନ୍ତମାନଙ୍କ ମଧ୍ୟରେ ସଂଯୋଗକାରୀ ଗ୍ରନ୍ଥ ଭାବେ ତାଙ୍କର ଆଉ ଦୁଇଟି ପୁସ୍ତକ ବ୍ଲୁ ବୁକ୍ (Blue Book) ଓ ବ୍ରାଉନ ବୁକ୍ (Brown Book) ନାମରେ ରଚନା କରିଥିଲେ ।

୧୯୩୭ରେ ସେ କେମ୍ବ୍ରିଜ ଆସି ୧୯୩୯ରେ ସେଠାରେ ଅଧ୍ୟାପକ ଭାବେ ଯୋଗ ଦେଲେ କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ସେ ଅଧ୍ୟାପନାରୁ ଅବ୍ୟାହତି ନେଇ ଲଣ୍ଡନସ୍ଥିତ ଏକ ଡାକ୍ତରଖାନାରେ ଯୁଦ୍ଧରେ ଆହତ ରୋଗୀମାନଙ୍କର ସେବା କାର୍ଯ୍ୟରେ

ରହିଲେ । ଯୁଦ୍ଧ ପରେ ସେ କେମ୍ବ୍ରିଜରେ ପୁନଶ୍ଚ ଯୋଗଦେଲେ ଓ କିଛି ବର୍ଷ ପରେ ୧୯୪୭ରେ ସେ ସଂପୂର୍ଣ୍ଣ ଭାବରେ ନିଜର କର୍ମକ୍ଷେତ୍ରରୁ ବିଦାୟ ନେଇ ନିଃସଙ୍ଗ ଜୀବନ ଯାପନ କଲେ । ୧୯୪୭ରୁ ଦୁଇ ବର୍ଷ ପର୍ଯ୍ୟନ୍ତ ଆୟରଲ୍ୟାଣ୍ଡର ସମୁଦ୍ର କୂଳରେ ରହିଥିବା ମତ୍ସ୍ୟଜୀବୀମାନଙ୍କ ମେଳରେ ଏକ ସରଳ ଗ୍ରାମ୍ୟ ଜୀବନ ଅତିବାହିତ କଲେ । କିନ୍ତୁ ଶାରୀରିକ ଅସୁସ୍ଥତା ଯୋଗୁଁ ସେ ସେ ସ୍ଥାନ ପରିତ୍ୟାଗ କରି ଚାଲି ଆସିଲେ । ଏହାପରେ ତାଙ୍କର ଦେହର ଅବସ୍ଥା ଖରାପ ଆଡ଼କୁ ଗତି କଲା ଓ ପରିଶେଷରେ କ୍ୟାନସର ରୋଗରେ ଆକ୍ରାନ୍ତ ହୋଇ କେମ୍ବ୍ରିଜ ସହରରେ ୧୯୫୧ ସାଲରେ ଦେହ ତ୍ୟାଗ କଲେ ।

ଉଇଟଗେନଷ୍ଟାଇନ୍ ଯେପରି ଇଞ୍ଜିନିୟରିଂରୁ ଗଣିତ ଓ ପରେ ଦର୍ଶନ କ୍ଷେତ୍ରକୁ ଆସିଲେ ଏହା ତାଙ୍କର ବୌଦ୍ଧିକ ଅନୁସନ୍ଧିତ୍ସାର ପରିଚୟ ଦିଏ । ଯେ କୌଣସି ବିଷୟଟି ଉପରେ ଗଭୀର ମନୋନିବେଶ କରି ତା'ର ମୂଳ ତଥ୍ୟ ଉପରେ ଆତ୍ମପ୍ରତ୍ୟୟ ଜାତ ନ ହେବା ପର୍ଯ୍ୟନ୍ତ ସେ ଏହାକୁ ପରିତ୍ୟାଗ କରୁନଥିଲେ । ବୌଦ୍ଧିକ ଉତ୍କର୍ଷ ଲାଭ ପାଇଁ ତାଙ୍କର ଯେପରି ଶ୍ରଦ୍ଧା ରହିଥିଲା ସେପରି ନାନା କ୍ଷେତ୍ରକୁ ଯାଇ ଅନୁଭୂତି ଲାଭ କରିବାକୁ ସେ ଜୀବନର ଶ୍ରେୟ ଭାବରେ ଗ୍ରହଣ କରିଥିଲେ । ଯେ କୌଣସି ପ୍ରକାରର କୃତ୍ରିମତା, ଛଳନା ବା ନିଜକୁ ପ୍ରତିଷ୍ଠା କରାଇବାର ମୋହ କେବେ ବି ତାଙ୍କୁ ସ୍ପର୍ଶ କରିନଥିଲା । କୌଣସି ଅର୍ଥଲାଳସା, ପ୍ରତିଷ୍ଠା ବା ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ସେ ଜୀବନରେ କେବେ ଚାହିଁ ନଥିଲେ । ଏକ ସରଳ, ନିରାଡ଼ମ୍ବର ଅଥଚ ଶୃଙ୍ଖଳିତ ଜୀବନ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ରହିଥିଲା । ସେଥିପାଇଁ ସେ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ପଦ ତ୍ୟାଗ କରି କେତେବେଳେ ଯୁଦ୍ଧଭୂମିରେ, ଗ୍ରାମରେ ପ୍ରାଥମିକ ଶିକ୍ଷକ ଭାବେ, ଉଦ୍ୟାନର ମାଳୀ ରୂପେ, ମତ୍ସ୍ୟଜୀବୀମାନଙ୍କ ଗହଣରେ ଓ ନିଃସଙ୍ଗ ଭାବେ ଗ୍ରାମ୍ୟ ଜୀବନ ଯାପନରେ ଜୀବନ ବିତାଇଥିଲେ । ଜୀବନର ନାନା କ୍ଷେତ୍ରକୁ ଯିବା ଓ ସଂସାରର ବହୁ କ୍ଷେତ୍ରରୁ ନିଜ ପାଇଁ ଅନୁଭୂତି ଆଣିବା ସତେ ଯେପରି ଥିଲା ତାଙ୍କ ଜୀବନର ବ୍ରତ ।

ଉଇଟଗେନଷ୍ଟାଇନଙ୍କ ଭିତରେ ଏକ ଆଦର୍ଶ ଜୀବନଦୃଷ୍ଟି ରହିଥିଲେ 'ବି ତାଙ୍କ ଭିତରେ ହତାଶା ଓ ନୈରାଶ୍ୟଭାବ ରହିଥିଲା । ସମ୍ଭବତଃ ଦୁଇଟି ବିଶ୍ୱଯୁଦ୍ଧ ସମୟର ବିଭୀଷିକାପୂର୍ଣ୍ଣ ଅନୁଭୂତି, ସମାଜର ନାନା ନିଷ୍ଠୁରତା ଓ ମଣିଷର ଅସହାୟବୋଧ ତାଙ୍କର କୋମଳ ପ୍ରାଣକୁ ବହୁ ଭାବରେ ବ୍ୟଥିତ କରୁଥିଲା । ତଥାପି ମଣିଷ ଉପରେ ତାଙ୍କର ଅଟଳ ବିଶ୍ୱାସ ରହିଥିଲା । ମାନବିକ ମୂଲ୍ୟବୋଧ ଓ ନୀତିମୟ ଜୀବନ ଯାପନ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଥିଲା । ଟଲ୍‌ଷ୍ଟୟଙ୍କର ବହୁ ଲେଖା ସେ ଅଧ୍ୟୟନ କରି ତାଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ ଓ ତାଙ୍କର ଜୀବନଦୃଷ୍ଟି ଓ ମୌଳିକ ବିଶ୍ୱାସ କେତେକ ପରିମାଣରେ ଟଲ୍‌ଷ୍ଟୟଙ୍କର ଲେଖାର ଆଦର୍ଶଦ୍ୱାରା ପୁଷ୍ଟ ହୋଇଥିଲା । କୌଣସି ଧର୍ମ ପ୍ରତି ତାଙ୍କର ଅନୁରାଗ ନ ଥିଲେ ବି ନୀତିମୟ ଜୀବନ ଓ ଆଧ୍ୟାତ୍ମିକ ଦୃଷ୍ଟି ପ୍ରତି ପ୍ରଗାଢ଼ ଶ୍ରଦ୍ଧା ରହିଥିଲା ।

ଯେଉଁ ଦୃଷ୍ଟି ଓ ଆଚରଣ ବ୍ୟକ୍ତିର ଜୀବନକୁ ଉନ୍ନତ ତଥା ଶୃଙ୍ଖଳିତ କରାଏ ତାହା ପ୍ରତି ତାଙ୍କର ଗଭୀର ଆଗ୍ରହ ରହିଥିଲା । ସାମାଜିକ ଜୀବନରେ ସାଧୁତା, ଅନ୍ୟ ପ୍ରତି ଦୟା ତଥା ମାନବିକ ମୂଲ୍ୟବୋଧ ପ୍ରତି ଶ୍ରଦ୍ଧା ତାଙ୍କ ଦୃଷ୍ଟିରେ ବିଜ୍ଞତା ବା ବୁଦ୍ଧିମତା ଅପେକ୍ଷା ଅଧିକ ଶ୍ରେୟସ୍କର ଥିଲା । ମୋଟ ଉପରେ ଉଇଟଗେନଷ୍ଟାଇନ୍‌ଙ୍କର ଯେ ଏକ ଆଦର୍ଶ ଜୀବନଦୃଷ୍ଟି ରହିଥିଲା ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉଇଟଗେନ୍‌ଷ୍ଟାଇନଙ୍କର ବ୍ୟକ୍ତିତ୍ୱ ଓ ଦାର୍ଶନିକ ଜୀବନର ଏକ ବୈଶିଷ୍ଟ୍ୟ ହେଉଛି ତାଙ୍କର ବୌଦ୍ଧିକ ସାଧୁତା । ନିଜର ଦୋଷ ତ୍ରୁଟିକୁ କେବେହେଲେ ସମର୍ଥନ କରିବା ତାଙ୍କଠାରେ ଦେଖାଯାଏ ନାହିଁ । ବରଂ ନିଜର ଆତ୍ମ ସମୀକ୍ଷା କରିବା ଓ ନିଜର ତ୍ରୁଟିକୁ ନିଜେ ପ୍ରକାଶ କରିବା ତାଙ୍କ ବ୍ୟକ୍ତିତ୍ୱର ଏକ ମହାନ ଗୁଣ । ତାଙ୍କର ଦାର୍ଶନିକ ଜୀବନରେ ସେ ନିଜର ମତ ବା ଯୁକ୍ତିରେ କୌଣସିଠାରେ କିଛି ତ୍ରୁଟି ପାଉଥିଲେ ସେ ତାହାକୁ ପୂର୍ଣ୍ଣଭାବେ ପ୍ରକାଶ କରୁଥିଲେ । ତାଙ୍କ ଦର୍ଶନକୁ ଆଲୋଚନା କଲେ ଆମେ ତାଙ୍କୁ ଦୁଇଟି ଦାର୍ଶନିକ ମତବାଦର ପ୍ରତିଷ୍ଠାତା ଭାବରେ ବିବେଚନା କରିପାରିବା । ତାଙ୍କର ଯେଉଁ ଦାର୍ଶନିକ ମତବାଦ ପ୍ରଥମ ପର୍ଯ୍ୟାୟରେ ଟ୍ରାକ୍ଟାଟସ ପୁସ୍ତକରେ ପ୍ରକାଶ ପାଇଥିଲା ତାହା ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ବୋଲି ଅନ୍ୟମାନେ ବିଚାର କରୁଥିବାବେଳେ ସେ ନିଜେ ହିଁ ତାଙ୍କର ମତକୁ ପ୍ରତ୍ୟାଖ୍ୟାନ କରିଥିଲେ । ପରବର୍ତ୍ତୀ ଜୀବନରେ ଯେତେବେଳେ ସେ ଅନୁଭବ କଲେ ଯେ ତାଙ୍କ ଲେଖାର ମୂଳ ସିଦ୍ଧାନ୍ତଗୁଡ଼ିକ ପ୍ରମାଦପୂର୍ଣ୍ଣ ସେତେବେଳେ ସେ ସେସବୁକୁ ପ୍ରତ୍ୟାଖ୍ୟାନ କରି ଅନ୍ୟ ଏକ ଦାର୍ଶନିକ ମତବାଦ ପ୍ରକାଶ କଲେ । ତାଙ୍କର ପରବର୍ତ୍ତୀ ଦାର୍ଶନିକ ମତବାଦ ଯାହାକି ମୁଖ୍ୟତଃ 'ଫିଲୋସଫିକାଲ ଇନ୍‌ଭେଷ୍ଟିଗେସନ' ପୁସ୍ତକରେ ପ୍ରକାଶ ପାଇଲା ତାହା ଦର୍ଶନ ଜଗତରେ ଏକ ଅଭିନବ ସୃଷ୍ଟି । ଦାର୍ଶନିକ ସମସ୍ୟାମାନଙ୍କର ମୌଳିକ ସ୍ୱରୂପ କ'ଣ, କିପରି ଏହି ସମସ୍ୟା ଗୁଡ଼ିକର ଉତ୍ପତ୍ତି ହୋଇଥାଏ ଓ ସେସବୁକୁ ବିଶ୍ଳେଷଣ କରି କିପରି ପ୍ରତ୍ୟୟାନୁଶୀଳନ ଫଳରେ ସେସବୁର ପ୍ରକୃତ ସମାଧାନ କରାଯାଇ ପାରିବ ଏହି ମତବାଦ ଦର୍ଶନ ଇତିହାସରେ ଏକ ନୂଆ ଯୁଗର ଅଯମାରମ୍ଭ କଲା । ଏହି ନୂତନ ପ୍ରଣାଳୀ ଓ ବିଶ୍ଳେଷଣ ବିଂଶ ଶତାବ୍ଦୀର ଦାର୍ଶନିକ ଅନ୍ୱେଷାକୁ ବହୁ ଭାବରେ ଯେ ପ୍ରଭାବିତ କରିଛି ଓ କରୁଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ନିଜର ମତ ଓ ପୂର୍ବ ସିଦ୍ଧାନ୍ତକୁ ନିଜେ ସମାଲୋଚନା କରିବା ଓ ଆବଶ୍ୟକ ହେଲେ ତାହାକୁ ପ୍ରତ୍ୟାଖ୍ୟାନ କରିବା ତାଙ୍କ ବୌଦ୍ଧିକ ସାଧୁତାର ଯଥେଷ୍ଟ ପରିଚୟ ଦିଏ । ଏହିଠାରେ ଗ୍ରୀକ୍ ଦାର୍ଶନିକ ପ୍ଲେଟୋଙ୍କ ସହ ଉଇଟଗେନଷ୍ଟାଇନ୍ ଯଥାର୍ଥରେ ତୁଳନୀୟ । ଏତଦ୍‌ବ୍ୟତୀତ ପ୍ଲେଟୋଙ୍କର ଦର୍ଶନ ସହିତ ଉଇଟଗେନଷ୍ଟାଇନଙ୍କର ଦର୍ଶନର ଏକ ବଡ ସାମଞ୍ଜସ୍ୟ ରହିଛି । ଉଭୟଙ୍କ ପାଇଁ ଦର୍ଶନ ହେଉଛି ଏକ କଳା ଓ ଏକ ଦୃଷ୍ଟି । ସକ୍ରେଟିସ୍ ଓ ପ୍ଲେଟୋ ଯେଉଁପରି ଦର୍ଶନକୁ ଏକ କଳା ଭାବରେ ଗ୍ରହଣ କରି ଏହାର ଆଭିମୁଖ୍ୟ ମାନବ ସଭ୍ୟତାର ଶ୍ରେୟ ସାଧନରେ

ପର୍ଯ୍ୟବସିତ ବୋଲି ବିଚାର କରୁଥିଲେ, ଭଇଟଗେନଷ୍ଟାଇନ ସେହିପରି ମଧ୍ୟ ଦର୍ଶନ ଯେ ଏକ କଳା ଯଦ୍ୱାରା ବୌଦ୍ଧିକ ସ୍ୱାସ୍ଥ୍ୟ ଅକ୍ଷୁଣ୍ଣ ରହିପାରିବ ତାହା ଭାବୁଥିଲେ । ଏଣୁ ଭଇଟଗେନଷ୍ଟାଇନ୍‌ଙ୍କର ଦର୍ଶନ ପ୍ରତି ଆଭିମୁଖ୍ୟ ଆରିଷ୍ଟଟଲ ବା ଅଷ୍ଟିନଙ୍କଠାରୁ ପୃଥକ ଥିଲା । କାରଣ ଆରିଷ୍ଟଟଲ ବା ଅଷ୍ଟିନ ଦର୍ଶନକୁ କଳା ଅପେକ୍ଷା ବିଜ୍ଞାନ ସଦୃଶ ବୋଲି ବିଚାର କରୁଥିଲେ । ଦର୍ଶନ କ୍ଷେତ୍ରରେ ସେମାନେ ବିଜ୍ଞାନ ସଦୃଶ ପ୍ରଣାଳୀବଦ୍ଧ ବିଶ୍ଳେଷଣକୁ ଅଧିକ ଗୁରୁତ୍ୱ ଦେଉଥିଲେ ।

ଭଇଟଗେନଷ୍ଟାଇନଙ୍କର ଅଧ୍ୟାପନା ଜୀବନ ଥିଲା ଅତି ସ୍ୱଳ୍ପ । ତଥାପି ତାଙ୍କର ଦର୍ଶନ ଓ ବ୍ୟକ୍ତିତ୍ୱର ପ୍ରଭାବ ବହୁ ଛାତ୍ର ଛାତ୍ରୀଙ୍କୁ ଆକୃଷ୍ଟ କରିଥିଲା । ବହୁ ଛାତ୍ର ତାଙ୍କଦ୍ୱାରା ବହୁ ଭାବରେ କିପରି ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ ହୋଇଥିଲେ ତାହା ତାଙ୍କ ବିଷୟରେ ପ୍ରକାଶ ପାଇଥିବା ଅସଂଖ୍ୟ ପୁସ୍ତକରୁ ଜଣାପଡ଼େ । ଦାର୍ଶନିକ ସମସ୍ୟାମାନଙ୍କ ଉପରେ ଆଲୋଚନା କରୁଥିବା ସମୟରେ ସେ ସେଥିରେ ମଜ୍ଜି ଯାଉଥିଲେ ଓ ନୂତନ ବିଚାର ଓ ବ୍ୟାଖ୍ୟା ଦ୍ୱାରା ତାଙ୍କର ଆଲୋଚନାକୁ ଗଭୀରତର ସ୍ତରକୁ ନେଇ ପାରୁଥିଲେ । କେବଳ ଶ୍ରେଣୀ ଗୃହ ଭିତରେ ତାଙ୍କର ଦର୍ଶନ ଚର୍ଚ୍ଚା ଆବଦ୍ଧ ନଥିଲା । ପରନ୍ତୁ ବହୁ ସମୟରେ କେତେକ ଛାତ୍ରମାନଙ୍କ ମେଳରେ କଥୋପକଥନ, ଆଲୋଚନା ଓ ପ୍ରଶ୍ନୋତ୍ତର ମାଧ୍ୟମରେ ସେ ଏପରି ଦାର୍ଶନିକ ପ୍ରଶ୍ନମାନ ଉତ୍‌ଥାପନ କରୁଥିଲେ ଯଦ୍ୱାରା ତାଙ୍କର ବହୁ ଛାତ୍ର ତାଙ୍କଠାରୁ ପ୍ରେରଣା ଲାଭ କରି ଦର୍ଶନର ନାନା ସମସ୍ୟା ଉପରେ ନୂତନ ଦୃଷ୍ଟିକୋଣମାନ ଦେଇଛନ୍ତି । ସକ୍ରେଟିସ୍ ଯେଉଁପରି କଥୋପକଥନ ଓ ପ୍ରଶ୍ନୋତ୍ତର ମାଧ୍ୟମରେ ଅତି ଜଟିଳ ପ୍ରଶ୍ନମାନ ଉତ୍‌ଥାପନ କରୁଥିଲେ ଓ ତାଙ୍କର ଛାତ୍ରମାନଙ୍କ ଭିତରେ ବୌଦ୍ଧିକ ପ୍ରେରଣା ଜାଗ୍ରତ କରି ପାରୁଥିଲେ ଭଇଟଗେନଷ୍ଟାଇନ୍ ମଧ୍ୟ ସେହିପରି ତାଙ୍କର କେତେକ ଗୁଣଗ୍ରାହୀ ଛାତ୍ରଙ୍କ ସହ ବୌଦ୍ଧିକ ଆଲୋଚନା ଓ ପ୍ରଶ୍ନୋତ୍ତର ମାଧ୍ୟମରେ ସେମାନଙ୍କୁ ଚିନ୍ତା ରାଜ୍ୟରେ ଗଭୀରତମ ପ୍ରଦେଶକୁ ନେଇ ପାରୁଥିଲେ । କିନ୍ତୁ ତାଙ୍କର ବିଚାର ବା ମତାମତ ସହ କେହି ଏକମତ ହୋଇଗଲେ ବା ତାଙ୍କୁ ସର୍ବଦା ଅନୁକରଣ କରିବା ଅନୁଭବ କଲେ ସେ ବ୍ୟଥିତ ହେଉଥିଲେ । କୌଣସି ମତର ଅନୁକରଣ ଅପେକ୍ଷା ସ୍ୱକୀୟ ବିଚାର ପ୍ରତି ସେ ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ । ଏହି ମର୍ମରେ ତାଙ୍କର 'ଫିଲୋସଫିକାଲ ଇନ୍‌ଭେଷ୍ଟିଗେସନ' ପୁସ୍ତକର ମୁଖବନ୍ଧରେ ଥିବା ଗୋଟିଏ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ ସେଠାରେ ଲେଖିଛନ୍ତି, ''ଅନ୍ୟମାନେ ସେମାନଙ୍କର ମତାମତକୁ ପରିହାର କରି ମୋର ଭାବନାକୁ ଗ୍ରହଣ କରିବା ମୋର ଆଦୌ ଉଦ୍ଦେଶ୍ୟ ନୁହେଁ । ବରଂ ନିଜସ୍ୱ ଶୈଳୀରେ ଚିନ୍ତା କରିବାକୁ ମୋର ଲେଖା କିଛି ଉଦ୍ଦୀପନା ସୃଷ୍ଟି କରିବା ମୁଁ ଚାହେଁ ।''

ଭଇଟଗେନଷ୍ଟାଇନଙ୍କର ଦର୍ଶନ ଓ ବ୍ୟକ୍ତିତ୍ୱର ବହୁ ଦିଗ ରହିଛି ଓ ବହୁ ଦିଗରୁ ଏହା ଆଲୋଚନା କରାଯାଇପାରେ । ତାଙ୍କ ଦାର୍ଶନିକ ଅବଦାନ ଉପରେ କ୍ରମ ବର୍ଦ୍ଧିଷ୍ଣୁ

ଭାବେ ସମୀକ୍ଷାମୂଳକ ପୁସ୍ତକମାନ ପ୍ରକାଶ ପାଇବାରେ ଲାଗିଛି । ଦର୍ଶନର ଇତିହାସକୁ ତାଙ୍କର ମୌଳିକ ଅବଦାନ ନିଶ୍ଚୟ ରହିଛି । ଏହା ସହିତ ତାଙ୍କର ଜୀବନ ଦୃଷ୍ଟି ଉନ୍ନତ ବୋଲି ଜଣାପଡ଼େ । ଏ ସତ୍ତ୍ୱେ ତାଙ୍କର ବ୍ୟକ୍ତିଗତ ଜୀବନରେ ଦୁଃଖ ଓ ନୈରାଶ୍ୟ ବି ଦେଖିବାକୁ ମିଳେ । ଅବଶ୍ୟ ବ୍ୟକ୍ତିଗତ ସୁଖ, ସମ୍ଭୋଗ ଓ ପାରିବାରିକ ଜଞ୍ଜାଳଠାରୁ ସେ ଥିଲେ ଊର୍ଦ୍ଧ୍ୱରେ । ମନୁଷ୍ୟ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ପରିଲକ୍ଷିତ ହେଲେ ବି ନିଜର ଜୀବନ ଯନ୍ତ୍ରଣାରେ ସେ ବହୁବାର ମ୍ରିୟମାଣ ହେବାର ଦେଖାଯାଏ । ଏପରିକି ଅନେକ ସମୟରେ ତାଙ୍କର ଜୀବନ ବୈଚିତ୍ର୍ୟମୟ ପ୍ରତୀତ ହୁଏ । ଉଇଟଗେନଷ୍ଟାଇନ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତାଙ୍କ ଜୀବନର ଶେଷ ସମୟ ଆସନ୍ନ ହୋଇ ଆସୁଛି ବୋଲି ଯେତେବେଳେ ଜାଣିବାକୁ ପାଇଲେ ସେତେବେଳେ ତାଙ୍କ ପାଖରେ ଥିବା ତାଙ୍କର ଜଣେ ବନ୍ଧୁଙ୍କୁ କହିଲେ, ''ମୋର ଜୀବନ ଯେ ବୈଚିତ୍ର୍ୟମୟ ଏହା ମୋର ବନ୍ଧୁମାନଙ୍କୁ କହିଦେବ ।'' ସଂଜ୍ଞା ହରାଇବା ପୂର୍ବରୁ ଏହା ଥିଲା ତାଙ୍କର ଶେଷ ବାକ୍ୟ । ତାଙ୍କ ଜୀବନରେ ସତେ ଯେପରି ଅନେକ କିଛି ରହସ୍ୟ ରହିଗଲା । ତାଙ୍କର ବହୁ ଘନିଷ୍ଠ ବନ୍ଧୁ ଓ କେତେକ ଜୀବନୀ ଲେଖକ ଯେଉଁମାନେ ତାଙ୍କର ବ୍ୟକ୍ତିଗତ ସାନ୍ନିଧରେ ଆସିଥିଲେ ଏହା ମଧ୍ୟ ବ୍ୟକ୍ତ କରିଛନ୍ତି । ସେମାନଙ୍କ ମତରେ ତାଙ୍କ ଜୀବନ ସତେ ଯେପରି ରହସ୍ୟମୟ ଓ କେତେକ ପରିମାଣରେ ଦୁର୍ବୋଧ । ଏପରିକି ଉଇଟଗେନଷ୍ଟାଇନ୍‌ଙ୍କର ଜଣେ ଘନିଷ୍ଠ ବନ୍ଧୁ ଓ ଜୀବନୀ ଲେଖକ ଏଙ୍ଗେଲମ୍ୟାନ ଏହା ବ୍ୟକ୍ତ କରି କହିଛନ୍ତି, ''ଉଇଟଗେନଷ୍ଟାଇନ୍‌ଙ୍କର ଜୀବନ ଓ ବ୍ୟକ୍ତିତ୍ୱକୁ କେହି ଠିକ୍ ଭାବରେ ବୁଝିଛନ୍ତି ବୋଲି କହିବା କଥାରେ ମୋର ଗଭୀର ସନ୍ଦେହ ରହିଛି ।'' ପୃଥିବୀର କେତେକ ମନୀଷୀଙ୍କର ଜୀବନ ଭଳି ଉଇଟଗେନଷ୍ଟାଇନଙ୍କର ଜୀବନ ଦର୍ଶନ ଅବଶ୍ୟ ସାଧାରଣ ମାନଦଣ୍ଡରେ ଅସ୍ପଷ୍ଟ । ଯେଉଁମାନେ ଜୀବନରେ ମନୁଷ୍ୟର ଚିରନ୍ତନ ସମସ୍ୟା, ମୂଲ୍ୟବୋଧ ଓ ଜ୍ଞାନାନ୍ୱେଷଣକୁ ଜାଣିବାକୁ ଜୀବନର ସର୍ବଶ୍ରେଷ୍ଠ ଶ୍ରେୟ ଭାବରେ ଗ୍ରହଣ କରିଥାନ୍ତି ସେମାନଙ୍କର ଜୀବନ ସାଧାରଣ ମାନଦଣ୍ଡରେ ଅସ୍ପଷ୍ଟ । ଉଇଟଗେନଷ୍ଟାଇନଙ୍କର ଜୀବନରେ ଏହି ଅସ୍ପଷ୍ଟତାର ଇଙ୍ଗିତ ସୁସ୍ପଷ୍ଟ । ହେଲେ ଜଣେ ପ୍ରବୀଣ ଦାର୍ଶନିକ ଓ ଦରଦୀ ମଣିଷ ଭାବରେ ସେ ଇତିହାସରେ ନିଜର ସ୍ୱାକ୍ଷର ରଖି ଯାଇଛନ୍ତି ।

■■

# ସାମାଜିକ ପରିବର୍ତ୍ତନ ଓ ଅବକ୍ଷୟ

ପୃଥିବୀର ବିଭିନ୍ନ ଭୂଖଣ୍ଡରେ ନାନା କ୍ରମ ବିବର୍ତ୍ତନ ଓ ପରିବର୍ତ୍ତନ ମଧ୍ୟ ଦେଇ ସଭ୍ୟ ଜୀବନଧାରାର ବିକାଶ ହୋଇଛି । ଯେକୌଣସି ସଭ୍ୟ ରାଷ୍ଟ୍ରର ସାମାଜିକ ବ୍ୟବସ୍ଥା ପଶ୍ଚାତରେ ସୁଦୀର୍ଘ ଇତିହାସ ରହିଛି । ସାମାଜିକ ଆଦର୍ଶ, ମୂଲ୍ୟବୋଧ, ଚଳଣି, ପରମ୍ପରା ଇତ୍ୟାଦି କେତେ କେତେ ପରିବର୍ତ୍ତନର ପ୍ରବାହ ମଧ୍ୟ ଦେଇ ଗତିକରି ଆସିଛି । ସମାଜର ରାଜନୈତିକ, ଅର୍ଥନୀତିକ ଓ ସାଂସ୍କୃତିକ ବ୍ୟବସ୍ଥା ସମୂହ ପରସ୍ପର ସମ୍ବନ୍ଧିତ ରହି ପରସ୍ପରକୁ ନାନା ଭାବରେ ପ୍ରଭାବିତ କରିଛନ୍ତି । ଯେକୌଣସି ରାଷ୍ଟ୍ରର ଏହି ବ୍ୟବସ୍ଥା ସମୂହ ବହୁବିଧ ଘଟଣା ପ୍ରବାହ ଓ ପରିବର୍ତ୍ତନ ମଧ୍ୟ ଦେଇ ପୁଷ୍ଟ ହୋଇଛନ୍ତି । ମୋଟ ଉପରେ ସାମାଜିକ ବିକାଶ ପ୍ରକ୍ରିୟା ନାନା ପରିବର୍ତ୍ତନ ମଧ୍ୟ ଦେଇ ସର୍ବଦା ଅଗ୍ରଗତି କରିଆସିଛି ଓ ସେହି ପରିବର୍ତ୍ତନର ଧାରା ଏବେବି ଅବ୍ୟାହତ ରହିଛି ।

ଅତୀତରେ ସମାଜରେ କୌଣସି କ୍ରାନ୍ତିକାରୀ ପରିବର୍ତ୍ତନ ପାଇଁ ବିପ୍ଳବ, ଜନଜାଗରଣ ବା ଗଣ ଆନ୍ଦୋଳନ ସୃଷ୍ଟି ହୋଇଛି । ବିଶେଷ କରି ରାଜନୈତିକ ପରିବର୍ତ୍ତନ କ୍ଷେତ୍ରରେ ଏହା ଦୃଷ୍ଟିଗୋଚର ହୋଇଥାଏ । ରାଷ୍ଟ୍ରର ରାଜନୈତିକ ବ୍ୟବସ୍ଥା ସାମାଜିକ ନିୟନ୍ତ୍ରଣ କ୍ଷେତ୍ରରେ ପ୍ରମୁଖ ଭୂମିକା ନେଉଥିବାରୁ ଏହାର ଆଦର୍ଶ ଓ ସ୍ଥିରତା ଉପରେ ବହୁ ସମୟରେ ଗୁରୁତ୍ୱ ଆରୋପ କରାଯାଇଛି । ଯେକୌଣସି ରାଷ୍ଟ୍ରର ରାଜନୈତିକ ବିପ୍ଳବ, ଆନ୍ଦୋଳନ ଓ ସଂଘର୍ଷର କାହାଣୀ ସେ ଦେଶର ଇତିହାସର ପୃଷ୍ଠା ମଣ୍ଡନ କରିଛି । ସାମାଜିକ ପରିବର୍ତ୍ତନ ଧାରାରେ ରାଜନୈତିକ ଘଟଣା ପ୍ରବାହକୁ ସର୍ବଦା ଗୁରୁତ୍ୱ ଦିଆଯାଇଛି ।

ଏକ ରାଷ୍ଟ୍ରର ରାଜନୈତିକ ପରିବର୍ତ୍ତନ ପଶ୍ଚାତରେ ସେଠାର ତାତ୍କାଳିକ କାରଣଗୁଡ଼ିକ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ ଯଦିବା ଏହି ପରିବର୍ତ୍ତନ ପଶ୍ଚାତରେ ଅତୀତର ଘଟଣା ପ୍ରବାହ ରହିଥାଏ । ସମାଜର ଅନ୍ୟାନ୍ୟ କ୍ଷେତ୍ରରେ ପରିବର୍ତ୍ତନ ଏକ ଦୀର୍ଘ ପ୍ରସ୍ତୁତି ପ୍ରକ୍ରିୟା ମଧ୍ୟ ଦେଇ ସଂଘଟିତ ହେଉଥିବା ବେଳେ ରାଜନୈତିକ ବ୍ୟବସ୍ଥା କ୍ଷେତ୍ରରେ ବିପ୍ଳବ, ଗଣ ଆନ୍ଦୋଳନ, ଜନଜାଗରଣ ଇତ୍ୟାଦି ତୁଳନାତ୍ମକ ଭାବରେ ଅଧିକ ଆକସ୍ମିକ

ମନେହୁଏ । ସମାଜର ମୂଲ୍ୟବୋଧ, ସାଂସ୍କୃତିକ ଚେତନା ବା ଜନଗଣଙ୍କର ଜୀବନଧାରା କ୍ଷେତ୍ରରେ ପରିବର୍ତ୍ତନ ନାନା ଜଟିଳ ପ୍ରକ୍ରିୟା ଓ ପ୍ରବାହ ମଧ୍ୟରେ ରୂପ ନେଇଥାଏ । ଏହି ପରିବର୍ତ୍ତନ ଅନେକ ସମୟରେ ଧୀର ଭାବରେ ଓ ଅଲକ୍ଷ୍ୟରେ ସଂଘଟିତ ହେଉଥାଏ । ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଏହା ଏପରି ମନ୍ଥର ଗତିରେ ପରିଚାଳିତ ହେଉଥାଏ ଯେ, ଏହା ନିର୍ଦ୍ଦିଷ୍ଟ ସମୟ ଅବଧି ମଧ୍ୟରେ ଜଣାପଡ଼େ ନାହିଁ, କିନ୍ତୁ କେତେକ ପିଢ଼ିର ବ୍ୟବଧାନ ଭିତରେ ଏହା ବେଶ୍ ସ୍ପଷ୍ଟ ହୋଇଥାଏ । ଏହି ପରିବର୍ତ୍ତନ ପାଇଁ ସେପରି କୌଣସି ସଂଘବଦ୍ଧ ବା ସଚେତନ ଉଦ୍ୟମ ହୁଏତ ହୋଇନଥାଏ, ତଥାପି ସାମାଜିକ ଅଗ୍ରଗତି ଭିତରେ ଏହା ସୃଷ୍ଟି ହେଉଥାଏ । ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ, କୌଣସି ନୂତନ ଶିକ୍ଷା ବ୍ୟବସ୍ଥା, ବୈଜ୍ଞାନିକ ବା ପ୍ରଯୁକ୍ତି ବିଦ୍ୟାର ପ୍ରଭାବ ଇତ୍ୟାଦି ମଧ୍ୟ ଦେଇ ସାମାଜିକ ଗତିଶୀଳତା ସୃଷ୍ଟି ହେଉଥାଏ । ସାମାଜିକ ବିକାଶ ପ୍ରକ୍ରିୟାରେ ଏସବୁର ଯଥେଷ୍ଟ ଗୁରୁତ୍ୱ ରହିଥାଏ ।

ରାଜନୈତିକ ପରିବର୍ତ୍ତନ ବା ଅର୍ଥନୈତିକ ଅଭିବୃଦ୍ଧି ପାଇଁ ରାଷ୍ଟ୍ରରେ ଯୋଜନାବଦ୍ଧ ଭାବରେ ଉଦ୍ୟମ କରାଯାଏ । ଗୋଟିଏ ରାଜନୈତିକ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ବେଳେ ବେଳେ ରାଷ୍ଟ୍ରରେ ବିପ୍ଳବର ବି ସୂତ୍ରପାତ ହୋଇଥାଏ । ଗୋଟିଏ ପ୍ରଚଳିତ ରାଜନୈତିକ ବ୍ୟବସ୍ଥା ବଦଳାଇବା ପାଇଁ ଆଇନର ପରିସର ଭିତରେ, ଅହିଂସାତ୍ମକ ପନ୍ଥାରେ ବା ଜନଗଣଙ୍କୁ ସଚେତନ କରାଇ ପରିବର୍ତ୍ତନ କରାଯାଇପାରେ । ଅଥବା କୌଣସି ବିପ୍ଳବ ବା ହିଂସାତ୍ମକ ଅଭିବ୍ୟକ୍ତି ମଧ୍ୟ ଦେଇ ପରିବର୍ତ୍ତନ ବି ହୋଇଥାଏ । ଅର୍ଥାତ୍ ରାଜନୈତିକ ପରିବର୍ତ୍ତନ ହିଂସାତ୍ମକ ବା ଅହିଂସାତ୍ମକ ପନ୍ଥାରେ ହୋଇପାରେ । କିନ୍ତୁ ଏହା ଯେଉଁ ପନ୍ଥା ମାଧ୍ୟମରେ ହେଉ ନା କାହିଁକି ଗୋଟିଏ ପ୍ରଚଳିତ ବ୍ୟବସ୍ଥାକୁ ଦୂର କରି ଏକ ନୂତନ ବ୍ୟବସ୍ଥା ପାଇଁ ଅତ୍ୟଧିକ ସାମାଜିକ କ୍ରିୟାଶୀଳତା ଯୋଗୁଁ ଏହା ସମ୍ଭବ ହୋଇଥାଏ ।

କୌଣସି ବିପ୍ଳବ ବା ଗଣ ଆନ୍ଦୋଳନର ସୁଦୂର ପ୍ରସାରୀ ପ୍ରଭାବ ରହିଥିଲେ ବି ପ୍ରତ୍ୟେକଟି ବିପ୍ଳବ ଯେ ଏକ ମହତ୍ତର ଉଦ୍ଦେଶ୍ୟ ବା ଉତ୍କର୍ଷ ସାଧନ ଦିଗରେ ହୋଇଥାଏ ତାହା କୁହାଯାଇ ପାରିବ ନାହିଁ। ଏହା ପ୍ରଗତିଶୀଳ ବା କ୍ଷୟଶୀଳ ଲକ୍ଷ୍ୟ ପାଇଁ ହୋଇପାରେ । କୌଣସି ପରିବର୍ତ୍ତନ ଦ୍ୱାରା ସାମାଜିକ ଜୀବନ ପ୍ରବାହରେ ନୂତନ ଜୀବନଶକ୍ତି ବା ଆଦର୍ଶ ପ୍ରତିଫଳିତ ହୋଇପାରେ ଅଥବା କେତେକ କ୍ଷୟଶୀଳ ଭାବନାକୁ ଅନୁକରଣ କରାଯାଇପାରେ । କୌଣସି ରାଷ୍ଟ୍ରରେ ସାମରିକ ବିଦ୍ରୋହ ବା ସଂଘର୍ଷ ଦ୍ୱାରା ଗଣତନ୍ତ୍ରର ବିଲୋପ ହୋଇ ଏକଛତ୍ରବାଦର ପ୍ରତିଷ୍ଠା ହେବା ବା ଧର୍ମନିରପେକ୍ଷତାକୁ ପରିହାର କରି ରକ୍ଷଣଶୀଳ ମୌଳବାଦର ଅଭ୍ୟୁଦୟ ହେବାର ଦୃଷ୍ଟାନ୍ତ ବିରଳ ନୁହେଁ । ସାମାଜିକ ବିକାଶ ପଶ୍ଚାତରେ ରହିଥିବା ଗୁଣାତ୍ମକ ମୂଲ୍ୟ ଉପରେ ପରିବର୍ତ୍ତନର ଗୁଣାତ୍ମକ ମୂଲ୍ୟ ନିର୍ଭର କରେ ।

ସାମାଜିକ ବିକାଶଧାରାରେ କେତେକ ସମୟରେ କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ଯୋଗୁଁ ପରିବର୍ତ୍ତନ ତ୍ୱରାନ୍ୱିତ ହୋଇଥାଏ । ପ୍ରଚଳିତ ବ୍ୟବସ୍ଥା, ଚଳଣି, ମୂଲ୍ୟବୋଧ ଓ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଅନ୍ତର୍ନିହିତ ଅନ୍ୟାୟକୁ ସେମାନେ ଅନୁଭବ କରି ନୂତନ ଆଦର୍ଶର ସୂତ୍ରପାତ କରନ୍ତି । ସୈଦ୍ଧାନ୍ତିକ ସ୍ତରରେ ସେମାନେ ନୂଆ ବିଚାର ଦେଇ ସାମାଜିକ ସମ୍ବନ୍ଧକୁ ନୀତିନିଷ୍ଠ କରିବାକୁ ପ୍ରଯତ୍ନ କରନ୍ତି । ପ୍ରଚଳିତ ବ୍ୟବସ୍ଥାଦ୍ୱାରା ସାମାଜିକ ନ୍ୟାୟ ବିଡ଼ମ୍ବିତ ହେଉଥିବା ସେମାନେ ଦର୍ଶାନ୍ତି । ସେମାନଙ୍କର ପ୍ରଦତ୍ତ ଆଦର୍ଶଚୟକୁ ସାମାଜିକ ଶ୍ରେୟ ଭାବରେ ଗ୍ରହଣ କରିବାଦ୍ୱାରା ସାମାଜିକ ସମ୍ବନ୍ଧ ଆଦର୍ଶଭିତ୍ତିକ ହୋଇପାରିବ ବୋଲି ବୈଚାରିକ ସ୍ତରରେ ସେମାନେ ନୂଆ ଚିନ୍ତନର ସୂତ୍ରପାତ କରନ୍ତି । ପ୍ଲେଟୋ, ମାର୍କସ୍ ବା ଗାନ୍ଧୀଙ୍କ ପରି ମନୀଷୀଗଣ ସ୍ୱ ସ୍ୱ ଶୈଳୀରେ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଛନ୍ତି । ସେହି ପରିକଳ୍ପନା ମଧ୍ୟ ଦେଇ ନୂତନ ସାମାଜିକ ସମ୍ବନ୍ଧ ଓ ମୂଲ୍ୟଚୟର ଭାବନା ସମାଜରେ ବିସ୍ତାର ଲାଭ କରିଛି । ଏପରିକି ସମ୍ଭାବ୍ୟ ଲକ୍ଷ୍ୟ ହାସଲ ପାଇଁ ସାମାଜିକ କ୍ରିୟାଶୀଳତା ବୃଦ୍ଧି ପାଇ ଜନ ଜାଗରଣ ସୃଷ୍ଟି ହୋଇଛି । ପରିକଳ୍ପିତ ଲକ୍ଷ୍ୟ ହାସଲ ହୋଇପାରିଲେ ସମାଜର ଗୁଣାତ୍ମକ ଅଭିବୃଦ୍ଧି ହେବ ଏବଂ ସାଧାରଣ ଜୀବନଧାରାରେ ସୁଖ, ଶାନ୍ତି ଓ ସ୍ଥିରତା ପ୍ରତିଷ୍ଠିତ ହେବ ଏହା ବିଶ୍ୱାସ କରାଯାଇଛି । ଏହି ବିଶ୍ୱାସ ଭାବାତ୍ମକ ଆବେଗ ସୃଷ୍ଟି କରିଛି ଓ ସାମାଜିକ କ୍ରିୟାଶୀଳତା ଦିଗରେ ଅଭିନିବେଶ ଯୋଗାଇଛି । ମୋଟ ଉପରେ ସାମାଜିକ ପରିବର୍ତ୍ତନ ଆନୟନରେ କେତେକ କ୍ରାନ୍ତିକାରୀ ଭାବନା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଛି ।

ନୂତନ ଆବିଷ୍କାର, ଉଦ୍ଭାବନ ବା ଜ୍ଞାନ ଆହରଣ ଦ୍ୱାରା ସମାଜରେ ମୌଳିକ ପରିବର୍ତ୍ତନ ପାଇଁ ପରିବେଶ ସୃଷ୍ଟି ହୋଇଥାଏ । ବୈଜ୍ଞାନିକ କ୍ରିୟାଶୀଳତା ଯୋଗୁଁ ଜ୍ଞାନର ପରିସର ବୃଦ୍ଧି ହେତୁ ସମାଜରେ ଦ୍ରୁମୂଳ ପରିବର୍ତ୍ତନର ସୂତ୍ରପାତ ହେବା ଏକ ଐତିହାସିକ ସତ୍ୟ ଅଟେ । ୟୁରୋପୀୟ ପୁନର୍ଜାଗରଣ ପରେ ସମାଜର ବିଭିନ୍ନ ସ୍ତରରେ ଦ୍ରୁମୂଳ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ଧର୍ମଭିତ୍ତିକ ସମାଜ ବ୍ୟବସ୍ଥା, ରାଜତନ୍ତ୍ର, ଧର୍ମଗ୍ରନ୍ଥର ଅଲଙ୍ଘନୀୟତା ନେଇ ଯେଉଁ ମାନସିକତା ଥିଲା ବୈଜ୍ଞାନିକ ଚିନ୍ତନର ଦିଗନ୍ତ ବିସ୍ତାରିତ ହୋଇଯିବା ଦ୍ୱାରା ସେସବୁର ପରିବର୍ତ୍ତନ ହେଲା । ସାମନ୍ତବାଦୀ ସମାଜ ବ୍ୟବସ୍ଥାର ପରିବର୍ତ୍ତନ ହୋଇ ବ୍ୟକ୍ତି ସ୍ୱାଧୀନତା ଓ ମାନବିକ ଅଧିକାର ନେଇ ମାନସିକତା ଆସିଲା । ରାଜତନ୍ତ୍ର ପରିବର୍ତ୍ତେ ଗଣତନ୍ତ୍ରର ଅଭ୍ୟୁଦୟ ହେଲା । ଧର୍ମୀୟ ନିୟନ୍ତ୍ରଣ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିଲା ଓ ଧର୍ମନିରପେକ୍ଷ ଦୃଷ୍ଟିଭଙ୍ଗୀ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଅଧିକରୁ ଅଧିକ ସ୍ୱୀକୃତ ହେଲା । ବିଶ୍ୱ ସଂକ୍ରାନ୍ତରେ ଧର୍ମୀୟ ଜ୍ଞାନର ଅଲଙ୍ଘନୀୟତାକୁ ଆହ୍ୱାନ ଜଣାଇ ଏ ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ କରିବାକୁ ବୈଜ୍ଞାନିକ ଚିନ୍ତନର ମୂଳଭିତ୍ତି ଭାବରେ ନିଆଗଲା । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ପଦ୍ଧତିରେ ସମଗ୍ର ପ୍ରକୃତିକୁ ଅନୁଶୀଳନ

କରି ପ୍ରକୃତିର ଅନେକ ରହସ୍ୟ ଉଦ୍‌ଘାଟିତ ହେବାକୁ ଲାଗିଲା । ଜ୍ଞାନଲାଭ ପାଇଁ ବୈଜ୍ଞାନିକ ପଦ୍ଧତି ହିଁ ନିର୍ଭରଯୋଗ୍ୟ ଭାବରେ ସ୍ୱୀକୃତ ହେଲା ଓ ଧର୍ମୀୟ ଅବବୋଧ କ୍ଷେତ୍ରରେ ଥିବା ଅନେକ ତାତ୍ତ୍ୱିକ ବିଶ୍ୱାସ ନିଷ୍ଫଳ ବୋଲି ପ୍ରମାଣିତ ହେଲା । ଫଳରେ ଜ୍ଞାନର ପରିସର ବୃଦ୍ଧିହେବା ସହିତ ସାମାଜିକ ବ୍ୟବସ୍ଥାରେ ଅନେକ ପରିବର୍ତ୍ତନ ସଂଘଟିତ ହେବାକୁ ଲାଗିଲା ।

ବିଜ୍ଞାନର ଅଗ୍ରଗତି ସହିତ ଆନୁଷଙ୍ଗିକ ପ୍ରଯୁକ୍ତି ବିଦ୍ୟାର ବିକାଶ ହେଲା । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁଳ ବିନିଯୋଗ ଯୋଗୁଁ ସମାଜର ଅର୍ଥନୈତିକ ଢାଞ୍ଚାରେ ଉଲ୍ଲେଖନୀୟ ପରିବର୍ତ୍ତନ ହେଲା । ଅତୀତର କୃଷିଭିତ୍ତିକ ଅର୍ଥନୀତି ଓ ଗ୍ରାମୀଣ ସଭ୍ୟତା ଦ୍ରୁତ ଭାବରେ ବଦଳିବାରେ ଲାଗିଲା । ଶିଳ୍ପ ସଭ୍ୟତାର ବିକାଶ ସହିତ ସମାଜରେ ନାନା ଆଲୋଡ଼ନ ସୃଷ୍ଟି ହେଲା । ଗମନାଗମନ ଓ ଯାତାୟତ ବ୍ୟବସ୍ଥାରେ ଉଲ୍ଲେଖନୀୟ ଉନ୍ନତି ଯୋଗୁଁ ସାମାଜିକ ଗତିଶୀଳତା ଓ ପାରସ୍ପରିକ ନିର୍ଭରଶୀଳତା ବୃଦ୍ଧି ପାଇବାରେ ଲାଗିଲା । ପରିଣାମ ସ୍ୱରୂପ ସଭ୍ୟତା – ସଭ୍ୟତା ଓ ସଂସ୍କୃତି - ସଂସ୍କୃତି ମଧ୍ୟରେ ନାନା ଆଦାନ ପ୍ରଦାନ ହେଲା । ଏପରିକି କାଳକ୍ରମେ ଆନ୍ତର୍ଜାତିକ ଭାବନା ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ଉଦ୍ରେକ ହେଲା । ଧର୍ମ ବା ଭାଷା କ୍ଷେତ୍ରରେ ଯେଉଁ ରୁଦ୍ଧ ମାନସିକତା ଥିଲା ସେଥିରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଲା । ଧର୍ମନିରପେକ୍ଷତା, ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ପରି ସାର୍ବଜନୀନ ମୂଲ୍ୟବୋଧଗୁଡ଼ିକ ସଂପ୍ରତି ଯେଉଁ ବୌଦ୍ଧିକ ସ୍ୱୀକୃତି ଲାଭ କରଛି ତାହା ସାମାଜିକ ଚେତନା ସ୍ତରରେ ସଂଘଟିତ ହୋଇଥିବା ପରିବର୍ତ୍ତନର ଯଥେଷ୍ଟ ସୂଚନା ଦିଏ ।

ଏ ସମ୍ବନ୍ଧେ ବିଶେଷକରି ବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ବିଦ୍ୟାକ୍ଷେତ୍ରରେ ଯେଉଁ ଚୂମୂଳ ପରିବର୍ତ୍ତନ ଆସିଛି ତାହା ଫଳରେ ଅତୀତର ସମାଜ ବ୍ୟବସ୍ଥା ଓ ଅର୍ଥନୈତିକ ସ୍ଥିତି ନାନା ଆହ୍ୱାନର ସମ୍ମୁଖୀନ ହେବାରେ ଲାଗିଛି । ଗ୍ରାମୀଣ ସଭ୍ୟତାର ବୃତ୍ତିଗୁଡ଼ିକ ଆସ୍ତେ ଆସ୍ତେ ଲୋପ ପାଇବାରେ ଲାଗିଛି । ଜନ ବିସ୍ଫୋରଣ ନେଇ ସବୁ ସ୍ତରରେ ତୀବ୍ର ପ୍ରତିଯୋଗିତା ବୃଦ୍ଧି ପାଇଛି । ଯୁଗ ଯୁଗର ଯୌଥ ପାରିବାରିକ ବ୍ୟବସ୍ଥା ପରିବର୍ତ୍ତିତ ହୋଇଯାଉନି । କର୍ମ ସଂସ୍ଥାନ ନେଇ ଅତୀତର ମାନସିକତାରେ ଯଥେଷ୍ଟ ପରିବର୍ତ୍ତନ ହୋଇଛି । ପାରିବାରିକ ବନ୍ଧନ ଆସ୍ତେ ଆସ୍ତେ ଶିଥିଳ ହୋଇଯାଉଛି । ସହର ସଭ୍ୟତା କ୍ରମବର୍ଦ୍ଧିଷ୍ଣୁ ଭାବରେ ବୃଦ୍ଧି ପାଉଛି ଓ ଗ୍ରାମଗୁଡ଼ିକ ଅବକ୍ଷୟର ସମ୍ମୁଖୀନ ହେଉଛନ୍ତି । ଭାରତବର୍ଷ ପରି ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ କର୍ମସଂସ୍ଥାନ ପାଇଁ ସଂପ୍ରତି ଚୂମୂଳ ପ୍ରତିଯୋଗିତା ଲାଗିରହିଛି । ବହୁ ଯୁବକ ଯୁବତୀ ଏହି ଅହେତୁକ ପ୍ରତିଯୋଗିତାର ସମ୍ମୁଖୀନ ହେବାଦ୍ୱାରା ନାନା ମାନସିକ ଉତ୍ତେଜନାର ଶିକାର ହେଉଛନ୍ତି । ଜୀବନର ଆବଶ୍ୟକତା ଅସମ୍ଭବ ଭାବରେ ବୃଦ୍ଧି ପାଇବାରେ ଲାଗିଛି । ବସ୍ତୁତଃ ଅର୍ଥନୈତିକ

ଅସନ୍ତୁଳନ ଜନିତ ପରିସ୍ଥିତି ସମାଜର ସୃଷ୍ଟି ହେଉଛି । ଅର୍ଥନୈତିକ ବିଭେଦ ବୃଦ୍ଧି ପାଇବାରେ ଲାଗିଛି । ସମାଜରେ ମୁଷ୍ଟିମେୟ ବ୍ୟକ୍ତି ନାନା ପ୍ରାଚୁର୍ଯ୍ୟ ଭିତରେ ରହିଥିବା ବେଳେ ଜନସଂଖ୍ୟାର ଏକ ବିଶିଷ୍ଟ ଅଂଶ ଭାରତରେ ବସ୍ତି ବା ସ୍ଲମ ଭିତରେ ରହିବାକୁ ବାଧ ହେଉଛନ୍ତି ।

ଆମ ଦେଶ ପରି ଏକ ବିକାଶଶୀଳ ରାଷ୍ଟ୍ର ସଂପ୍ରତି ଏକ ଜଟିଳ ଅବସ୍ଥା ଦେଇ ଗତି କରୁଛି । ଦେଶର ଯୁବ ଗୋଷ୍ଠୀ ମଧ୍ୟରେ ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ଅସମର୍ଥତା, ଉଚ୍ଚ ଶିକ୍ଷାର ସୁଯୋଗ ସତ୍ତ୍ୱେ କର୍ମସଂସ୍ଥାନ ନେଇ ଅନିଶ୍ଚିତତା ଓ ସମାଜର ବିଭିନ୍ନ ସ୍ତରରେ ଭୟଙ୍କର ପ୍ରତିଯୋଗିତା ଜନିତ ପରିସ୍ଥିତି ଯୋଗୁଁ ଅପରାଧ ପ୍ରବଣତା ବୃଦ୍ଧି ପାଉଛି । ଅପରାଧମୂଳକ ମନୋଭାବ ବୃଦ୍ଧି ପାଇଁ ନାନା କାରଣ ଭିତରେ ଚଳଚ୍ଚିତ୍ର, ଦୂରଦର୍ଶନର ପ୍ରଭାବ, ନିଶାଦ୍ରବ୍ୟର ବ୍ୟାପକ ପ୍ରସାର ଇତ୍ୟାଦି କାରଣ ଇନ୍ଧନ ଯୋଗାଉଛି । ପରିଣାମ ସ୍ୱରୂପ ସାମାଜିକ ଶାନ୍ତି ଓ ସ୍ଥିରତା ବିପନ୍ନ ହେବା ସହିତ ଏକ କ୍ଷୟଶୀଳ ପରିବେଶ ସୃଷ୍ଟି ହେଉଛି । ସାମାଜିକ ଅଙ୍ଗୀକାରବୋଧ ନେଇ ସଚେତନତା ସମାଜରୁ ଦ୍ରୁତ ଭାବରେ କମିବାରେ ଲାଗିଛି । ରାଜନୈତିକ ସଂଗଠନରେ କୌଣସି ଆଦର୍ଶ ନ ରହିବା ଦ୍ୱାରା ରାଷ୍ଟ୍ରୀୟ ଜୀବନଧାରାରେ ଦୁର୍ନୀତି ଏକ ସର୍ବଗ୍ରାସୀ ଭୂମିକା ନେଇଛି । ପନ୍ଥାର ପବିତ୍ରତା ନେଇ ଅନୁରାଗ ଜାତୀୟ ଚରିତ୍ରରେ ପ୍ରତିଫଳିତ ହେଉନାହିଁ । ରାଷ୍ଟ୍ରୀୟ ଜୀବନର ବିଭିନ୍ନ ସ୍ତରରେ ଦୁର୍ନୀତି ବ୍ୟାପକ ହୋଇଯିବା ଦ୍ୱାରା ଦେଶର ପ୍ରଶାସନ ଉପରୁ ଜଣେ ସାଧାରଣ ନାଗରିକ ନିଜର ବିଶ୍ୱାସ ତୁଟାଇ ଦେଉଛି । ସମାଜର ସାଧାରଣ ବ୍ୟକ୍ତି ବିଶେଷ ପ୍ରତ୍ୟେକ ସ୍ତରରେ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାଦ୍ୱାରା ସେ ବହୁ କ୍ଷେତ୍ରରେ ନିଜକୁ ଅସହାୟ ମନେକରୁଛି ଓ ଆବଶ୍ୟକ ବେଳେ ନିଜର ପ୍ରଭୁତ୍ୱକୁ ନିଜର ସାମର୍ଥ୍ୟ କ୍ଷେତ୍ରରେ ଜାହିର କରି ଅନ୍ୟକୁ ପ୍ରତାରିତ କରୁଛି । ଅନ୍ୟ ଦ୍ୱାରା ପ୍ରତାରିତ ହେବା ଓ ପ୍ରତିବଦଳରେ ଅନ୍ୟକୁ ପ୍ରତାରିତ କରିବା ଏକ ଜୀବନଧାରାରେ ପରିଣତ ହୋଇଯାଉଛି ।

ପୁନଶ୍ଚ ସାମାଜିକ ପ୍ରଭାବ ଥିବା କେତେକ ଗୋଷ୍ଠୀ ସମାଜର ବାସ୍ତବ ସମସ୍ୟାଠାରୁ ଜନଗଣଙ୍କର ଦୃଷ୍ଟିଭଙ୍ଗୀକୁ ଅପସାରିତ କରି ଅତି କୌଶଳତାର ସହ ଧର୍ମୀୟ ଭାବପ୍ରବଣତା ସୃଷ୍ଟି କରୁଛନ୍ତି । ରାଜନୈତିକ ସ୍ୱାର୍ଥସାଧନ ପାଇଁ ସାଧାରଣ ଲୋକଙ୍କର ଧର୍ମଗତ ଭାବପ୍ରବଣତାକୁ ଲକ୍ଷ୍ୟ କରି ନିରର୍ଥକ ଘଟଣାକୁ ନେଇ ଜାତୀୟ ଜୀବନରେ ଗଭୀର ଆଲୋଡ଼ନ ସୃଷ୍ଟି କରାଯାଉଛି । ଫଳରେ ବିଭିନ୍ନ ସଂପ୍ରଦାୟ ଭିତରେ ଏକ ତିକ୍ତ ଓ ଅବିଶ୍ୱାସର ବାତାବରଣ ସୃଷ୍ଟି ହେଉଛି । ଧର୍ମନିରପେକ୍ଷତାକୁ ରାଷ୍ଟ୍ରୀୟ ଆଦର୍ଶ ଭାବେ ସମ୍ବିଧାନରେ ସ୍ୱୀକୃତି ଦିଆଯାଇଥିଲେ ମଧ୍ୟ ଏହି ମୂଲ୍ୟବୋଧ ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧଶତାବ୍ଦୀ ପରେ ଆହ୍ୱାନର ସମ୍ମୁଖୀନ ହେବା ଆମ ଜାତୀୟ ଜୀବନରେ ଏକ ବିଡ଼ମ୍ବନା କହିବାକୁ ହେବ । ସାଂପ୍ରଦାୟିକତା, ମୌଳବାଦ, ସନ୍ତ୍ରାସବାଦ ଓ ଧର୍ମୀୟ ବିଚ୍ଛିନ୍ନତାବାଦର

ବିକାଶ ଜାତୀୟ ଜୀବନରେ ମୁଣ୍ଡ ଟେକିବା ଦ୍ୱାରା ପ୍ରଗତିଶୀଳ ମୂଲ୍ୟଚୟ ଅବକ୍ଷୟ ଓ ଆହ୍ୱାନର ସମ୍ମୁଖୀନ ହେଉଛି । ଦେଶର ଅଧାଅଧି ଲୋକ ନିରକ୍ଷର ରହି ଉତ୍କଟ ଦାରିଦ୍ର୍ୟର କଷାଘାତ ଭିତରେ ଜୀବନ ବଞ୍ଚୁଥିବା ବେଳେ ସମାଜରେ ଏହି ସବୁ ଭାବନାର ବିକାଶ ହେବା ଜାତୀୟ ଦୃଶ୍ୟପଟରେ ଅବକ୍ଷୟର ସୂଚନା ଦିଏ ।

ସ୍ୱାଧୀନୋତ୍ତର ଭାରତବର୍ଷରେ ବହୁ କ୍ଷେତ୍ରରେ ପ୍ରଗତି ହୋଇଥିଲେ ମଧ୍ୟ ଆମର ସାମାଜିକ ଜୀବନ ନାନା ଜଟିଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ଲାଗିଛି । ଦେଶରେ ଗଣତନ୍ତ୍ର ଶାସନ ସୁଦୃଢ଼ ହୋଇଥିଲେ ବି ଗଣତାନ୍ତ୍ରିକ ଆଚରଣ ସାମାଜିକ ଜୀବନଧାରାରେ ଆଶାନୁରୂପ ପ୍ରତିଫଳିତ ହେଉନାହିଁ । କ୍ଷମତା ଓ ରାଜନୈତିକ ପ୍ରଭାବ ଏବେବି ପ୍ରଭାବଶାଳୀ ବ୍ୟକ୍ତିଙ୍କର ନିୟନ୍ତ୍ରଣରେ ରହିଛି । ସମାଜର ବୁଦ୍ଧିଜୀବୀ ବ୍ୟକ୍ତିବିଶେଷ ରାଜନୈତିକ ବ୍ୟବସ୍ଥାଠାରୁ ଦୂରେଇ ଯିବାଦ୍ୱାରା ରାଜନୀତିରେ ଅପରାଧୀକରଣ ବୃଦ୍ଧି ପାଇବାରେ ଲାଗିଛି ।

ସାଂପ୍ରତିକ ଘଟଣା ପ୍ରବାହ ଓ ପରିସ୍ଥିତି ଦେଶର ଭବିଷ୍ୟତ ନେଇ ଏକ ନୈରାଶ୍ୟଜନକ ଚିତ୍ର ଦେବାରେ ଲାଗିଛି । ଦେଶର ସ୍ୱାଧୀନତା ପୂର୍ବରୁ ଜାତୀୟ ଜୀବନରେ ରାଷ୍ଟ୍ରନିର୍ମାଣ ପାଇଁ ଯେଉଁ ଆଶା ଓ ସ୍ୱପ୍ନ ଥିଲା ତାହା ମଳିନ ପଡ଼ିଯାଇଛି । ବ୍ରିଟିଶ ସାମ୍ରାଜ୍ୟବାଦକୁ ଲୋପ କରି ରାଜନୈତିକ ସ୍ୱାଧୀନତା ପାଇଁ ସେତେବେଳେ ଦେଶର ଅଗଣିତ ବ୍ୟକ୍ତି ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଚରମ ତ୍ୟାଗ ସ୍ୱୀକାର କରିଥିଲେ ସେହି ମନୋଭାବ ସାଂପ୍ରତିକ ସମାଜରେ ବିଲୁପ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ବ୍ୟକ୍ତିଗତ ସ୍ତରରେ କେତେକ ବ୍ୟକ୍ତି ଉଚ୍ଚ ଆଦର୍ଶ ରଖିପାଇ ପାରନ୍ତି କିନ୍ତୁ ସାମାଜିକ ଜୀବନରେ ତା'ର ସେପରି ଉଲ୍ଲେଖନୀୟ ପ୍ରଭାବ ରହି ନାହିଁ । ମୋଟାମୋଟି ଭାବରେ ଆମ ଜାତୀୟ ଜୀବନରେ ମୂଲ୍ୟବୋଧର ଅବକ୍ଷୟ ଏକ କ୍ଷୟଶୀଳ ସମାଜର ଚିତ୍ର ପ୍ରଦାନ କରୁଛି । ନୈତିକତା, ଆଦର୍ଶବୋଧ ଓ ସାମାଜିକ କର୍ତ୍ତବ୍ୟ ଯେପରି ଦ୍ରୁତ ଗତିରେ ଅବକ୍ଷୟର ସମ୍ମୁଖୀନ ହୋଇଛି ସେଥିରେ ଭବିଷ୍ୟତ ନେଇ ଏକ ନୈରାଶ୍ୟଜନକ ଚିତ୍ର ହିଁ ମିଳୁଛି ।

ଅବଶ୍ୟ କୌଣସି ରାଷ୍ଟ୍ର ସାମାଜିକ ନ୍ୟାୟ, ସମତା ବା ନୈତିକ ଉତ୍କର୍ଷ ପୂର୍ଣ୍ଣ ଭାବରେ ଲାଭ କରିପାରିବ ନାହିଁ । ରାଷ୍ଟ୍ରୀୟ ଜୀବନରେ ସର୍ବଦା ନୂଆ ନୂଆ ଆହ୍ୱାନ ସୃଷ୍ଟି ହେବା ଅସମ୍ଭବ ନୁହେଁ । ଗୋଟିଏ ସମୟରେ କେତେକ ସମସ୍ୟା ହୁଏତ ଅତି ଉତ୍କଟ ମନେ ହୋଇପାରେ । ସମସ୍ୟାକୁ ଦୂରଦୃଷ୍ଟିର ସହ ସମାଧାନ ନ କଲେ ଏହା ସଂକଟ ଜନକ ପରିସ୍ଥିତି ସୃଷ୍ଟି କରିପାରେ ଓ ଏପରିକି ଏଥିପାଇଁ ଜନଗଣଙ୍କୁ ବହୁ ମୂଲ୍ୟ ଦେବାକୁ ପଡ଼ିପାରେ । ଅବଶ୍ୟ ସମାଜରେ ଥିବା ସୃଜନଶୀଳତା ଭିତରୁ କୌଣସି ସଙ୍କଟ ଜନକ ପରିସ୍ଥିତିରେ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବା ପାଇଁ ନୂଆ ନୂଆ ବିଚାର ସୃଷ୍ଟି ହେବା ଅସମ୍ଭବ ନୁହେଁ । ତଥାପି ସାଂପ୍ରତିକ ଜୀବନ ପ୍ରବାହ କ୍ଷେତ୍ରରେ ଯେଉଁ ଘଟଣା ସକଳ

ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଏକ କ୍ଷୟଶୀଳ ଚିତ୍ର ପ୍ରଦାନ କରୁଛି ତାହାକୁ କିପରି ପ୍ରତିହତ କରାଯାଇ ପାରିବ ସେ ନେଇ ଗଭୀର ଚିନ୍ତନ ଆବଶ୍ୟକ । ଦେଶର ବୁଦ୍ଧିଜୀବୀ, ଗଣମାଧ୍ୟମ ଓ ସାମାଜିକ ସଂଗଠନ ଗୁଡ଼ିକର ଏ କ୍ଷେତ୍ରରେ ଗୁରୁ ଦାୟିତ୍ୱ ରହିଛି । ଆମ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ଓ ପ୍ରଶାସନକୁ କିପରି ଅଧିକ କାର୍ଯ୍ୟକ୍ଷମ ଓ ଦୁର୍ନୀତିମୁକ୍ତ କରାଯାଇ ପାରିବ, ଅର୍ଥନୈତିକ ଯୋଜନାଗୁଡ଼ିକ ଦେଶର ଉତ୍କଟ ଦାରିଦ୍ର୍ୟକୁ ଦୂର କରିବାରେ ସମର୍ଥ ହେବ, ଲୋକଙ୍କର ଜୀବନଧାରାରେ ଗୁଣାତ୍ମକ ପରିବର୍ତ୍ତନ ଆସିପାରିବ ଓ ସମାଜରୁ ଯେପରି ନାଗରିକ କର୍ତ୍ତବ୍ୟବୋଧ ହ୍ରାସ ପାଇବାରେ ଲାଗିଛି ତାହା ପୁନଃସ୍ଥାପିତ ହେବ ଏ ନେଇ ସବୁ ସ୍ତରରେ ଚିନ୍ତନର ଆବଶ୍ୟକତା ରହିଛି । ଏସବୁ ଜାତୀୟ ସମସ୍ୟାଗୁଡ଼ିକ ଉପରେ ମୁକ୍ତ ଆଲୋଚନା ହୋଇ ଏ କ୍ଷେତ୍ରରେ ବୌଦ୍ଧିକ ସ୍ୱଚ୍ଛତା ସୃଷ୍ଟି କରିବା ଅବଶ୍ୟମ୍ଭାବୀ ହୋଇପଡ଼ିଛି ।

ଏତଦ୍‌ବ୍ୟତୀତ ଆମର ରକ୍ଷଣଶୀଳ ଦୃଷ୍ଟିକୋଣ, ପାରଲୌକିକ ବିଶ୍ୱାସ ଓ ଜାତିଗତ ତଥା ଧର୍ମଗତ ଅନମନୀୟତା ଦୂର କରିବା ପାଇଁ ପ୍ରୟାସ ଆବଶ୍ୟକ । ସମାଜରେ ବିଚାରଶୀଳତାର ପ୍ରାଧାନ୍ୟ ବୃଦ୍ଧି ପାଇବା ସହିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ହେଲେ ସାମାଜିକ ଜୀବନରେ ସମସ୍ତ ସଂକଟର ସମାଧାନ ପାଇଁ ସୁସ୍ଥ ମାନସିକତାର ବିକାଶ ହୋଇପାରିବ । ସମାଜରେ ବିଚାରଶୀଳ ଜୀବନଦୃଷ୍ଟିର ଅଧିକରୁ ଅଧିକ ବିକାଶ ହେଲେ ଜାତୀୟ ଜୀବନର ସୁସ୍ଥ ବାତାବରଣ ଆସିପାରିବ । କାରଣ, ତା' ଦ୍ୱାରା ସମସ୍ତ ସମସ୍ୟା ଓ ସଂକଟ କ୍ଷେତ୍ରରେ ସମାଧାନ ପାଇଁ ପନ୍ଥା ବାହାରି ପାରିବ । ସୁତରାଂ ସାମାଜିକ ମନସ୍ତତ୍ତ୍ୱ ଯେତେ ଅଧିକରୁ ଅଧିକ ବିଚାରଶୀଳତା ଓ ବୈଜ୍ଞାନିକ ଦୃଷ୍ଟିକୋଣର ମହତ୍ତ୍ୱକୁ ସ୍ୱୀକୃତି ଦେବ ରାଷ୍ଟ୍ର ସେତିକି ପ୍ରଗତିଶୀଳ ଭାବରେ ବିକାଶ ଲାଭ କରିବ । ଏହାର ଅଭାବରେ ସମାଜ କ୍ଷୟଶୀଳ ହେବ ଏବଂ ଏକ କ୍ଷୟଶୀଳ ସମାଜରେ ବ୍ୟକ୍ତିଗତ ଓ ବ୍ୟଷ୍ଟିଗତ ଜୀବନ ନିରାପଦହୀନ ହୋଇପଡ଼ିବ । ସମାଜର ବୃହତ୍ତର ପରିବେଶରେ ସ୍ଥିରତା, ସଂହତି ଓ ଶୃଙ୍ଖଳା ରହିଲେ ତା'ର ପ୍ରଭାବରେ ବ୍ୟକ୍ତିଗତ ଜୀବନ ମଧ୍ୟ ଶୃଙ୍ଖଳିତ ହୋଇପାରିବ । ଏହିପରି ଏକ ସମାଜରେ ସାମାଜିକ ଲକ୍ଷ୍ୟ ହାସଲ ପାଇଁ ସୁସ୍ଥ ବାତାବରଣ ରହିପାରିବ । ପରନ୍ତୁ ବିଚାରଶୀଳତାରେ ଅବକ୍ଷୟ ଆସିଲେ ସାମାଜିକ ସଂହତି ବିପନ୍ନ ହେବ ଓ ପରିଣାମତଃ ସନ୍ତ୍ରାସବାଦଠାରୁ ଆରମ୍ଭ କରି ସାଂପ୍ରଦାୟିକତା ପରି ଦୃଷ୍ଟିଭଙ୍ଗୀ ଉଦ୍ରେକ ହେବ । ସୁତରାଂ ବିଚାରଶୀଳତାର ପ୍ରାଧାନ୍ୟକୁ ବିକାଶ କରିବା ଯେକୌଣସି ରାଷ୍ଟ୍ର ପରିପ୍ରେକ୍ଷୀରେ ଏକ ମହତ୍ତ୍ୱପୂର୍ଣ୍ଣ ସଫଳତା ଅଟେ ।

■■

# ସାମାଜିକ ନ୍ୟାୟ

''ମଣିଷ ଏକ ସାମାଜିକ ପ୍ରାଣୀ''– ଆରିଷ୍ଟଟଲଙ୍କ ଏହି ଉକ୍ତିଟି ଏକ ସ୍ୱୟଂସିଦ୍ଧ ବଚନ ପରି ଜଣାପଡ଼େ । ବିବର୍ତ୍ତନ ଧାରାରେ ମଣିଷ ସବୁଠାରୁ ଉନ୍ନତ ହେଲେ ବି ମନୁଷ୍ୟେତର ପ୍ରାଣୀଠାରୁ ମଣିଷ ଶିଶୁ ଅଧିକ ଅସହାୟ ଅଟେ । ଅନ୍ୟର ସାହାଯ୍ୟ, ଯତ୍ନ ଓ ଏକ ସାମାଜିକ ପରିବେଶ ବ୍ୟତୀତ ମଣିଷ ଶିଶୁ ବଞ୍ଚି ରହିବା ସମ୍ଭବପର ନୁହେଁ । ସୁତରାଂ ଜୈବିକ ଆବଶ୍ୟକତା ଓ ପାରସ୍ପରିକ ନିର୍ଭରଶୀଳତା ଯୋଗୁଁ ପାରିବାରିକ, ଦଳଗତ ଓ ଗୋଷ୍ଠୀଗତ ସାମାଜିକ ଜୀବନର ଅଭ୍ୟୁଦୟ ହୋଇଛି । ସାମାଜିକ ବିକାଶ ଧାରାରେ ସଂଘବଦ୍ଧ ଗୋଷ୍ଠୀ ଜୀବନରୁ ରାଷ୍ଟ୍ର ଓ ରାଷ୍ଟ୍ରସଂଘ ପରି ବୃହତ୍ତର ଅନୁଷ୍ଠାନ ମାନ ଗଢ଼ି ଉଠିଛି ।  କ୍ଷୁଦ୍ର ପରିବାରଠାରୁ ଆନ୍ତର୍ଜାତିକ ସଂଗଠନ ପର୍ଯ୍ୟନ୍ତ ପ୍ରସାରିତ ହୋଇ ଆସିଥିବା ଅନୁଷ୍ଠାନ ପଶ୍ଚାତରେ ମଣିଷର ସହଜାତ ସାମାଜିକ ପ୍ରବୃତ୍ତି ଓ ପାରସ୍ପରିକ ନିର୍ଭରଶୀଳତା ଯେ ରହିଛି ଏହା କୁହାଯାଇପାରେ । ଏହାଛଡ଼ା ସାମାଜିକ ସଂଗଠନ ପରିପ୍ରେକ୍ଷୀରେ ରାଜନୈତିକ, ଅର୍ଥନୈତିକ, ଆଇନଗତ, ସାଂସ୍କୃତିକ ବ୍ୟବସ୍ଥା ସମୂହ ଆଧୁନିକ ଜୀବନ ପ୍ରବାହ କ୍ଷେତ୍ରରେ ଅଧିକ ଗୁରୁତ୍ୱ ଲାଭ କରିଛି । ସାମାଜିକ ଓ ରାଜନୈତିକ ବ୍ୟବସ୍ଥା ସମୂହର ଦୃଢ଼ୀକରଣରୁ ସାମାଜିକ ନ୍ୟାୟ ନେଇ ସଚେତନତା ସୃଷ୍ଟି ହୋଇଛି ।

ସାମାଜିକ ନ୍ୟାୟ ପ୍ରସଙ୍ଗ ଉପରେ ଆଲୋଚନା କଲାବେଳେ ଏହାର ଦୁଇଟି ତାତ୍ପର୍ଯ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ, ଯଥା- ଆଇନ ବ୍ୟବସ୍ଥା ଓ ନୈତିକତା । ରାଜନୈତିକ ପ୍ରକ୍ରିୟାରେ ଶାସକ, ବିଧାୟକ ବା ଆଇନ ପ୍ରଣୟନ ସଂସ୍ଥା ରାଷ୍ଟ୍ର ଓ ରାଷ୍ଟ୍ରେତର ଅନୁଷ୍ଠାନ ପାଇଁ ବିଭିନ୍ନ ନୀତି, ନିୟମ ଆଦି ପ୍ରଣୟନ କରିଥାନ୍ତି । ସଂପ୍ରତି ସାମାଜିକ ସଂଗଠନର ବ୍ୟାପକତା ଓ ଜଟିଳତା ଦୃଷ୍ଟିରୁ ସାମ୍ବିଧାନିକ ବ୍ୟବସ୍ଥା ଓ ବିଧାନ ପ୍ରତ୍ୟେକ ରାଷ୍ଟ୍ର ପାଇଁ ଅପରିହାର୍ଯ୍ୟ ହେବା ଦେଖାଯାଏ । ପ୍ରତ୍ୟେକ ରାଷ୍ଟ୍ରରେ ରହିଥିବା ନାନାବିଧ ଅନୁଷ୍ଠାନ ଓ ଆନ୍ତର୍ବ୍ୟକ୍ତିକ ସାମାଜିକ ସମ୍ବନ୍ଧ ପରିପ୍ରେକ୍ଷୀରେ ବିଧାନ ଗୁଡ଼ିକ ପ୍ରଣିତ ହୋଇଥାଏ । ସେହି ବିଧାନ ଗୁଡ଼ିକ ସ୍ଥଳ ବିଶେଷରେ ନୈତିକ ଆଭିମୁଖ୍ୟ

ପୋଷଣ କରୁଥିଲେ ବି ସେଗୁଡ଼ିକ ସ୍ଥାନ, କାଳ ଓ ପରିସ୍ଥିତିରେ ପୃଥକ ହୋଇଥାଏ ଓ ସେମାନଙ୍କର ସାର୍ବିକତା ନ ଥାଏ ।

ନ୍ୟାୟ ଓ ନୈତିକତା ଅଭିନ୍ନ ବୋଲି ସମୟରେ ଗ୍ରହଣ କରାଯାଇଥାଏ । କିନ୍ତୁ ନ୍ୟାୟ ତୁଳନାରେ ନୈତିକତାର ପରିସର ବ୍ୟାପକ ମନେହୁଏ । କାରଣ କେତେକ କାର୍ଯ୍ୟର ନୈତିକ ଆଭିମୁଖ୍ୟକୁ ପ୍ରଶଂସା କରାଯାଉଥିଲେ ବି ସେଗୁଡ଼ିକୁ ଅବଶ୍ୟମ୍ଭାବୀ କର୍ତ୍ତବ୍ୟ ଭାବରେ ଗ୍ରହଣ କରାଯାଏ ନାହିଁ । ଆଇନ ମାନି ଚଳିବା ଓ ଅପରାଧ ମୂଳକ କାର୍ଯ୍ୟରୁ ନିବୃତ୍ତ ରହିବା ଆଦିକୁ ନାଗରିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରାଯାଏ । ବ୍ୟକ୍ତି ଆଇନର ଉଲଘଂନ କଲେ ବା ଅସାମାଜିକ କାର୍ଯ୍ୟରେ ସମ୍ପୃକ୍ତ ହେଲେ ରାଷ୍ଟ୍ରର ନିୟମାନୁଯାୟୀ ଦଣ୍ଡିତ ହୁଏ । ବସ୍ତୁତଃ ସମାଜର ନୀତି, ନିୟମ ଓ ରାଷ୍ଟ୍ରର ଆଇନ ମାନି ଚଳିବାକୁ ସାମାଜିକ ଜୀବନଧାରାରେ ବ୍ୟକ୍ତିକୁ ନାନା ମାଧ୍ୟମ ଦେଇ ଶିକ୍ଷା ଦିଆଯାଏ । ବ୍ୟକ୍ତି ନିଜର ନାଗରିକ ବା ନୈତିକ କର୍ତ୍ତବ୍ୟ ବିଷୟରେ ପରିବାର, ଶିକ୍ଷାନୁଷ୍ଠାନ ଓ ବୃହତ୍ତର ସାମାଜିକ ସଂଗଠନ ଜରିଆରେ ଶିକ୍ଷା କରିଥାଏ । ଏ କ୍ଷେତ୍ରରେ ସାମାଜିକ ସଚେତନତା ସମାଜର ସାଂସ୍କୃତିକ ବିକାଶ ମାଧ୍ୟମରେ ବିସ୍ତାର ଲାଭ କରିଥାଏ । ଅବଶ୍ୟ ନାଗରିକ ଶୃଙ୍ଖଳା ଓ ନୈତିକତା ଅଭିନ୍ନ ନୁହନ୍ତି ଓ ସେମାନଙ୍କ ମଧ୍ୟରେ ବୈଚାରିକ ପାର୍ଥକ୍ୟ ରହିବା ଅବଶ୍ୟମ୍ଭାବୀ ମନେହୁଏ । କାରଣ, କେତେକ କାର୍ଯ୍ୟ ପ୍ରତି ସାମାଜିକ ସ୍ୱୀକୃତି ଓ ପ୍ରଶଂସା ହୁଏତ ଥାଏ, କିନ୍ତୁ ସେସବୁକୁ ନାଗରିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରାଯାଏ ନାହିଁ କିମ୍ବା ସେସବୁ ନ କଲେ ସାମାଜିକ କର୍ତ୍ତବ୍ୟର ଉଲଘଂନ ହେବା କୁହାଯାଇ ପାରିବ ନାହିଁ । ଅର୍ଥାତ୍ ଏକ ସାମାଜିକ କର୍ତ୍ତବ୍ୟକୁ ଏକ ନୈତିକ କାର୍ଯ୍ୟ କୁହାଯାଇପାରେ କିନ୍ତୁ ପ୍ରତ୍ୟେକଟି ନୈତିକ କାର୍ଯ୍ୟକୁ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରାଯାଏ ନାହିଁ । ଜଣେ ବ୍ୟକ୍ତି କୁଷ୍ଠ ରୋଗୀଙ୍କର ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିବା ବା ନିଜର ସମସ୍ତ ସୁଖ ସମ୍ଭୋଗକୁ ବଳି ଦେଇ ଦୁସ୍ଥ ଜନଗଣଙ୍କର ଜୀବନ ଧାରଣ ମାନରେ ଉନ୍ନତି ଆଣିବାକୁ ପ୍ରଚେଷ୍ଟା କରିବା କାର୍ଯ୍ୟକୁ ମହତ କାର୍ଯ୍ୟ କୁହାଗଲେ ବି ଏହାକୁ ଏକ ସାମାଜିକ କର୍ତ୍ତବ୍ୟ ଭାବରେ ପ୍ରତ୍ୟେକ ବ୍ୟକ୍ତି କରିବାକୁ ବିଧାନ କରାଯାଇ ପାରିବ ନାହିଁ । ସୁତରାଂ ନ୍ୟାୟ ଓ ନୈତିକତା ମଧ୍ୟରେ ନିବିଡ଼ ସମ୍ବନ୍ଧ ରହୁଥିଲେ ବି ନୈତିକତାର ପରିସର ବ୍ୟାପକ ମନେହୁଏ ।

ସାମାଜିକ ନ୍ୟାୟ ପ୍ରତୀତି ବସ୍ତୁନିଷ୍ଠ ବା ବ୍ୟକ୍ତିନିଷ୍ଠ ହୋଇପାରେ । କୌଣସି ଏକ ବ୍ୟବସ୍ଥା ବା ପରମ୍ପରାକୁ ନ୍ୟାୟ ବା ଅନ୍ୟାୟପୂର୍ଣ୍ଣ ବୋଲି ମୂଲ୍ୟାୟନ କରିବା ବେଳେ ଏକ ମାନଦଣ୍ଡକୁ ସ୍ୱୀକାର କରାଯାଏ । ଏକ ବସ୍ତୁନିଷ୍ଠ ମାନଦଣ୍ଡରେ ହିଁ ସାମାଜିକ ନ୍ୟାୟ-ଅନ୍ୟାୟ ଜନିତ ପାର୍ଥକ୍ୟ କରାଯାଏ । ସେହି ମାନଦଣ୍ଡଟି କେତେଦୂର ଯଥାର୍ଥ ବା ଉପଯୋଗୀ ତାହା ଯୁକ୍ତିନିଷ୍ଠ ଆଧାର ଉପରେ ସ୍ଥିର କରାଯାଇପାରେ । ଅପରପକ୍ଷରେ କୌଣସି କ୍ରାନ୍ତିକାରୀ ବ୍ୟକ୍ତି ବା ଦାର୍ଶନିକ ପ୍ରଚଳିତ ସାମାଜିକ ବ୍ୟବସ୍ଥାରେ ରହିଥିବା

ଅନ୍ତର୍ନିହିତ ଅନ୍ୟାୟକୁ ଅନୁଭବ କରି ଏକ ନୂତନ ଆଦର୍ଶ ବ୍ୟବସ୍ଥାର ପରିକଳ୍ପନା କରିପାରନ୍ତି । ସେହି ନୂତନ ପରିକଳ୍ପନାରେ ସାମାଜିକ ନ୍ୟାୟ ଅଧିକ ସୁରକ୍ଷିତ ହୋଇପାରିବ ବୋଲି ସେ ସୂଚନା ଦେଇଥାନ୍ତି । ନିଜର ପରିକଳ୍ପିତ ସମାଜରେ ନ୍ୟାୟ, ସମତା ଓ ସାମାଜିକ ଉତ୍କର୍ଷ ସୁରକ୍ଷିତ ରହିବ ବୋଲି ସେ ବିଚାର କରନ୍ତି । ସମାଜରେ ବିଭିନ୍ନ ସମୟରେ କେତେକ ପ୍ରତିଭାଶାଳୀ ବ୍ୟକ୍ତି ସାମାଜିକ ଜୀବନ ପରିପ୍ରେକ୍ଷୀରେ ଆଦର୍ଶ ସମ୍ବନ୍ଧରେ ଚିତ୍ର ଦେଇଥାନ୍ତି । ସାମାଜିକ ଜୀବନକୁ ଉନ୍ନତ ଓ ସୁସଂହତ କରିବା ପାଇଁ ସେମାନଙ୍କର ବୈଚାରିକ ଅବଦାନ ସମାଜ ପାଇଁ ପଥ ପ୍ରଦର୍ଶକ ହୋଇଥାଏ । ସେହିପରି କୌଣସି ରାଜନୈତିକ ବା ସାମାଜିକ କ୍ରାନ୍ତି ପଶ୍ଚାତରେ ନ୍ୟାୟ ଉପରେ ବୈଚାରିକ ସିଦ୍ଧାନ୍ତ ମଧ୍ୟ ଥାଏ । ଐତିହାସିକ ପୃଷ୍ଠଭୂମିରେ ଦେଖିଲେ ରାଜନୈତିକ ବା ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ରାଷ୍ଟ୍ରରେ ବେଳେ ବେଳେ ବିପ୍ଳବ ବା ସଂସ୍କାରବାଦୀ ଆନ୍ଦୋଳନ ହୋଇଥାଏ । ପ୍ରଚଳିତ ବ୍ୟବସ୍ଥାକୁ ଅନ୍ୟାୟ ବୋଲି ବିଚାର କରିବା ଯୋଗୁଁ କେତେକ କ୍ରାନ୍ତିକାରୀ ବ୍ୟକ୍ତି ନୂତନ ବ୍ୟବସ୍ଥାର ପଥ ପ୍ରଦର୍ଶକ ହୋଇଥାନ୍ତି । ସେମାନଙ୍କ ପ୍ରଭାବରୁ ବା ସେପରି କିଛି କାରଣରୁ ସାମାଜିକ ଉଦ୍‌ବେଳନ ଦ୍ୱାରା ସମୟେ ସମୟେ ଜାତୀୟ ଦୃଶ୍ୟପଟରେ ମୌଳିକ ପରିବର୍ତ୍ତନର ସୂତ୍ରପାତ ହୋଇଥାଏ । ଅବଶ୍ୟ ସେହି ପରିବର୍ତ୍ତନ କେତେଦୂର ଗୁଣାତ୍ମକ ବା ଉତ୍କର୍ଷପୂର୍ଣ୍ଣ ତାହା ଏକ ଭିନ୍ନ ପ୍ରଶ୍ନ ଅଟେ । କିନ୍ତୁ ପ୍ରତ୍ୟେକଟି ନୂତନ ସାମାଜିକ ପ୍ରକଳ୍ପ ବା ପରିବର୍ତ୍ତନ ପାଇଁ ବିପ୍ଳବ ପଶ୍ଚାତରେ ସାମାଜିକ ନ୍ୟାୟ ନେଇ କିଛି ସିଦ୍ଧାନ୍ତ ଥାଏ ।

ସାମାଜିକ ପ୍ରବୃତ୍ତି ବ୍ୟକ୍ତିର ଏକ ସହଜାତ ସ୍ୱଭାବ ହେଲେ ବି ନ୍ୟାୟ-ସଚେତନତା ସହଜାତ ନୁହେଁ । ଶିକ୍ଷା, ବିଚାରଶୀଳତା ଓ ସାଂସ୍କୃତିକ ଚେତନାର ବିକାଶଦ୍ୱାରା ସାମାଜିକ ନ୍ୟାୟ-ଅନ୍ୟାୟ ନେଇ ଚିନ୍ତା କରିବାର ସାମର୍ଥ୍ୟ ବ୍ୟକ୍ତି ଭିତରେ ଆସିଥାଏ । ମନୁଷ୍ୟ ବା ମନୁଷ୍ୟେତର ପ୍ରାଣୀମାନଙ୍କ ଭିତରେ ସାମାଜିକ ସ୍ୱଭାବ ରହିଥିଲେ ବି ମନୁଷ୍ୟର ବିଚାରଶୀଳ ଚିନ୍ତନ ଓ ସଚେତନଶୀଳତା ଯୋଗୁଁ ସମାଜରେ ନ୍ୟାୟ-ଅନ୍ୟାୟ, ନୈତିକ-ଅନୈତିକ ଇତ୍ୟାଦି ଭାବନା ଓ ସିଦ୍ଧାନ୍ତର ଅଭ୍ୟୁଦୟ ହୋଇଛି । ବ୍ୟକ୍ତି ମର୍ଯ୍ୟାଦାବୋଧ, ସମାନତା, ମାନବିକ ଅଧିକାର ଇତ୍ୟାଦି ମୂଲ୍ୟବୋଧଗୁଡ଼ିକ ସାମାଜିକ ବିବର୍ତ୍ତନ ଧାରାରେ କେତେ କେତେ ସ୍ତର ଦେଇ ସଭ୍ୟ ଜୀବନ ଦୃଷ୍ଟି ଭାବରେ ବିକାଶ ଲାଭ କରିଛି । ସଂପ୍ରତି ଏସବୁ ମୂଲ୍ୟବୋଧ ଓ ସାମାଜିକ ନ୍ୟାୟ ନେଇ ଜାତୀୟ ଏବଂ ଏପରିକି ଆନ୍ତର୍ଜାତିକ ସ୍ତରରେ ମାନସିକତା ସୃଷ୍ଟି ହୋଇଛି । ଗଣତନ୍ତ୍ର, ସମାଜବାଦ, ଧର୍ମନିରପେକ୍ଷତା ଇତ୍ୟାଦି ଆଦର୍ଶଚୟର ଉଦ୍ଭବ ସହିତ ସାମାଜିକ ନ୍ୟାୟ ଓ ସମତା ନେଇ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଛି । ସାମାଜିକ ପରିବର୍ତ୍ତନ ଧାରାରେ ଏହିସବୁ ଆଦର୍ଶର କ୍ରମ ବିକାଶ ସହିତ ସେସବୁ ଯେ ଅଧିକରୁ ଅଧିକ ସ୍ୱୀକୃତି ଲାଭ କରିଛି ଏହା କୁହାଯାଇପାରେ ।

ରାଷ୍ଟ୍ରରେ ପ୍ରଚଳିତ ଥିବା ଆଇନ ବା ସାମାଜିକ ବ୍ୟବସ୍ଥା ଉଲଙ୍ଘନ କରିବା ଦ୍ୱାରା

ପ୍ରତ୍ୟେକ କ୍ଷେତ୍ରରେ ଯେ ନୈତିକ ମୂଲ୍ୟବୋଧର ଉଲଘଂନ ହୁଏ ଏହା କୁହାଯାଇ ପାରିବ ନାହିଁ । କାରଣ ବିଧାନ ମାନ ସ୍ଥାନ, କାଳ ଓ ପରିସ୍ଥିତି ଭେଦରେ ପରିବର୍ତ୍ତିତ ହେଉଥିବାରୁ ଓ ସେସବୁର ସାର୍ବିକତା ନ ଥିବାରୁ ଆଇନର ପରିସର ଅପେକ୍ଷା ନୈତିକତାର ପରିସର ବ୍ୟାପକ ମନେହୁଏ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ବିଧାନମାନଙ୍କୁ ଉଲ୍ଲଘଂନ କରାଯିବା ଆବଶ୍ୟକ । ପରନ୍ତୁ ସ୍ଥଳ ବିଶେଷରେ ଆଇନର ଜଟିଳତା ନେଇ ନ୍ୟାୟ ବ୍ୟାହତ ହେଉଥିଲେ ବା ପ୍ରଚଳିତ ବିଧାନ ନୈତିକ ଆଦର୍ଶ କ୍ଷେତ୍ରରେ ଅନ୍ତରାୟ ମନେ ହେଲେ ତାହାର ଉଲ୍ଲଘଂନ କରାଯାଇପାରେ । ଆଇନ ବା ବିଧାନ କ୍ଷେତ୍ରରେ ସ୍ଥଳ ବିଶେଷରେ ଏହି ଦୁର୍ବଳତା ରହିଥିଲେ ବି ସାମାଜିକ ନ୍ୟାୟ ପୃଷ୍ଠଭୂମିରେ ଏହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । କାରଣ, ଆଇନ ଦୃଷ୍ଟିରୁ ସମସ୍ତେ ସମାନ ଓ ଏହା ନିରପେକ୍ଷ ଭାବରେ ସମସ୍ତ ନାଗରିକଙ୍କ ପ୍ରତି ପ୍ରୟୋଗ ହେବା ଦରକାର । ନାଗରିକମାନଙ୍କର ମୌଳିକ ଅଧିକାରକୁ ରକ୍ଷା କରିବା ପ୍ରତି ଏହାର ପ୍ରତିବଦ୍ଧତା ଥିଲେ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଆଇନ ପ୍ରମୁଖ ଭୂମିକା ନେଇପାରେ । ନାଗରିକମାନଙ୍କର ମୌଳିକ ଅଧିକାରକୁ ସାମ୍ବିଧାନିକ ସ୍ୱୀକୃତି ଦିଆଯିବା ଦ୍ୱାରା ସାମାଜିକ ନ୍ୟାୟ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ସ୍ୱୀକୃତ ହୁଏ ।

ଅବଶ୍ୟ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ସାମ୍ବିଧାନିକ ବ୍ୟବସ୍ଥା ବା ଆଇନଗତ ସ୍ୱୀକୃତି ଯଥେଷ୍ଟ ନୁହେଁ । କାରଣ ଆନୁଷଙ୍ଗିକ ସାମାଜିକ ଚେତନା ଅଭାବରେ ସାମାଜିକ ନ୍ୟାୟ ଏକ ଔପଚାରିକ ଆଦର୍ଶ ଭାବରେ ମାତ୍ର ରହେ । ସାମାଜିକ ବାସ୍ତବତା ଓ ସାମ୍ବିଧାନିକ ବ୍ୟବସ୍ଥା ଭିତରେ ସମନ୍ୱୟ ନ ଥିଲେ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଈପ୍ସିତ ଲକ୍ଷ୍ୟ ବ୍ୟର୍ଥ ହୋଇଥାଏ । ବୃତ୍ତିଗତ, ସଂପତ୍ତିଗତ ଓ ଧର୍ମଗତ ମାନବିକ ଅଧିକାର ଇତ୍ୟାଦିକୁ ସାମ୍ବିଧାନିକ ସ୍ୱୀକୃତି ଦିଆଗଲେ ବି ଏକ ଜାତି ଭିତ୍ତିକ ବା ରକ୍ଷଣଶୀଳ ସାମାଜିକ ପରିବେଶରେ ଏସବୁ ଅଧିକାରର ବାସ୍ତବ ରୂପାୟନ କ୍ଷେତ୍ରରେ ନାନା ପ୍ରତିବନ୍ଧକ ଥାଏ । ସାମାଜିକ ମନସ୍ତତ୍ତ୍ୱ ଭିତରେ ଜାତିଗତ ବୈଷମ୍ୟ ନେଇ ମାନସିକତା ରହିଥିବା ପର୍ଯ୍ୟନ୍ତ ସମତା ଓ ବ୍ୟକ୍ତିମର୍ଯ୍ୟାଦା ପ୍ରତି ସାମାଜିକ ସ୍ୱୀକୃତି ରହେ ନାହିଁ । ଏପରିକି ସାମାଜିକ ବୈଷମ୍ୟର ଆଧାର ଉପରେ ଅର୍ଥନୈତିକ ଶୋଷଣ ତିଷ୍ଠି ରହିଥାଏ । ସେହିପରି ସାମାଜିକ ସମତା ପ୍ରତି ସାଧାରଣ ଜୀବନଧାରାରେ ସ୍ୱୀକୃତି ନ ଥିଲେ ଶୋଷଣ ଓ ଦୁର୍ବଳ ଶ୍ରେଣୀର ଅଧିକାରର ଉଲ୍ଲଘଂନ ଅନାୟାସରେ ହୋଇଥାଏ । ଏ କ୍ଷେତ୍ରରେ ବିଭିନ୍ନ କାରଣ ଥିଲେ ବି ଜନଗଣଙ୍କର ଧର୍ମଗତ ବିଶ୍ୱାସର ପ୍ରଭାବ ଗୁରୁତ୍ୱପୂର୍ଣ୍ଣ ମନେ ହୁଏ । ନିଜର ଧର୍ମୀୟ ବିଶ୍ୱାସ ଓ ସାଂସ୍କୃତିକ ପରମ୍ପରା ଦ୍ୱାରା ପରିଚାଳିତ ସାମନ୍ତବାଦୀ ଜନଗଣ ସାଧାରଣ ଜୀବନ ପ୍ରବାହରେ ବୈଷମ୍ୟ ଓ ଅସମତାକୁ ସ୍ୱୀକୃତି ଦେଇଥାନ୍ତି । ଯେଉଁଠି ଜନଗଣ ଉଚ୍ଚନୀଚ ଭାବନା, ସାମାଜିକ ବୈଷମ୍ୟ ଏବଂ ଜାତିଆଣ ମନୋଭାବକୁ ଧର୍ମୀୟ ଆବେଗରେ ପରିଚାଳିତ ହୋଇ ଗ୍ରହଣ କରିଥାନ୍ତି ଓ ଏହି ପ୍ରକାରର ମାନସିକତା

ସମାଜରେ ବ୍ୟାପକ ଭାବରେ ରହିଥାଏ ସେଠାରେ କେବଳ ସାମ୍ବିଧାନିକ ବ୍ୟବସ୍ଥା ଈପ୍ସିତ ଲକ୍ଷ୍ୟ ହାସଲ କରିପାରେ ନାହିଁ । ଶିକ୍ଷା, ମାନବିକ ମର୍ଯ୍ୟାଦା ତଥା ଗଣତାନ୍ତ୍ରିକ ଆଚରଣ ପ୍ରତି ସଚେତନତା ଅଭାବରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ସାମ୍ବିଧାନିକ ଲକ୍ଷ୍ୟ କେବଳ ଔପଚାରିକ ସ୍ତରରେ ରହିଯାଏ ।

ସୁତରାଂ ସାମାଜିକ ନ୍ୟାୟ କ୍ଷେତ୍ରରେ ଆଇନଗତ ଅବସ୍ଥା ଅପେକ୍ଷା ସାମାଜିକ ସଚେତନତାର ମହତ୍ତ୍ୱ ଅଧିକ ଅଟେ । 'ମୁଁ ସମାଜରେ ଯେଉଁ ସୁବିଧା ବା ଅଧିକାର ପାଇଁ ଇଚ୍ଛା ପୋଷଣ କରୁଛି ସମାଜର ପ୍ରତ୍ୟେକ ବ୍ୟକ୍ତି ମଧ ସେହି ସୁବିଧା ପାଇଁ ହକ୍‌ଦାର' ଦୃଷ୍ଟିକୋଣ ସମାଜର ଯେତେ ଅଧିକରୁ ଅଧିକ ଆଦୃତ ହୋଇ ସାମାଜିକ ମନସ୍ତତ୍ତ୍ୱ ଭିତରେ ସ୍ୱୀକୃତ ହୁଏ, ସାମାଜିକ ନ୍ୟାୟ ପ୍ରତିଷ୍ଠା ନେଇ ଅନୁକୂଳ ପରିବେଶ ଆସିଥାଏ । ଏହି ଦୃଷ୍ଟିଭଙ୍ଗୀଟି ସମାଜରେ ବହୁବିଧ ଅନୁଷ୍ଠାନ ଏବଂ ସଂଗଠନର ଆଭିମୁଖ୍ୟରେ ଯେତେ ଅଧିକ ପ୍ରତିଫଳିତ ହୁଏ ସାମାଜିକ ନ୍ୟାୟ ସେତେ ଅଧିକ ସୁରକ୍ଷିତ ହୋଇଥାଏ । ଜାତୀୟ ପ୍ରଗତି, ଶିକ୍ଷାନୀତି ଓ ଅର୍ଥନୈତିକ ଅଭିବୃଦ୍ଧି ଇତ୍ୟାଦି ସମସ୍ତ ଯୋଜନାର ଆଭିମୁଖ୍ୟ ଭିତରେ ସାମାଜିକ ନ୍ୟାୟ ହାସଲ ଲକ୍ଷ୍ୟ ନ ରହିଲେ ଯୋଜନାର ଲକ୍ଷ୍ୟ ପୂରଣ ହୋଇପାରେ ନାହିଁ । ସେଥିପାଇଁ ଏକ ପ୍ରଗତିଶୀଳ ରାଷ୍ଟ୍ରରେ ଜାତୀୟ ଯୋଜନାର ରୂପାୟନ କ୍ଷେତ୍ରରେ ସାମାଜିକ ନ୍ୟାୟ ହାସଲ ପ୍ରତି ଗୁରୁତ୍ୱ ଦିଆଯାଏ ।

ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଆଦର୍ଶ ପୃଷ୍ଠଭୂମିରେ ଗଣତନ୍ତ୍ର, ସମାଜବାଦ ଓ ପରାର୍ଥବାଦ (Altruism) ସାମାଜିକ ନ୍ୟାୟ ପ୍ରତିଷ୍ଠା କ୍ଷେତ୍ରରେ ଯଥେଷ୍ଟ ସୈଦ୍ଧାନ୍ତିକ ଭିତ୍ତି ଯୋଗାଇଛନ୍ତି । ଗଣତାନ୍ତ୍ରିକ ବ୍ୟବସ୍ଥାରେ ସମାଜର ପ୍ରତ୍ୟେକ ବ୍ୟକ୍ତିକୁ ସମାନ ନାଗରିକ ଅଧିକାର ସହ ଦେଶର ଶାସନ ବ୍ୟବସ୍ଥାରେ ଯେକୌଣସି ନାଗରିକର ଅଂଶ ଗ୍ରହଣକୁ ସ୍ୱୀକୃତି ଦିଆଯାଇଛି । ସମାଜବାଦ ଏକ ଅର୍ଥନୈତିକ ଆଦର୍ଶଭାବେ ସମାଜରେ ଆର୍ଥିକ ସମତାକୁ ଗୁରୁତ୍ୱ ଦେଇଛି । ଶୋଷଣ ଓ ଆର୍ଥିକ ବୈଷମ୍ୟକୁ ପ୍ରତିହତ କରି ସମାଜର ପ୍ରତ୍ୟେକ ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା ପୂରଣ ଦିଗରେ ଏହା ଆଲୋଡ଼ନ ସୃଷ୍ଟି କରିଛି । ମୁଷ୍ଟିମେୟ ବ୍ୟକ୍ତିଙ୍କର ପ୍ରାଚୁର୍ଯ୍ୟ ଓ ଅଗଣିତ ଜନଗଣଙ୍କର ସର୍ବନିମ୍ନ ଆବଶ୍ୟକତା ଅପୂରଣ ନେଇ ଯେଉଁ ପ୍ରଭେଦ ରହିଛି ତାହାକୁ ଦୂର କରିବାରେ ଏହା ବଳିଷ୍ଠ ଆହ୍ୱାନ ଯୋଗାଇଛି । ସେହିପରି ପରାର୍ଥବାଦ ଲବ୍ଧ ସୁଖ ସୁବିଧା ମଧରେ ସବୁ ଲୋକ ଯେପରି ସର୍ବାଧିକ ଆନନ୍ଦ ଉପଭୋଗ କରି ପ୍ରଗତିର ସୁଫଳ ଲାଭ କରିପାରିବେ ତାହା ଉପରେ ଗୁରୁତ୍ୱ ପ୍ରଦାନ କରିଛି । ଗଣତନ୍ତ୍ର, ସମାଜବାଦ ଓ ପରାର୍ଥବାଦ ଯଥାକ୍ରମେ ଏକଚ୍ଛତ୍ରବାଦ, ପୁଞ୍ଜିବାଦ ଓ ସାମନ୍ତବାଦ ବିରୁଦ୍ଧରେ ଆଲୋଡ଼ନ ସୃଷ୍ଟି କରିଛନ୍ତି । ଅବଶ୍ୟ ସାମାଜିକ ନ୍ୟାୟ ପ୍ରତି ସଚେତନ ଥିବା କୌଣସି ରାଷ୍ଟ୍ର ଏହି ମୂଲ୍ୟଚୟ ଗୁଡ଼ିକର ସମ୍ମିଳିତ ପ୍ରୟୋଗ କରିବା ଅପରିହାର୍ଯ୍ୟ ନୁହେଁ । କିମ୍ବା ଗୋଟିଏ ଆଦର୍ଶକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ

ଗ୍ରହଣ କରୁଥିବା ରାଷ୍ଟ୍ର ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଯେ ଅସମର୍ଥ ଏହା ମଧ୍ୟ କୁହାଯାଇ ପାରିବ ନାହିଁ । ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଅର୍ଥନୈତିକ ଆଦର୍ଶ କ୍ଷେତ୍ରରେ ସମାଜବାଦକୁ ପ୍ରତ୍ୟାଖ୍ୟାନ କରିପାରେ କିମ୍ବା ଏକ ସମାଜବାଦୀ ବ୍ୟବସ୍ଥା ଗଣତାନ୍ତ୍ରିକ ଢାଞ୍ଚାକୁ ଅସ୍ୱୀକାର କରିପାରେ । ଏକ ରାଷ୍ଟ୍ର ଯେକୌଣସି ରାଜନୈତିକ, ଅର୍ଥନୈତିକ ବା ସାଂସ୍କୃତିକ ମୂଲ୍ୟଚୟକୁ ବାସ୍ତବ ପକ୍ଷେ ଗ୍ରହଣ କରୁନା କାହିଁକି ତାହା ଜନଗଣଙ୍କର ମୌଳିକ ଅଧିକାର, ନାଗରିକଙ୍କର ସର୍ବନିମ୍ନ ଆବଶ୍ୟକତା ଓ ସମାନ ସୁବିଧା ସୁଯୋଗ ପ୍ରତି ସ୍ପର୍ଶକାତରଶୂନ୍ୟ ରହିବା ଉଚିତ ନୁହେଁ । କୌଣସି ରାଷ୍ଟ୍ର ଏପରି ଉଦାସୀନ  ରହିବା ଦ୍ୱାରା ଏହା ଏକ ଜନମଙ୍ଗଳକାରୀ ରାଷ୍ଟ୍ରର ଗୌରବ ଲାଭ କରିପାରିବ ନାହିଁ ।

ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ପରେ ଏକଛତ୍ରବାଦ, ରାଜତନ୍ତ୍ର ଓ ସାମନ୍ତବାଦ ବିରୁଦ୍ଧରେ କେତେକ ରାଷ୍ଟ୍ରରେ ବୌଦ୍ଧିକ ଆଲୋଡ଼ନ ଜରିଆରେ ଯେଉଁ ଗଣତାନ୍ତ୍ରିକ ବିଚାରଧାରାର ଉଦ୍ଭବ ହେଲା ତାହା ମଣିଷର ସାଂସ୍କୃତିକ ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ଏହି ଭାବନାର ଆଧାର ପ୍ରାଚୀନ ଗ୍ରୀକ୍ ଜୀବନଧାରାରେ ରହିଥିବା କୁହାଯାଏ । ବିଶେଷ କରି ଆଧୁନିକ ପାଶ୍ଚାତ୍ୟ ଚିନ୍ତାମାନସ ପ୍ଲେଟୋ ଓ ଆରିଷ୍ଟଟଲଙ୍କ ବିଚାରଦ୍ୱାରା ଯେ ପ୍ରଭାବିତ ଏହା କହିବା ଅସମୀଚୀନ ହେବ ନାହିଁ । ଏ ସନ୍ଦର୍ଭେ ପ୍ଲେଟୋ ଓ ଆରିଷ୍ଟଟଲ ମଣିଷ ମଣିଷ ଭିତରେ ଥିବା ଅନ୍ତର୍ନିହିତ ବୈଷମ୍ୟ ଉପରେ ଗୁରୁତ୍ୱ ଦେବା ବେଶ୍ ବ୍ୟଙ୍ଗପୂର୍ଣ୍ଣ ମନେ ହୋଇପାରେ । ଆରିଷ୍ଟଟଲଙ୍କ ମତରେ ତଥ୍ୟପରକ ଭାବରେ ମଣିଷମାନେ ପରସ୍ପରଠାରୁ ରୁଚି, ସାମର୍ଥ୍ୟ ଓ ଦକ୍ଷତା ଦୃଷ୍ଟିରୁ ଅସମାନ, ସୁତରାଂ ସମାଜରେ ସମାନ ସୁଯୋଗ ଲାଭ କରିବା ପାଇଁ ହକ୍‌ଦାର ନୁହନ୍ତି । ପ୍ରତ୍ୟେକ ବ୍ୟକ୍ତି ସମାଜକୁ ଦେଉଥିବା ଅବଦାନ ଅନୁଯାୟୀ ତା'ର ସମାଜଠାରୁ ପ୍ରାପ୍ୟ ସ୍ଥିରୀକୃତ ହେବା ଆବଶ୍ୟକ । ଯେହେତୁ ବ୍ୟକ୍ତିମାନଙ୍କର ସମାଜ ପ୍ରତି ଅବଦାନ ସମାନ ନୁହେଁ ସେ ଦୃଷ୍ଟିରୁ ବ୍ୟକ୍ତିମାନଙ୍କର ସମାଜଠାରୁ ପ୍ରାପ୍ୟ ସମାନ ହେବା ଉଚିତ ନୁହେଁ । ଏହାକୁ ଆରିଷ୍ଟଟଲ ବିତରକ ନ୍ୟାୟ (distributive justice) ବୋଲି କହିଛନ୍ତି ।

ସାମାଜିକ ପରିବେଶ ଜନିତ ପ୍ରଭାବ ଓ ଜୈବିକ ଲକ୍ଷଣଭେଦରେ ବ୍ୟକ୍ତିମାନଙ୍କର ଦକ୍ଷତା ଓ ସ୍ୱଭାବରେ ପାର୍ଥକ୍ୟ ରହିବା ଅସମ୍ଭବ ନୁହେଁ, କିନ୍ତୁ ତାକୁ ଆଧାର କରି ସୁଯୋଗ ଓ ଅଧିକାର କ୍ଷେତ୍ରରେ ବୈଷମ୍ୟକୁ ସ୍ୱୀକୃତି ଦେବା ବାଞ୍ଛନୀୟ ନୁହେଁ । ବ୍ୟକ୍ତିର ସମାଜ ପ୍ରତି ଅବଦାନ ବହୁ କାରଣ ଦ୍ୱାରା ପ୍ରଭାବିତ ହେଉଥିବାରୁ ବ୍ୟକ୍ତିର ଭୂମିକାକୁ ଯଥାର୍ଥ ମୂଲ୍ୟାୟନ କରି ତାହାର ପ୍ରାପ୍ୟକୁ ସ୍ଥିର କରିବା ସହଜ ନୁହେଁ । ବରଂ ବ୍ୟକ୍ତିର ସମୁଚିତ ବିକାଶ ପାଇଁ ରାଷ୍ଟ୍ର ଅନୁକୂଳ ସାମାଜିକ ପରିବେଶ ସୃଷ୍ଟି କରିବା ପାଇଁ ଯତ୍ନବାନ ହେବା ଦରକାର । ସେହିପରି ପ୍ରତ୍ୟେକ ବ୍ୟକ୍ତି ପାଇଁ ଶିକ୍ଷା, ଚିକିତ୍ସା, କାମ କରିବାକୁ ସୁଯୋଗ

ଓ ଜୀବନର ଅନ୍ୟାନ୍ୟ ଆବଶ୍ୟକତା ପୂରଣ ପାଇଁ ଅବକାଶ ସାମାଜିକ ପରିବେଶରେ ରହିବା ଦରକାର । ଅପରପକ୍ଷରେ ଆପରଥେଡ୍, ବର୍ଣ୍ଣବୈଷମ୍ୟ, ଅସ୍ପୃଶ୍ୟତା ବା ଜାତିପ୍ରଥା ସାମାଜିକ ନ୍ୟାୟ ଭାବନାର ସଂପୂର୍ଣ୍ଣ ପରିପନ୍ଥୀ କାରଣ ଏସବୁ ମାନବିକ ଅଧିକାରରୁ ବ୍ୟକ୍ତିକୁ ବଞ୍ଚିତ କରିଥାଏ । ଏହି ସବୁ ବ୍ୟବସ୍ଥାରେ ବ୍ୟକ୍ତିର ଜନ୍ମ ବା ବର୍ଣ୍ଣକୁ ନେଇ ତା'ର ସାମାଜିକ ଭୂମିକା ନିର୍ଣ୍ଣୟ କରାଯାଏ ଓ ସାମାଜିକ ବୈଷମ୍ୟକୁ ସ୍ୱୀକୃତି ଦିଆଯାଏ । ଏହିସବୁ ପ୍ରଥାଗୁଡ଼ିକ ସାମାଜିକ ଦାସତ୍ୱର ପ୍ରତୀକ ଓ ବସ୍ତୁତଃ ସାମାଜିକ ନ୍ୟାୟର ପରିପନ୍ଥୀ । ଯେଉଁ ସମାଜରେ ସାମାଜିକ ବୈଷମ୍ୟ ଯେତେ ଅଧିକ ସେଠାରେ ସାମାଜିକ ନ୍ୟାୟ ସେତେ ବିଡ଼ମ୍ବିତ ।

ଏକ ଜନମଙ୍ଗଳକାରୀ ରାଷ୍ଟ୍ର ସାମାଜିକ ନ୍ୟାୟ ପ୍ରତି ପ୍ରତିବଦ୍ଧ ରହିବା ଆବଶ୍ୟକ । କୌଣସି ରାଷ୍ଟ୍ର ବା ସମାଜ ଅନ୍ୟାୟ, ବୈଷମ୍ୟ ଓ ଶୋଷଣ ପ୍ରତି ଉଦାସୀନ ରହିବା ଅନୈତିକ । ଯେକୌଣସି ରାଷ୍ଟ୍ରୀୟ ଆଦର୍ଶ ପୃଷ୍ଠଭୂମିରେ ମଧ୍ୟ ସମତା, ସ୍ୱାଧୀନତା ଓ ଭ୍ରାତୃତ୍ୱ ଭାବନାକୁ ଜାତୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇ ପାରିବ । ଏହା ପ୍ରତି ପ୍ରତିବଦ୍ଧତା ସମାଜ ଓ ରାଷ୍ଟ୍ରକୁ ଉନ୍ନତ କରିବା ବେଳେ ଏହା ପ୍ରତି ଉଦାସୀନତା ଏକ କ୍ଷୟଶୀଳ ସ୍ଥିତିର ସୂଚନା ଦେଇଥାଏ । ଅବଶ୍ୟ କୌଣସି ସମାଜ ନିରଙ୍କୁଶ ଭାବରେ ସାମାଜିକ ନ୍ୟାୟ ବା ସମତା ହାସଲ କରିବା ସମ୍ଭବ ନୁହେଁ । ବିଭିନ୍ନ ସମୟରେ ସାମାଜିକ ପ୍ରବାହ କ୍ଷେତ୍ରରେ ନୂଆ ପରିସ୍ଥିତି ବା ଆହ୍ୱାନ ସୃଷ୍ଟି ହେବାର ସମ୍ଭାବନା ଥାଏ । ତଥାପି ସାମାଜିକ ଅନ୍ୟାୟ ଓ ବୈଷମ୍ୟ ବିରୁଦ୍ଧରେ ସୈଦ୍ଧାନ୍ତିକ ଓ ବ୍ୟବହାରିକ ସ୍ତରରେ ସ୍ୱର ଉଠାଇବା ଏକ ପ୍ରଗତିଶୀଳ ଭାବନାର ସ୍ୱାକ୍ଷର ବହନ କରେ ଅଥଚ ଏହା ପ୍ରତି ସ୍ପର୍ଶକାତରଶୂନ୍ୟ ରହିବା ମାନସିକ ଜଡ଼ତାର ପରିଚୟ ଦିଏ ।

■■

# ସମାଜ ଓ ନୈତିକ ପ୍ରଗତି

ନୈତିକ ଆଚରଣ ସଭ୍ୟ ଜୀବନ ଧାରାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସମାଜରେ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ ପୃଷ୍ଠଭୂମିରେ ନୈତିକ ଆଚରଣ ଆବଶ୍ୟକ ହୋଇଥାଏ । ଅର୍ଥାତ୍ ସାମାଜିକ ଜୀବନ ପରିପ୍ରେକ୍ଷୀରେ ହିଁ ନୈତିକ ଶୃଙ୍ଖଳା ଆବଶ୍ୟକ ହୁଏ । ସମାଜ, ଆନ୍ତର୍ବ୍ୟକ୍ତିକ ସଂପର୍କ ଓ ସାମାଜିକ ସଂଗଠନ ବ୍ୟତୀତ ବ୍ୟକ୍ତିର ଆଚରଣକୁ ମୂଲ୍ୟାୟନ କରିବା ଆବଶ୍ୟକ ହୁଏ ନାହିଁ । ପରନ୍ତୁ ସାମାଜିକ ଜୀବନରେ ନୈତିକ ଆଚରଣକୁ ଗୁରୁତ୍ୱ ଦିଆଯାଏ ଓ ପ୍ରତ୍ୟେକ ସମାଜରେ ନୈତିକ ଅନୁଶାସନ ପ୍ରକାଶ୍ୟରେ ବା ଅପ୍ରକାଶ୍ୟରେ ପ୍ରବର୍ତ୍ତିତ ଥାଏ । କାରଣ, ବ୍ୟକ୍ତିମାନଙ୍କର ନୈତିକ ଆଚରଣ ଉପରେ ସାମାଜିକ ସଂହତି ଓ ଶୃଙ୍ଖଳା ନିର୍ଭର କରିଥାଏ ଅଥଚ ବ୍ୟକ୍ତିମାନଙ୍କର ଅନୈତିକ ଆଚରଣରେ ସାମାଜିକ ଜୀବନର ସଂହତି ବିପନ୍ନ ହୁଏ । ଏହା ସହିତ ଏହା ମଧ୍ୟ ଏକ ଆନୁଭବିକ ସତ୍ୟ ଯେ ସାମାଜିକ ସଂହତି ସୁଦୃଢ଼ ଥିଲେ ବ୍ୟକ୍ତି ବିଶେଷ ସୁଖ ସ୍ୱାଚ୍ଛନ୍ଦ୍ୟରେ ଜୀବନ ଧାରଣ କରିପାରନ୍ତି ଅଥଚ ସାମାଜିକ ସଂହତି ଓ ଐକ୍ୟ ନଷ୍ଟ ହେଲେ ତାହା ବ୍ୟକ୍ତିର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ବିପଦ ସୃଷ୍ଟି କରିଥାଏ । ବସ୍ତୁତଃ ସାମାଜିକ ଜୀବନ ପରିପ୍ରେକ୍ଷୀରେ ନୈତିକ ଆଚରଣର ଆବଶ୍ୟକତା ଥାଏ ଓ ପ୍ରତ୍ୟେକ ସମାଜରେ ନୈତିକ ଆଚରଣକୁ ପ୍ରୋତ୍ସାହନ ଦିଆଯିବା ସମୟରେ ଅନୈତିକ ଆଚରଣରୁ ନିବୃତ୍ତ ରହିବାକୁ ବ୍ୟକ୍ତି ବିଶେଷଙ୍କୁ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ପ୍ରଭାବିତ କରାଯାଏ । ସମାଜ ସହିତ ନୈତିକତା ଏପରି ଅବିଚ୍ଛିନ୍ନ ଭାବରେ ସଂଶ୍ଳିଷ୍ଟ ହେବା ଦେଖାଯାଏ ।

ସାମାଜିକ ଜୀବନର ସୁସ୍ଥ ବିକାଶ ପାଇଁ ପ୍ରତ୍ୟେକ ସମାଜରେ ନୈତିକ ଶୃଙ୍ଖଳାକୁ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଏ । ଏକ ସୁସ୍ଥ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ସାମାଜିକ ଜୀବନର ବିକାଶ ପାଇଁ ବ୍ୟକ୍ତି ବିଶେଷଙ୍କୁ ଏହି ନୈତିକ ଶୃଙ୍ଖଳା ପ୍ରତି ଆକୃଷ୍ଟ କରିବାକୁ ଆନୁଷ୍ଠାନିକ ବା ଅଣଆନୁଷ୍ଠାନିକ ଭାବରେ ପ୍ରତ୍ୟେକ ସମାଜରେ ଉଦ୍ୟମ କରାଯାଏ । ପ୍ରତ୍ୟେକ ବ୍ୟକ୍ତି ପରିବାର, ଶିକ୍ଷାନୁଷ୍ଠାନ, ଧର୍ମାନୁଷ୍ଠାନ, ଗଣମାଧ୍ୟମ ଓ ବୃହତ୍ତର ସାମାଜିକ ପରିବେଶରୁ ନୈତିକ ଓ ସଂସ୍କୃତି ସଂପନ୍ନ ଆଚରଣ ଶିକ୍ଷା କରେ । ସମାଜରେ ପ୍ରକାଶ୍ୟରେ ବା

ଅପ୍ରକାଶ୍ୟରେ ପ୍ରବର୍ତ୍ତିତ ଥିବା ନୈତିକ ଶୃଙ୍ଖଳା ବ୍ୟକ୍ତି ବିଶେଷଙ୍କୁ ପ୍ରଭାବିତ କରିଥାଏ । ପ୍ରତ୍ୟେକ ସମାଜରେ ନାନା ପ୍ରକାରର ଦ୍ୱନ୍ଦ୍ୱ, ବୈଷମ୍ୟ ଆଦି ରହିବା ସ୍ୱାଭାବିକ ମନେହୁଏ । ଏତଦ୍ ବ୍ୟତୀତ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ କ୍ଷେତ୍ରରେ ବ୍ୟକ୍ତି ଓ ଅନୁଷ୍ଠାନ ଭିତରେ ନାନା କାରଣ ନେଇ ପାର୍ଥକ୍ୟ ବା ବିରୋଧ ସୃଷ୍ଟି ହୋଇଥାଏ । ଯେକୌଣସି ସମାଜରେ ଦ୍ୱନ୍ଦ୍ୱ, ପାର୍ଥକ୍ୟ ଓ ବୈଷମ୍ୟ ଜନିତ ନାନାବିଧ ମାନବିକ ଓ ନୈତିକ ସମସ୍ୟା ରହିବା ବା ସମୟରେ ସୃଷ୍ଟି ହେବା ଏକ ସାଧାରଣ ଘଟଣା ଅଟେ । ସଭ୍ୟତାର ବିକାଶ ସହିତ ସୃଷ୍ଟି ହେଉଥିବା ନୂତନ ପରିସ୍ଥିତି ଓ ତଦ୍‌ଜନିତ ସାମାଜିକ ଦ୍ୱନ୍ଦ୍ୱ, ବୈଷମ୍ୟ ଇତ୍ୟାଦିକୁ ଦୂର କରି ଜନଗଣଙ୍କ ଭିତରେ ସଂହତି ଓ ଶୃଙ୍ଖଳା ରକ୍ଷା ପାଇଁ ସମାଜରେ ଅବିରତ ଉଦ୍ୟମ ହେଉଥିବ । ସୁତରାଂ ସମାଜ ପାଇଁ ନୈତିକ ଆଚରଣ ସବୁ କ୍ଷେତ୍ରରେ ଓ ସବୁ ପରିସ୍ଥିତିରେ ଆବଶ୍ୟକ ହେଉଥିବ, କାରଣ ସମାଜ କେବେବି ସବୁଦିନ ପାଇଁ ନୈତିକ ପରିପୂର୍ଣ୍ଣତା ଲାଭ କରିଯିବ ନାହିଁ । ବରଂ ପ୍ରଗତିର ରଥ ଯେତିକି ଆଗକୁ ଯାଉଥିବ ପ୍ରଗତିଶୀଳ ମୂଲ୍ୟବୋଧ, ନୈତିକ ଆଚରଣ ଓ ସଂସ୍କୃତି ସଂପନ୍ନ ଦୃଷ୍ଟିଭଙ୍ଗୀ ପାଇଁ ବ୍ୟକ୍ତି ବିଶେଷଙ୍କୁ ସାମାଜିକ ଅନୁଷ୍ଠାନ ମାଧମରେ ଶିକ୍ଷା ଦିଆଯାଉଥିବ ।

ସୁତରାଂ ପ୍ରତ୍ୟେକ ସମାଜ ଯେକୌଣସି ରାଜନୈତିକ ବା ଅର୍ଥନୈତିକ ସ୍ଥିତି ଉପରେ ପ୍ରତିଷ୍ଠିତ ଥାଉ ନା କାହିଁକି ତାହା ନୈତିକ ଅନୁଶାସନ ଓ ଶୃଙ୍ଖଳା ପ୍ରତି ଉଦାସୀନ ରହିପାରିବ ନାହିଁ । କାରଣ ସମାଜରେ ନୈତିକ ଅବକ୍ଷୟ ଆସିଲେ ସାମାଜିକ ବିକାଶ ବା ଈପ୍‌ସିତ ଲକ୍ଷ୍ୟ ସାଧିତ ହେବା ସମ୍ଭବ ହୁଏ ନାହିଁ । ସୁତରାଂ ପ୍ରତ୍ୟେକ ସମାଜ ନୈତିକ ଶୃଙ୍ଖଳା ବା ଆଚରଣକୁ ଗୁରୁତ୍ୱ ଦେଇଥାଏ ଓ ସାମାଜିକ ଅପକର୍ଷତାକୁ ନିୟନ୍ତ୍ରଣ କରିବାକୁ ଉଦ୍ୟମ କରିଥାଏ ।

ସଂପ୍ରତି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଆଶାତୀତ ଅଗ୍ରଗତି ଯୋଗୁଁ ଯୁଗ ଯୁଗର କୃଷିଭିତ୍ତିକ ସମାଜ ଦ୍ରୁତ ରୂପାନ୍ତରିତ ହୋଇଯାଉଛି । ଗମନାଗମନର ପ୍ରଭୂତ ବିକାଶ, ଶିକ୍ଷାର ସାର୍ବଜନୀନ ପ୍ରସାର, ବହୁ ଦୁରାରୋଗ୍ୟ ବ୍ୟାଧିର ନିୟନ୍ତ୍ରଣ, ପ୍ରାକୃତିକ ସମ୍ପଦର ବହୁଳ ବିନିଯୋଗ, ଉତ୍ପାଦନ ବୃଦ୍ଧି ଇତ୍ୟାଦି ବିଜ୍ଞାନ ଓ କାରିଗରୀ କୌଶଳର ଅଭିବୃଦ୍ଧିରୁ ସମ୍ଭବ ହୋଇଛି । ଏହାର ପ୍ରଭାବରେ ଜୀବନ ଧାରଣର ମାନ ଗୁଣାତ୍ମକ ଭାବରେ ବୃଦ୍ଧି ପାଇବା ସହିତ ସାମାଜିକ ଆଦର୍ଶ ବହୁ ଭାବରେ ପରିବର୍ତ୍ତନ ହେବାରେ ଲାଗିଛି । ସାମନ୍ତବାଦୀ ସମାଜ ସାଂପ୍ରତିକ ଅନ୍ୱେଷାରେ ଅନୈତିକ ମନେ ହେଉଛି । ପରନ୍ତୁ ଧର୍ମ ନିରପେକ୍ଷ ଦୃଷ୍ଟିଭଙ୍ଗୀ, ସମାଜବାଦ, ବ୍ୟକ୍ତି ସ୍ୱାଧୀନତା, ଗଣତାନ୍ତ୍ରିକ ମୂଲ୍ୟବୋଧ ସମାଜରେ ସ୍ୱୀକୃତ ହେବାରେ ଲାଗିଛି । ସାମାଜିକ ଚେତନା ସ୍ତରରେ ଏପରି ଗୁଣାତ୍ମକ ଅଭିବୃଦ୍ଧି ହୋଇଥିଲେ ମଧ୍ୟ ସମାଜରେ ନାନା ପ୍ରକାରର ଅନୈତିକ କାର୍ଯ୍ୟକଳାପ ସଂପ୍ରତି ବିକାଶ ଲାଭ କରୁଛି । ସ୍ୱାର୍ଥପରତା, ଅମାନୁଷିକ କାର୍ଯ୍ୟକଳାପ, ସାଂପ୍ରଦାୟିକ ବିଦ୍ୱେଷ, ଅତ୍ୟନ୍ତ

ପ୍ରତିଯୋଗିତାମୂଳକ ମନୋଭାବ ଓ ତଦ୍‌ଜନିତ ଈର୍ଷା ଇତ୍ୟାଦି ସମାଜରେ ବୃଦ୍ଧି ପାଇବାରେ ଲାଗିଛି । ବସ୍ତୁତଃ ବଞ୍ଚିବାର ମାନରେ ଗୁଣାତ୍ମକ ଅଭିବୃଦ୍ଧି ହୋଇଥିଲେ ସୁଦ୍ଧା ମଣିଷର ନୈତିକ ଦୃଷ୍ଟିଭଙ୍ଗୀରେ ଯଥେଷ୍ଟ ପରିବର୍ତ୍ତନ ହୋଇନାହିଁ ବୋଲି ହୁଏତ କୁହାଯାଇପାରେ । ଅବଶ୍ୟ ଅତୀତର ସମାଜରେ ମଣିଷର ବୌଦ୍ଧିକ ସ୍ତର ଯାହା ଥିଲା ବର୍ତ୍ତମାନ ମଣିଷର ବୌଦ୍ଧିକ ସ୍ତର ତା' ଅପେକ୍ଷା ଯଥେଷ୍ଟ ବିକାଶ ଲାଭ କରିଛି । ପ୍ରାଚୀନ ସମାଜରେ ପ୍ରଯୁକ୍ତିବିଦ୍ୟାର ଅଗ୍ରଗତି ଯଥେଷ୍ଟ ହୋଇନଥିବାରୁ ମଣିଷର ଆବଶ୍ୟକତା ସୀମିତ ରହିଥିଲା । ଜୀବନର ସର୍ବନିମ୍ନ ଆବଶ୍ୟକତା ଭିତରେ ବ୍ୟକ୍ତି ସନ୍ତୁଷ୍ଟ ହୋଇ ରହିଥିଲା । ନିମ୍ନ ବୌଦ୍ଧିକ ସ୍ତର ଓ ସର୍ବନିମ୍ନ ଆବଶ୍ୟକତା ଭିତରେ ସନ୍ତୁଷ୍ଟ ହୋଇ ରହିଥିବା ବ୍ୟକ୍ତିମାନଙ୍କର ସମାଜରେ ଅନୈତିକ ଆଚରଣ, ଦ୍ୱେଷ, ଦ୍ୱନ୍ଦ୍ୱ ବା ପ୍ରତିଯୋଗିତା କମ୍ ହେବା ସ୍ୱାଭାବିକ ଥିଲା । ପରନ୍ତୁ ସାମ୍ପ୍ରତିକ ସମାଜରେ ବ୍ୟକ୍ତିର ବୌଦ୍ଧିକ ସ୍ତରରେ ବେଶ୍ ଉନ୍ନତି ହେବା ସହିତ ଜୀବନ ଧାରଣର ମାନରେ ଆଶାତୀତ ବିକାଶ ହେବାରୁ ବ୍ୟକ୍ତିର ଆବଶ୍ୟକତା ବହୁ ଭାବରେ ବଢ଼ିଯାଉଛି । ଏହା ସହିତ ପ୍ରାଚୀନ ସମାଜର ରୁଦ୍ଧ ବ୍ୟବସ୍ଥା ଅପେକ୍ଷା ବର୍ତ୍ତମାନର ସମାଜ ଅପେକ୍ଷାକୃତ ଭାବରେ ସହନଶୀଳ ହୋଇପାରିବା ହେତୁ ଅତୀତର ସମାଜ ଅପେକ୍ଷା ସାଂପ୍ରତିକ ସମାଜରେ ନୈତିକ ଦ୍ୱନ୍ଦ୍ୱ ଓ ଅପରାଧ ଇତ୍ୟାଦିର ସମ୍ଭାବନା ଅଧିକ ହୋଇଛି । ମଣିଷର ଆବଶ୍ୟକତା ବଢ଼ିବା ସହିତ ଜୀବନ ଓ ସାମାଜିକ ସମ୍ବନ୍ଧ ଅଧିକ ଜଟିଳ ହେବା ଏକ ସ୍ୱାଭାବିକ ଘଟଣା ପରି ମନେ ହେଉଛି । ବସ୍ତୁତଃ ଅତୀତର ସମାଜ ଅପେକ୍ଷା ସାଂପ୍ରତିକ ସମାଜରେ ନୈତିକ ଦ୍ୱନ୍ଦ୍ୱ, ଅନୈତିକ କାର୍ଯ୍ୟକଳାପ ତଥା ବିଭିନ୍ନ ଅପରାଧ ପାଇଁ ଅଧିକ ସମ୍ଭାବନା ରହୁଛି । ସର୍ବନିମ୍ନ ଆବଶ୍ୟକତା ଓ ଗୋଟିଏ ସୀମିତ ପରିବେଶରେ ରହୁଥିବା ବ୍ୟକ୍ତି ଅପେକ୍ଷା ବହୁ ଆବଶ୍ୟକତା ତଥା ବିଳାସ ସାମଗ୍ରୀ ଭିତରେ ଜୀବନକୁ ଅଧିକ ଉପଭୋଗ କରି ପାରୁଥିବା ଏକ ବ୍ୟକ୍ତି ପାଇଁ ଅନୈତିକ ହେବାର ସମ୍ଭାବନା ଅଧିକ ମନେ ହୁଏ । ସେହିପରି ପ୍ରାଚୀନ ସମାଜ ଅପେକ୍ଷା ସାଂପ୍ରତିକ ସମାଜ ଅଧିକ ଜଟିଳ ଓ ପ୍ରତିଯୋଗିତା ମୂଳକ ହୋଇଥିବା ଯୋଗୁଁ ଅଧୁନା ସମାଜରେ ନୈତିକ ଦ୍ୱନ୍ଦ୍ୱର ସମ୍ଭାବନା ଅଧିକ ଅଟେ । ସୁତରାଂ ସଭ୍ୟତାର ବିକାଶ ସହିତ ସମାଜର ନୈତିକ ଶୃଙ୍ଖଳାରେ ଅବକ୍ଷୟ ଆସିବାର ସମ୍ଭାବନା ଅଧିକ ମନେହୁଏ । ସମାଜର ଅନ୍ୟାନ୍ୟ କ୍ଷେତ୍ରରେ ଗୁଣାତ୍ମକ ଅଭିବୃଦ୍ଧି ହେଉଥିବା ସମୟରେ ନୈତିକ ଆଚରଣରେ ଯଥେଷ୍ଟ ପରିବର୍ତ୍ତନ ନ ଆସିବା ଏକ ପ୍ରହେଳିକା ପରି ହୁଏତ ପ୍ରତୀତ ହୋଇପାରେ ।

ଅବଶ୍ୟ ବ୍ୟକ୍ତି ବିଶେଷଙ୍କର ଜୀବନରେ ଅନୈତିକ କାର୍ଯ୍ୟକଳାପ ବୃଦ୍ଧି ପାଉଥିଲେ ବି ସାମାଜିକ ଚେତନା ସ୍ତରରେ ନୈତିକ ବିକାଶକୁ ଅସ୍ୱୀକାର କରିହେବ ନାହିଁ । ପ୍ରାଚୀନ ସମାଜରେ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ କ୍ଷେତ୍ରରେ ସାମାଜିକ ସଚେତନତା ଯଥେଷ୍ଟ ନ ଥିଲା । ଗୋଟିଏ ପରିବାରର ଏକକ ଭାବରେ ବ୍ୟକ୍ତିର କର୍ତ୍ତବ୍ୟବୋଧ ପାରିବାରିକ

ଜୀବନର ସୀମା ଭିତରେ ବହୁଭାବରେ ସୀମାବଦ୍ଧ ହୋଇ ରହୁଥିଲା । ବିଶେଷ କରି ଭାରତୀୟ ସମାଜ ପରି ଏକ ଜାତିଭିତ୍ତିକ ଓ ସାମନ୍ତବାଦୀ ସମାଜରେ ବ୍ୟକ୍ତିର ସାମାଜିକ ଭୂମିକା ତା'ର ଜନ୍ମରୁ ହିଁ ସ୍ଥିରୀକୃତ ହୋଇ ଯାଉଥିଲା । ଜଣେ ବଢ଼େଇର ସନ୍ତାନ ବଢ଼େଇ ହେଉଥିଲା ଓ ଜଣେ ମୋଚିର ପୁଅ କେବଳ ଜଣେ ମୋଚି ଭାବରେ ସମାଜରେ ପରିଚିତ ହେଉଥିଲା । ହୁଏତ ବ୍ୟତିକ୍ରମ ରହିଥିଲା, କିନ୍ତୁ ସମାଜର ସାଧାରଣ ସ୍ରୋତ ପାଖରେ ଏହି ବ୍ୟତିକ୍ରମ ଅତି ନଗଣ୍ୟ ଥିଲା । କିନ୍ତୁ ସାମାଜିକ ଦୃଷ୍ଟିକୋଣରେ ପରିବର୍ତ୍ତନ ସହ ଏହି ଭାବନାର ପରିବର୍ତ୍ତନ ହେଲା । ଶିକ୍ଷାର ପ୍ରସାର ଫଳରେ ବ୍ୟକ୍ତି ନିଜର ସାମର୍ଥ୍ୟ ଅନୁଯାୟୀ ନିଜର ଉତ୍କର୍ଷ ସାଧନ କରିବାରେ ଅଧିକ ସୁଯୋଗ ପାଇଲା ଏବଂ ପାରିବାରିକ ତଥା ସାମାଜିକ କଟକଣାରୁ ମୁକ୍ତ ହୋଇପାରିଲା । ନିଜର ରୁଚି ଓ ସାମର୍ଥ୍ୟ ନେଇ ସେ ସମାଜରେ ତା'ର ସ୍ଥାନ ସ୍ଥିର କରିପାରିଲା ତଥା ନିଜର ଆତ୍ମସମ୍ମାନବୋଧ ଏବଂ ବ୍ୟକ୍ତିତ୍ୱ ଜାହିର କରିବାର ଅବକାଶ ପାଇଲା । ବ୍ୟକ୍ତିର ନୈତିକ ଦୃଷ୍ଟିଭଙ୍ଗୀ ପ୍ରଥମେ ତା'ର ପାରିବାରିକ ଜୀବନର ସାମାଜିକ ସ୍ଥିତି ଉପରେ ନିର୍ଭରଶୀଳ ହୋଇଥିଲା, ପାରିବାରିକ ସ୍ତରରୁ ଏହା ସମୟାନୁକ୍ରମେ ତା'ର ଗୋଷ୍ଠୀ ବା ରାଷ୍ଟ୍ର ସ୍ତରକୁ ସଂପ୍ରସାରିତ ହେଲା । ଅର୍ଥାତ୍ ରାଷ୍ଟ୍ରୀୟ ଜୀବନର ଉତ୍କର୍ଷତା ପାଇଁ ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶକୁ ସାମାଜିକ ଲକ୍ଷ୍ୟ ଭାବରେ ଗ୍ରହଣ କରାଗଲା । ଏପରିକି ଶକ୍ତିଶାଳୀ ରାଷ୍ଟ୍ରର ଅଭ୍ୟୁଦୟ ହୋଇଥିଲେ ବି ବ୍ୟକ୍ତିକୁ ଏକ ସାଧନ ଭାବରେ ଗ୍ରହଣ କରାନଯାଇ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶକୁ ସାମାଜିକ ଶ୍ରେୟ ଭାବରେ ଗ୍ରହଣ କରାଗଲା । ସାମାଜିକ ଜୀବନଧାରାରେ ବ୍ୟକ୍ତିର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ ମନେ ହେଲା । ଜୀବନର ମୂଲ୍ୟ ନେଇ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହେଲା ।

ବ୍ୟକ୍ତିର ଜୀବନକୁ ସାମାଜିକ ଜୀବନରେ ଯେତିକି ଗୁରୁତ୍ୱ ଦିଆଗଲା ଓ ସକଳ ସାମାଜିକ ଶ୍ରେୟ ଭିତରେ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ ଯେତିକି ପ୍ରାଧାନ୍ୟ ଲାଭ କଲା, ବ୍ୟକ୍ତିର ନୈତିକ କର୍ତ୍ତବ୍ୟବୋଧ ସେତିକି ସଂପ୍ରସାରିତ ହେବାକୁ ଲାଗିଲା । ପ୍ରାଚୀନ ସମାଜରେ ବ୍ୟକ୍ତିର ନୈତିକ ଦାୟିତ୍ୱ ବା କର୍ତ୍ତବ୍ୟବୋଧ କେବଳ ପାରିବାରିକ ଜୀବନ ବା ଅତି ବେଶିରେ ଗୋଷ୍ଠୀ ବା ଜାତି ଭିତରେ ସୀମିତ ରହୁଥିଲା, କିନ୍ତୁ ବ୍ୟକ୍ତି ସାମାଜିକ ଜୀବନରେ ଯେତିକି ପ୍ରାଧାନ୍ୟ ଲାଭ କଲା, ତା'ର ଦାୟିତ୍ୱବୋଧ ସେତିକି ଅଧିକ ପ୍ରସାରିତ ହେବାକୁ ଲାଗିଲା । ସଂପ୍ରତି ବ୍ୟକ୍ତିର ନୈତିକ ଦୃଷ୍ଟିଭଙ୍ଗୀ ବା ଦାୟିତ୍ୱବୋଧ ପରିବାର ବା କ୍ଷୁଦ୍ର ଗୋଷ୍ଠୀର ସୀମା ଭିତରୁ ସଂପ୍ରସାରିତ ହୋଇ ବୃହତ୍ତର ସମାଜ ବା ରାଷ୍ଟ୍ର ସ୍ତରକୁ ଆରୋହଣ ହୋଇ ପାରିଛି । ଏପରିକି ବ୍ୟକ୍ତିର ନୈତିକ ଦାୟିତ୍ୱବୋଧ ରାଷ୍ଟ୍ର ସ୍ତରରୁ ସମଗ୍ର ମାନବ ସମାଜ ପ୍ରତି ସଂପ୍ରସାରିତ ହେବାରେ ଲାଗିଛି । କୌଣସି କାର୍ଯ୍ୟ ରାଷ୍ଟ୍ରୀୟ ଜୀବନରେ ଅନୁକୂଳ ହୋଇ ବୃହତ୍ତର ମାନବ ସମାଜର ଅପକାର କରିବାର ସମ୍ଭାବନା

ରହିଥିଲେ ବ୍ୟକ୍ତି ସେଥିରୁ ନିବୃତ୍ତ ହେବାର ମନୋଭାବ ପୋଷଣ କରିବା ମଣିଷର ନୈତିକ ଦାୟିତ୍ୱବୋଧ ସଂପ୍ରସାରଣର ପ୍ରମାଣ ଦେଇଥାଏ । ଏପରିକି ସଂପ୍ରତି ବ୍ୟକ୍ତିର ନୈତିକ କର୍ତ୍ତବ୍ୟବୋଧ ମଣିଷ ସମାଜଠାରୁ ସଂପ୍ରସାରିତ ହୋଇ ସମଗ୍ର ଜୀବଜଗତ ଓ ପ୍ରକୃତି ସ୍ତରକୁ ଉନ୍ନୀତ ହୋଇପାରିଛି । ଏହି ସଂପ୍ରସାରଣ ନୈତିକ ଚେତନା ସ୍ତରରେ ହୋଇଥିବା ଆରୋହଣର ସ୍ୱାକ୍ଷର ବହନ କରେ । ସୁତରାଂ ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ବ୍ୟକ୍ତିଗତ ଆଚରଣରେ ଅନୈତିକ କାର୍ଯ୍ୟକଳାପ ବୃଦ୍ଧି ପାଉଥିଲେ ବି ସାମଗ୍ରିକ ଭାବରେ ମଣିଷର ନୈତିକ ଚେତନା ଓ ଦାୟିତ୍ୱବୋଧ ବିକଶିତ ଓ ସଂପ୍ରସାରିତ ହେବାରେ ଲାଗିଛି । ଏହି ସଂପ୍ରସାରଣ ଜୀବନର ଏକ ସାଂସ୍କୃତିକ ଅଗ୍ରଗତି କହିଲେ ଅତ୍ୟୁକ୍ତି ହେବ ନାହିଁ । ମଣିଷର ଏହି ସାଂସ୍କୃତିକ ପ୍ରଗତି କିପରି ଅବ୍ୟାହତ ରହିଛି ତାହା ଐତିହାସିକ ପୃଷ୍ଠଭୂମିରେ ମଧ୍ୟ ବିଚାର୍ଯ୍ୟ ।

ପ୍ରାଚୀନ ସମାଜରେ ଜୀବନର ମୂଲ୍ୟାୟନ କ୍ଷେତ୍ରରେ ଶୌର୍ଯ୍ୟ, ଶାରୀରିକ ସାମର୍ଥ୍ୟ ଓ ଯୋଦ୍ଧୃଭାବକୁ ଅଧିକ ସାମାଜିକ ସ୍ୱୀକୃତି ମିଳି ପାରୁଥିଲା । ଯେଉଁମାନେ ଅଧିକ ଶାରୀରିକ ଶକ୍ତିର ପରିଚୟ ଦେଇ ପାରୁଥିଲେ ସେମାନେ ଅଧିକ ସମ୍ମାନାସ୍ପଦ ଭାବେ ଗୌରବ ପାଇ ପାରୁଥିଲେ । ନୈତିକ ଆଚରଣ ଅପେକ୍ଷା ଶାରୀରିକ ଶକ୍ତିର ପରିଚୟ ଜୀବନର ମୂଲ୍ୟାୟନ କ୍ଷେତ୍ରରେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେ ହେଉଥିଲା । ପ୍ରାଚୀନ ଗ୍ରୀସ୍ ବା ଭାରତୀୟ ସମାଜର ଅନେକ କାହାଣୀରୁ ତାହାର ପରିଚୟ ମିଳିଥାଏ । ଆମ ଦେଶର ପୁରାଣମାନଙ୍କରେ ନାରୀ ସ୍ୱୟମ୍ବର ବିଷୟରେ ଯେଉଁ ବର୍ଣ୍ଣନା ରହିଛି ସେଥିରୁ ଜ୍ଞାନ ବା ଚାରିତ୍ରିକ ବୈଶିଷ୍ଟ୍ୟର ପ୍ରତିଯୋଗିତା ପରିବର୍ତ୍ତେ ଯୋଦ୍ଧୃଭାବ ବା ସାମରିକ କୌଶଳର ପ୍ରତିଯୋଗିତାକୁ ଗୁରୁତ୍ୱ ଦିଆ ଯାଉଥିବା ଜଣାପଡ଼େ । ସେତେବେଳର ସାମାଜିକ ବ୍ୟବସ୍ଥାରେ ବଳଶାଳୀ ବ୍ୟକ୍ତିବିଶେଷ ଶ୍ରେଷ୍ଠ ପୁରୁଷର ସମ୍ମାନ ଲାଭ କରୁଥିଲେ । କିନ୍ତୁ ସାମାଜିକ ବିକାଶଧାରାରେ ଦୁଃସାହସ, ଯୋଦ୍ଧୃଭାବ ଓ ଶାରୀରିକ ସାମର୍ଥ୍ୟ ଅପେକ୍ଷା ଚାରିତ୍ରିକ ବୈଶିଷ୍ଟ୍ୟ, ସତ୍ୟବାଦିତା ବା ମାନବିକ ମୂଲ୍ୟବୋଧ ଇତ୍ୟାଦି ନୈତିକ ମୂଲ୍ୟଚୟ ଅଧିକ ସ୍ୱୀକୃତି ଲାଭ କଲା । ଏହା ସହିତ କୌଣସି କାର୍ଯ୍ୟର ନୈତିକ ମୂଲ୍ୟାୟନ ସମୟରେ କାର୍ଯ୍ୟର ପରିଣାମ ଅପେକ୍ଷା କର୍ତ୍ତାର ଉଦ୍ଦେଶ୍ୟ ଓ କାର୍ଯ୍ୟକରିବା ପଶ୍ଚାତରେ ରହିଥିବା ମନୋଭାବକୁ ଅଧିକ ଗୁରୁତ୍ୱ ଦିଆଗଲା । ବ୍ୟକ୍ତିର ମନୋଭାବର ନୈତିକ ଭିତ୍ତି ଉପରେ ତା'ର କାର୍ଯ୍ୟର ମୂଲ୍ୟାୟନ ନିର୍ଭର କଲା । ଅର୍ଥାତ୍ ସାଧ୍ୟ ଅପେକ୍ଷା ସାଧନ ହିଁ ନୈତିକ ମୂଲ୍ୟାୟନର ଭିତ୍ତି ଭାବରେ ସ୍ୱୀକୃତ ହେଲା । ବ୍ୟକ୍ତିର କର୍ତ୍ତବ୍ୟବୋଧର ସଂପ୍ରସାରଣ ସହିତ ଏହି ସବୁ କାରଣ ସମାଜରେ ନୈତିକ ଚେତନାର ଅଗ୍ରଗତି ବିଷୟରେ ସୂଚନା ଦେଇଥାଏ ।

ସେହିପରି କେତେକ ସାମାଜିକ ପରିବେଶ ଫଳରେ ସମାଜରେ ନୈତିକ ଚେତନାର ଉତ୍କର୍ଷ ସାଧିତ ହୋଇଥାଏ । ପ୍ରତ୍ୟେକ ବ୍ୟକ୍ତି ଏକ ସାମାଜିକ ଏକକ ଭାବରେ

ସମାଜରେ ପ୍ରଚଳିତ ମୂଲ୍ୟବୋଧକୁ ଗ୍ରହଣ କରି ସମାଜର ସାଧାରଣ ସ୍ରୋତରେ ନିଜକୁ ସାମିଲ କରି ନେଇଥାଏ । ଜଣେ ସାଧାରଣ ନାଗରିକ ସମାଜର ପ୍ରଚଳିତ ପରମ୍ପରା ବା ଆଦର୍ଶକୁ - ଏପରିକି ତାହା ଜୀବନ - ବିରୋଧୀ ହେଲେ ବି - ଗ୍ରହଣ କରିନେବାରେ କୌଣସି ଅନ୍ତର୍ବିରୋଧ ଅନୁଭବ କରେ ନାହିଁ । କିନ୍ତୁ ସମାଜର ପ୍ରାଜ୍ଞ ଓ ଚିନ୍ତାଶୀଳ ବ୍ୟକ୍ତି ବିଶେଷ ସାମାଜିକ ଚଳଣିକୁ ଅନୈତିକ ବୋଲି ବିଚାର କଲେ ତାହା ପରିବର୍ତ୍ତନ କରିବାକୁ ଉଦ୍ୟମ କରିଥାନ୍ତି । ଏକ ପ୍ରଚଳିତ ବ୍ୟବସ୍ଥାକୁ ବିରୋଧ କରିବା ଫଳରେ ସାମାଜିକ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥାଏ ଓ ସେହି ଦ୍ୱନ୍ଦ୍ୱ ଭିତରୁ ନୈତିକ ଚେତନାର ବିକାଶ ହୋଇଥାଏ । ଭାରତୀୟ ସମାଜ ପରିପ୍ରେକ୍ଷୀରେ ଜାତିପ୍ରଥା ଓ ତା'ର ଆନୁଷଙ୍ଗିକ ମୂଲ୍ୟଚୟ ସମାଜରେ ଦୀର୍ଘ ଦିନ ଚଳି ଆସିଥିଲା ଓ ଏବେବି ରହିଆସିଛି । କିନ୍ତୁ ସମୟାନୁକ୍ରମେ କେତେକ ସଂସ୍କାରକ ଏହି ବ୍ୟବସ୍ଥା କିପରି ଅନୈତିକ ଓ ବ୍ୟକ୍ତିର ଆତ୍ମସମ୍ମାନର ପରିପନ୍ଥୀ ତାହା ଅନୁଭବ କରି ସେନେଇ ସାମାଜିକ ସଚେତନତା ସୃଷ୍ଟି କରିବାକୁ ଉଦ୍ୟମ କରିଛନ୍ତି । ବସ୍ତୁତଃ ଯୁଗ ଯୁଗ ଧରି ଚଳି ଆସିଥିବା ଏକ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ନାନା ସାମାଜିକ ଦ୍ୱନ୍ଦ୍ୱର ସୂତ୍ରପାତ ହୋଇଛି । ଏହି ସାମାଜିକ ଦ୍ୱନ୍ଦ୍ୱ ଭିତରୁ ଜାତିପ୍ରଥା, ଅସ୍ପୃଶ୍ୟତା ଇତ୍ୟାଦି ଯେ ସୁସ୍ଥ ସାମାଜିକ ଜୀବନର ପରିପନ୍ଥୀ ଏହି ଚେତନା ସୃଷ୍ଟି ହୋଇପାରିଛି । ପରିଣାମତଃ ପ୍ରଚଳିତ ଥିବା ବ୍ୟବସ୍ଥାଟି ସଂପୂର୍ଣ୍ଣ ଭାବେ ଲୋପ ପାଇନଥିଲେ ସୁଦ୍ଧା ଏ କ୍ଷେତ୍ରରେ ରହିଥିବା ଅନମନୀୟ ମନୋଭାବ ବହୁ ଭାବରେ ପରିବର୍ତ୍ତନ ହୋଇଥିବା ଲକ୍ଷ୍ୟ କରାଯାଏ । ସୁତରାଂ ସମାଜର ନୈତିକ ଉତ୍କର୍ଷ ସାଧନ କରିବା କ୍ଷେତ୍ରରେ ସମାଜର ଚିନ୍ତାଶୀଳ ବ୍ୟକ୍ତିବିଶେଷ ଓ ସଂସ୍କାରକମାନଙ୍କର ଅବଦାନ ଏକ ପ୍ରମୁଖ ଭୂମିକା ନେଇଥାଏ ।

ସେହିପରି ସମାଜର ପରିବର୍ତ୍ତିତ ପରିସ୍ଥିତି ଯୋଗୁଁ ସମାଜର ନୈତିକ ଚେତନାର ବିକାଶ ହେବା ସମ୍ଭବପର ହୋଇଥାଏ । କୌଣସି ନୂତନ ଆବିଷ୍କାର ବା ଉଦ୍ଭାବନ ଯୋଗୁଁ ସମାଜର ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଆସିଲେ ତା'ର ପରିଣାମ ସ୍ୱରୂପ ସମାଜରେ ନୈତିକ ପରିବର୍ତ୍ତନ ମଧ୍ୟ ସଂଘଟିତ ହୋଇଥାଏ । ସମାଜରେ ଅର୍ଥନୈତିକ ବ୍ୟବସ୍ଥାରେ ପରିବର୍ତ୍ତନ ଫଳରେ ନାରୀ ସମାଜ ପ୍ରତି ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହେଲା । ପ୍ରାଚୀନ ସମାଜରେ ନାରୀମାନେ ପୁରୁଷମାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇ ରହିବା ଫଳରେ ସେମାନଙ୍କର ସ୍ୱାଧୀନତା ସଙ୍କୁଚିତ ହୋଇ ରହିଥିଲା, ଅଥଚ ସମାଜର ଅର୍ଥନୈତିକ ପରିବର୍ତ୍ତନ ଯୋଗୁଁ ସେମାନେ ସ୍ୱାବଲମ୍ବୀ ହେବାର ଅବକାଶ ପାଇବା ଦ୍ୱାରା ସେମାନଙ୍କର ସ୍ୱାଧୀନତା ଓ ଆତ୍ମ ସମ୍ମାନବୋଧ ସୃଷ୍ଟି ହେଲା । ସେହିପରି କେତେକ ସମାଜରେ ପ୍ରଚଳିତ ରହିଆସିଥିବା ଦାସତ୍ୱ ବା ଗୋତି ପ୍ରଥା ସମାଜର ଅର୍ଥନୈତିକ ଓ ରାଜନୈତିକ ପରିବର୍ତ୍ତନ ଯୋଗୁଁ ଲୋପ ପାଇଲା ଓ ବ୍ୟକ୍ତିର ମର୍ଯ୍ୟାଦାବୋଧ ବୃଦ୍ଧି ହେଲା ।

ବସ୍ତୁତଃ ସମାଜର ଅନ୍ୟାନ୍ୟ ପରିବର୍ତ୍ତନର ପ୍ରଭାବରେ ସମାଜର ନୈତିକ ଉତ୍କର୍ଷ ମଧ୍ୟ ସାଧିତ ହୋଇଥାଏ ।

ଏହା ସହିତ ସମାଜରେ କେତେକ କ୍ରାନ୍ତିକାରୀ ବ୍ୟକ୍ତି ଆଦର୍ଶ ସମାଜର ପରିକଳ୍ପନା କରିଥାନ୍ତି । ପ୍ରଚଳିତ ସାମାଜିକ ବ୍ୟବସ୍ଥା ଭିତରେ ସେମାନେ ଅପୂର୍ଣ୍ଣତା ଅନୁଭବ କରି ଆଦର୍ଶ ବ୍ୟବସ୍ଥା ପାଇଁ ସୈଦ୍ଧାନ୍ତିକ ଭାବନା ସୃଷ୍ଟି କରନ୍ତି । କେଉଁ ପ୍ରକାରର ସାମାଜିକ ବ୍ୟବସ୍ଥା ଭିତରେ ଜୀବନର ଗୁଣାତ୍ମକ ଉତ୍କର୍ଷ ସାଧିତ ହୋଇପାରିବ ସେ ନେଇ ଦିଗଦର୍ଶନ ଦିଅନ୍ତି । ସେହି ଚିନ୍ତାଶୀଳ ମନୀଷୀଙ୍କର ଆଦର୍ଶକୁ ଶ୍ରେୟ ଭାବରେ ସମୟାନୁକ୍ରମେ ସମାଜରେ ଗ୍ରହଣ କରାଯାଏ ଓ ତା' ଫଳରେ ନୈତିକ ଭାବନାର ଉନ୍ମେଷ ହୋଇଥାଏ । ନୂତନ ସାମାଜିକ ପ୍ରକଳ୍ପକୁ ଶ୍ରେୟ ଭାବରେ ଗ୍ରହଣ କରିବା ଦ୍ୱାରା ନୈତିକ ଭାବନା କ୍ଷେତ୍ରରେ ନୂତନ ଆଲୋଡ଼ନ ଆସିଥାଏ । ସେହିପରି କେତେକ ବୌଦ୍ଧିକ ଉନ୍ମେଷଦ୍ୱାରା ନୈତିକ ଦୃଷ୍ଟିକୋଣରେ ମଧ୍ୟ ପରିବର୍ତ୍ତନ ହୋଇଥାଏ । ବୌଦ୍ଧିକ ଅନ୍ୱେଷାର ଅଭିବୃଦ୍ଧି ସହିତ ମଣିଷ ଅଧିକ ବିଚାରଶୀଳ ହୋଇଥାଏ । ଗଭୀର ବୌଦ୍ଧିକ ଅନୁଶୀଳନ ଦ୍ୱାରା ଜୀବନର ଶ୍ରେୟ ସମ୍ବନ୍ଧରେ ବା ସାମାଜିକ ସଂପର୍କ କ୍ଷେତ୍ରରେ ନୂତନ ସିଦ୍ଧାନ୍ତମାନ ଆସିଥାଏ । ବୌଦ୍ଧିକ ଅଗ୍ରଗତି ସହିତ ନୈତିକ ଚେତନାର ଅଭିବୃଦ୍ଧି ହୋଇଥାଏ ।

ମଣିଷ ସମାଜର ନାନା ସାଂସ୍କୃତିକ ଉତ୍‌ଥାପତନ ସତ୍ତ୍ୱେ ସାମାଜିକ ସ୍ତରରେ ନୈତିକ ଚେତନାର ଅଭିବୃଦ୍ଧିକୁ ଅସ୍ୱୀକାର କରିହେବ ନାହିଁ । ଅବଶ୍ୟ ସମାଜର ସବୁ ସମୟରେ ନୈତିକ ଦ୍ୱନ୍ଦ୍ୱ ଓ ସ୍ଖଳନ ରହିଥିଲା ଓ ସଂପ୍ରତି ମଧ୍ୟ ରହିଛି । ହୁଏତ ସଂପ୍ରତି ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ବ୍ୟକ୍ତି ଜୀବନରେ ଏହି ସ୍ଖଳନ ଅଧିକ ମନେ ହୋଇପାରେ । ତା ସତ୍ତ୍ୱେ ମାନସିକ ସ୍ତରରେ ନୈତିକ ବୋଧଶକ୍ତିର ଯେ ବିକାଶ ନ ହୋଇଛି ଏହା କହିହେବ ନାହିଁ । ସଭ୍ୟତା ଯେତିକି ଆଗକୁ ଯାଉଥିବ ନୂଆ ନୂଆ ଆହ୍ୱାନ ଓ ଦ୍ୱନ୍ଦ୍ୱ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ସୃଷ୍ଟି ହେଉଥିବ । ଏହି ଆହ୍ୱାନ ଯୋଗୁଁ ମଣିଷର ଅନ୍ତର୍ନିହିତ ସୃଜନଶୀଳତା କ୍ଷେତ୍ରରୁ ନୂତନ ଦିଗନ୍ତର ସନ୍ଧାନ ମିଳୁଥିବ । ଏହି ସୃଜନଶୀଳତା ଭିତରୁ ନୈତିକ ପ୍ରେରଣା ପାଇଁ ଅଭିନିବେଶ ଆସୁଥିବ । ବୈଚାରିକ ସ୍ତରରେ ଗ୍ରହଣଯୋଗ୍ୟ ହେଉଥିବା ନୀତି ଓ ଆଦର୍ଶ ବାସ୍ତବ ଜୀବନରେ କିପରି ପ୍ରତିଫଳିତ ହେବ ସେ ନେଇ ସଚେତନ ପଦକ୍ଷେପ ଦରକାର । ଏହି ପରିପ୍ରେକ୍ଷୀରେ ସାମାଜିକ ସଂଗଠନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ବୃହତ୍ତର ସାମାଜିକ ପରିବେଶରେ ନୈତିକ ମୂଲ୍ୟଚୟ ପ୍ରତି ସ୍ୱୀକୃତି ରହିଥିଲେ ତାହା ବ୍ୟକ୍ତିର ମାନସିକତାକୁ ଅକ୍ଳେଶରେ ପ୍ରଭାବିତ କରିଥାଏ । ବସ୍ତୁତଃ ବ୍ୟକ୍ତିମାନଙ୍କର ଦୃଷ୍ଟିଭଙ୍ଗୀକୁ ମାର୍ଜିତ ଓ ନୀତିପୂର୍ଣ୍ଣ କରିବାରେ ସାମାଜିକ ଅନୁଷ୍ଠାନମାନଙ୍କର ଭୂମିକା ମହତ୍ତ୍ୱ ପୂର୍ଣ୍ଣ ମନେହୁଏ ।

■■

# ବିଜ୍ଞାନ ଓ ସାମାଜିକ ପ୍ରଗତି

ସଂପ୍ରତି ସମାଜର ସକଳ ସ୍ତରରେ ଯେଉଁ ଅଭୂତପୂର୍ବ ପରିବର୍ତ୍ତନ ସଂଘଟିତ ହେବାରେ ଲାଗିଛି ତାହା ବହୁ ଭାବରେ ବିଜ୍ଞାନ ଓ ତଦାଶ୍ରୟୀ ଗଢ଼ି ଉଠୁଥିବା ସାଂସ୍କୃତିକ ପ୍ରବାହର ପରିଣାମ କହିଲେ ଅତ୍ୟୁକ୍ତି ହେବନାହିଁ । ବୈଜ୍ଞାନିକ କ୍ରିୟାଶୀଳତା ଓ ତଦ୍‌ଜନିତ ସୃଷ୍ଟ ପ୍ରଯୁକ୍ତିବିଦ୍ୟା (ଟେକ୍‌ନୋଲୋଜି) ପ୍ରୟୋଗରେ ଜୀବନ ଧାରଣର ମାନ ବହୁ ଭାବରେ ଉନ୍ନତ ହେବା ସହିତ ସମାଜର ଅର୍ଥନୀତି, ରାଜନୀତି, ମୂଲ୍ୟବୋଧ ଇତ୍ୟାଦି ଦ୍ରୁତ ପରିବର୍ତ୍ତନ ହେବାରେ ଲାଗିଛି । ଗତ କେତେ ଶତାବ୍ଦୀ ଭିତରେ ବୈଜ୍ଞାନିକ ଗବେଷଣା ଅଭୂତପୂର୍ବ ସାଫଲ୍ୟ ଲାଭ କରିବା ଯୋଗୁଁ ତାହାର ପ୍ରୟୋଗରେ ଅତୀତର କୃଷି ଭିତ୍ତିକ ସଭ୍ୟତା ବୈଷୟିକ ସଭ୍ୟତାରେ ରୂପାନ୍ତରିତ ହେବାରେ ଲାଗିଛି । ପ୍ରକୃତିର ସକଳ ବିଭାଗରେ ଆନୟନ ହେଉଥିବା ବହୁମୁଖୀ ଗବେଷଣା ଜ୍ଞାନର ପରିସରକୁ ଆଜି ବହୁ ପ୍ରସାରିତ କରିଦେଇଛି । ଏବଂ ପରିଣାମରେ ଗମନାଗମନର ପ୍ରଭୂତ ବିକାଶ, କ୍ରମ ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଦୂରୀକରଣ, ବହୁ ଦୁରାରୋଗ୍ୟ ବ୍ୟାଧିର ନିରାକରଣ, ପ୍ରାକୃତିକ ବିପର୍ଯ୍ୟୟର ନିୟନ୍ତ୍ରଣ, ଶିକ୍ଷାର ବ୍ୟାପକ ପ୍ରସାର ଇତ୍ୟାଦି ସମ୍ଭବପର ହୋଇଛି । ଅବଶ୍ୟ ଜୀବନର ମାନ ଆଜି ବହୁ ଉନ୍ନତ ହେବା ସତ୍ତ୍ୱେ ବି ଅନ୍ତରାଳରେ ବହୁବିଧ ସମସ୍ୟା ଯଥା ଶକ୍ତି ସଙ୍କଟ, ଆଣବିକ ଯୁଦ୍ଧର ସମ୍ଭାବନା ଜନିତ ବିଭୀଷିକା, ପରିବେଶ ପ୍ରଦୂଷଣ ଭଳି ବହୁ ସମସ୍ୟା ମୁଣ୍ଡ ଟେକିଛି ଓ ଏପରିକି ମଣିଷର ସଭ୍ୟତା ଓ ସ୍ଥିତି ପ୍ରତି ଭୟଙ୍କର ବିପଦ ସୃଷ୍ଟି କରିଛି । ଏ ସତ୍ତ୍ୱେ ବି ବିଜ୍ଞାନର ବିକାଶଧାରା ଓ ବୈଜ୍ଞାନିକ ଗବେଷଣାକୁ ସୀମିତ କରିବାର ସମ୍ଭାବନା ନାହିଁ ବରଂ ସେହି ବୈଜ୍ଞାନିକ ପଦ୍ଧତିରେ ସୃଷ୍ଟ ସମସ୍ୟାବଳୀର ସମାଧାନ ଯେ କରିହେବ ଏହା ମଧ୍ୟ ବିଶ୍ୱାସ କରାଯାଉଛି । ବସ୍ତୁତଃ ସଂପ୍ରତି ସମାଜର ସକଳ ବିକାଶଧାରା ସହିତ ବିଜ୍ଞାନ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ ହେବା ଅନସ୍ୱୀକାର୍ଯ୍ୟ ।

ବିଜ୍ଞାନର ବିକାଶ ସାମାଜିକ ପ୍ରଗତି ଓ ଜନକଲ୍ୟାଣ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହେବା ଓ ପରିଣାମତଃ ବିଜ୍ଞାନର ସମୃଦ୍ଧି ସାଧନ ପାଇଁ ସଚେତନତା ସୃଷ୍ଟି ହେବା ମଣିଷ ସମାଜର ଦୀର୍ଘ ଇତିହାସରେ ବହୁଦିନର ଘଟଣା ନୁହେଁ । କୃଷିକରି ଜୀବନ ଧାରଣ

କରିବାର ଜ୍ଞାନ ଲାଭ ପରେ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହେଲା ଓ ସଭ୍ୟତାର କ୍ରମ ବିକାଶ ସହିତ ସାମାଜିକ ସଂଗଠନର ଦୃଢ଼ୀକରଣ, ଭାଷାର ଯଥେଷ୍ଟ କ୍ରମ ବିକାଶ ଏବଂ ସମାଜର ଆବଶ୍ୟକତା ପୂରଣ କରିବାରେ ନୂଆ ନୂଆ କୌଶଳର ଆବିଷ୍କାର ସମାଜରେ ସୃଷ୍ଟି ହେଲା । ବିଜ୍ଞାନର ବିକାଶ ଓ ଶିଳ୍ପ ବିପ୍ଳବର ଆରମ୍ଭ ପର୍ଯ୍ୟନ୍ତ କୃଷିଭିତ୍ତିକ ସଭ୍ୟତା ଏକ ନିର୍ଦ୍ଦିଷ୍ଟ ଅର୍ଥନୈତିକ ଢାଞ୍ଚା ଭିତର ଦେଇ ଶହ ଶହ ବର୍ଷ ଧରି ଗଡ଼ି ଆସିଥିଲା । କିନ୍ତୁ ବିଜ୍ଞାନର ଅଗ୍ରଗତି ସହ ବୈଷୟିକ ବିକାଶ ଆରମ୍ଭ ହେବାରୁ ସମାଜରେ ତ୍ରୁମୂଳ ପରିବର୍ତ୍ତନର ସୂତ୍ରପାତ ହେଲା । ବିଜ୍ଞାନର ସମୃଦ୍ଧି ଓ ତଦ୍‌ଜନିତ ବୈଷୟିକ ବିପ୍ଳବ ସୃଷ୍ଟି ହେବାପରେ ସମାଜର ଅର୍ଥନୈତିକ ଢାଞ୍ଚା ବଦଳି ଗଲା ଓ ସାମାଜିକ ପ୍ରଗତି ଦ୍ରୁତତର ହେଲା ।

ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ମଣିଷ ପ୍ରତିଭା ଓ ସୃଷ୍ଟିଶୀଳତାର ଯଥେଷ୍ଟ ସ୍ୱାକ୍ଷର ବହନ କରୁଥିଲେ ବି ଅତୀତର ସାହିତ୍ୟ, ଦର୍ଶନ, ଧର୍ମ, କଳା କ୍ଷେତ୍ରରେ ମଣିଷର ସୃଜନଶୀଳତା ଯେପରି ସ୍ପଷ୍ଟ ଭାବରେ ପରିଦୃଷ୍ଟ ହୋଇଛି ବିଜ୍ଞାନ କ୍ଷେତ୍ରରେ ସେପରି ହୋଇନାହିଁ । ପ୍ରାଚୀନ ସଭ୍ୟତାରେ ଯାହା କିଛି ବୈଜ୍ଞାନିକ ବିକାଶ ସାଧନ ହେବା ଦୃଷ୍ଟିଗୋଚର ହୁଏ ତାହା କୌଣସି ସଂଗଠିତ ଉଦ୍ୟମର ପରିଣାମ ନୁହେଁ ବରଂ କେତେକ ପ୍ରତିଭାବାନ ବ୍ୟକ୍ତି ଅତ୍ୟନ୍ତ କୌତୂହଳ ବିଶତଃ ପ୍ରକୃତିର କୌଣସି କ୍ଷେତ୍ରକୁ ବିଶ୍ଳେଷଣ କରିବାକୁ ଆଗ୍ରହୀ ହୋଇଥିଲେ ବା ସମାଜର କୌଣସି ଆବଶ୍ୟକତାକୁ ପୂରଣ କରିବାକୁ ଯାଇ କିଛି ନୂଆ ନୂଆ କୌଶଳ ବାହାର କରିବାକୁ ସମର୍ଥ ହୋଇଥିଲେ । ଅର୍ଥାତ୍ ସେତେବେଳେ ଯାହା କିଛି ବିଜ୍ଞାନର ବିକାଶ ଘଟିଥିଲା ତାହା ସମାଜ ଉପରେ କୌଣସି ବିଶେଷ ପ୍ରଭାବ ସୃଷ୍ଟି କରିପାରି ନ ଥିଲା ବା ବୈଜ୍ଞାନିକ ଜ୍ଞାନର ପ୍ରସାର ଦ୍ରୁତ ଗତିରେ ସମାହିତ ହେଉନଥିଲା । ଏପରିକି ଧର୍ମଭିତ୍ତିକ ସାମନ୍ତବାଦୀ ସମାଜରେ ବୈଜ୍ଞାନିକ ଉଦ୍‌ଭାବନ ଓ ଆବିଷ୍କାର ପାଇଁ ଯଥେଷ୍ଟ ପ୍ରତିକୂଳ ପରିବେଶ ରହିଥିଲା । ଇଉରୋପରେ ପୁନର୍ଜାଗରଣ ଯୁଗର ଅଭ୍ୟୁଦୟ ପର୍ଯ୍ୟନ୍ତ ସମାଜର ସକଳ ସଂଗଠନର ମୂଳ ଭିତ୍ତି ଥିଲା ଧର୍ମ ଓ ସ୍ୱାଧୀନ ଚିନ୍ତା ବହୁ ଭାବରେ ବ୍ୟାହତ ହୋଇ ରହିଥିଲା । ସବୁ ସମସ୍ୟାର ସମାଧାନ ପାଇଁ ଧର୍ମ ହିଁ ଥିଲା ଏକମାତ୍ର ନିର୍ଭରଶୀଳ ବିଭାବ ଓ ଜ୍ଞାନ ରାଜ୍ୟରେ ଏହିପରି ଏକ ରୁଦ୍ଧ ମାନସିକତା ଲାଗି ରହିଥିଲା । ଅତୀତର ସାମନ୍ତବାଦୀ ସମାଜ, ଧର୍ମଗତ କୁସଂସ୍କାର ଓ ଅହେତୁକ ଦୃଷ୍ଟିଭଙ୍ଗୀ ବୈଜ୍ଞାନିକ ଜ୍ଞାନର ବିକାଶ ପାଇଁ ଯଥେଷ୍ଟ ଅନ୍ତରାୟ ସୃଷ୍ଟି କରିଥିଲା ।

ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ଇଉରୋପରେ ପୁନର୍ଜାଗରଣ ଯୁଗ ଆରମ୍ଭ ହେଲା ଓ ଏହି ଯୁଗରେ ସାମନ୍ତବାଦୀ ଦୃଷ୍ଟିକୋଣର କ୍ରମ ବିଲୟ ଘଟିବା ସହିତ ସ୍ୱାଧୀନ ଭାବରେ ଚିନ୍ତା କରିବାର ଅନୁକୂଳ ସାମାଜିକ ପରିବେଶ ଆରମ୍ଭ ହେଲା । ଅନୁକୂଳ

ସାମାଜିକ ଓ ଦାର୍ଶନିକ ପୃଷ୍ଠଭୂମି ବିଜ୍ଞାନର ବିକାଶ ସାଧନରେ ଯଥେଷ୍ଟ ସାହାଯ୍ୟ କଲା । ଅତୀତର ରକ୍ଷଣଶୀଳ ସମାଜ ଯୁଗର ପରିବର୍ତ୍ତନ ସହ ଆସ୍ତେ ଆସ୍ତେ ନମନୀୟ ସମାଜରେ ପରିଣତ ହେଲା ଓ ବିଶ୍ୱବିଦ୍ୟାଳୟ ମାନଙ୍କରେ ଶିକ୍ଷା ଓ ଗବେଷଣା ପ୍ରସାର ଲାଭ କଲା । ବିଶେଷ କରି ଶିଳ୍ପ ବିପ୍ଳବ ପରିପ୍ରେକ୍ଷୀରେ ଏହି ଦିଗରେ ସଚେତନ ପଦକ୍ଷେପ ନିଆଯାଇ ବୈଜ୍ଞାନିକ ଗବେଷଣାକୁ ପ୍ରୋତ୍ସାହନ ଦିଆଗଲା ଓ ପ୍ରତିଭାବାନ ବ୍ୟକ୍ତି ବିଶେଷ ବୈଜ୍ଞାନିକ ଗବେଷଣାରେ ନିଜକୁ ସମ୍ପୃକ୍ତ କରାଇଲେ । ଏହା ସହିତ ସେ ସମୟରେ ଫ୍ରାନ୍ସିସର ବେକନ ଓ ଗାଲିଲିଓ ବିଜ୍ଞାନର ଦାର୍ଶନିକ ପୃଷ୍ଠଭୂମିକୁ ସେମାନଙ୍କର ବିଚାର ବିମର୍ଶରେ ଯଥେଷ୍ଟ ସୁଦୃଢ଼ କରିଦେଲେ । ବେକନ ପ୍ରକୃତି ସଂକ୍ରାନ୍ତରେ ଜ୍ଞାନଲାଭର ପ୍ରକୃତ ପ୍ରଣାଳୀ କ'ଣ ଉପରେ ଆଲୋଚନା କରି ପରୀକ୍ଷା ନିରୀକ୍ଷା ଉପରେ ପର୍ଯ୍ୟବସିତ ଅନୁଭବବାଦକୁ ପ୍ରତିଷ୍ଠା କଲେ । ପ୍ରକୃତି ସଂକ୍ରାନ୍ତରେ ଅଭ୍ରାନ୍ତ ଜ୍ଞାନ ଲାଭ ପାଇଁ ନିଷ୍ଫଳ ଯୁକ୍ତି ବା ଧର୍ମଗ୍ରନ୍ଥ ଉପରେ ନିର୍ଭର ନ କରି ବସ୍ତୁନିଷ୍ଠ ଭାବରେ ପ୍ରକୃତିର ଅନୁଶୀଳନ କରିବାକୁ ହେବ ବୋଲି ସେ ଦର୍ଶାଇଲେ । ଅନୁଭବବାଦ ଉପରେ ପ୍ରତିଷ୍ଠିତ ଓ ବସ୍ତୁନିଷ୍ଠ ଭାବରେ ପରୀକ୍ଷିତ ଜ୍ଞାନ ଯେ ଯଥାର୍ଥ ଓ ଏହି ପ୍ରଣାଳୀ ପ୍ରୟୋଗରେ ପ୍ରକୃତିର ସକଳ ବିଭାଗକୁ ବିଶ୍ଳେଷଣ କରାଯାଇ ପାରିବ ଏହି ପ୍ରକାରର ଏକ ଦାର୍ଶନିକ ବିଚାର ବେକନ ସେଯୁଗରେ ଦେଇଥିଲେ । ଏହା ସହିତ ପ୍ରକୃତିରେ ସୃଷ୍ଟ ପ୍ରତ୍ୟେକଟି ପ୍ରାକୃତିକ ଘଟଣାବଳୀ ଯେ ପ୍ରାକୃତିକ ନିୟମଦ୍ୱାରା ନିୟନ୍ତ୍ରିତ ଓ କୌଣସି ପ୍ରାକୃତିକ ଘଟଣା ପଛାତରେ ଅଲୌକିକ ବା ଆଧିଦୈବିକ କାରଣ ନାହିଁ ଏହା ଗାଲିଲିଓ ଓ ସମସାମୟିକ ଯୁଗର ବୈଜ୍ଞାନିକମାନେ ଦର୍ଶାଇଲେ । ଅର୍ଥାତ୍ ପ୍ରକୃତିର ସକଳ କ୍ଷେତ୍ରରେ ଓ ସମସ୍ତ ଘଟଣାର ପଛାତରେ କେବଳ ପ୍ରାକୃତିକ ନିୟମ କାର୍ଯ୍ୟ କରୁଛି ଏବଂ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ବସ୍ତୁନିଷ୍ଠ ଜ୍ଞାନଲାଭର ଯେ ମୌଳିକ ଭିତ୍ତି ଏହା ଏକ ଦାର୍ଶନିକ ମୀମାଂସା ଭାବରେ ସ୍ୱୀକୃତ ହେବା ପରେ ବିଜ୍ଞାନର ଅଭୂତପୂର୍ବ ବିକାଶ ସାଧନ ସମ୍ଭବ ହେଲା ।

ଅନୁକୂଳ ସାମାଜିକ ପରିବେଶ, ଜ୍ଞାନଲାଭର ମୌଳିକ ପ୍ରଣାଳୀ ଓ ପ୍ରତ୍ୟେକଟି ପ୍ରାକୃତିକ ଘଟଣାବଳୀର କାର୍ଯ୍ୟକାରଣ ଭିତ୍ତିକ ପ୍ରାକୃତିକ-ନିୟମ- ବିଦ୍ୟମାନ-ଜନିତ - ଦାର୍ଶନିକ-ନିଷ୍କର୍ଷ  ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ପାଇଁ ଅଭିନିବେଶ ଯୋଗାଇଲା । ବହୁକ୍ଷେତ୍ରରେ ସୂକ୍ଷ୍ମାତିସୂକ୍ଷ୍ମ ଗବେଷଣା ଫଳରେ ପ୍ରକୃତିର ବହୁ ରହସ୍ୟ ଉଦ୍‌ଘାଟିତ ହେଲା । ଉଦ୍ଭାବିତ ବୈଜ୍ଞାନିକ ତଥ୍ୟକୁ ଭିତ୍ତି କରି ଓ ତା'ର ପ୍ରୟୋଗରେ ବହୁ ପ୍ରକାରର ଟେକ୍‌ନୋଲୋଜି ଗଢ଼ିଉଠିଲା । ଟେକ୍‌ନୋଲୋଜିର ପ୍ରସାର ଫଳରେ ଶିଳ୍ପ ବିପ୍ଳବ ସୃଷ୍ଟି ହେଲା ଓ ଯୁଗ ଯୁଗର କୃଷି ଭିତ୍ତିକ ସମାଜ ଶିଳ୍ପ ଭିତ୍ତିକ ସମାଜରେ ପରିଣତ ହେବାରେ ଲାଗିଲା । ଏହାର ପରିଣାମ ସ୍ୱରୂପ କୃଷି ଓ ଶିଳ୍ପ ସକଳ ସ୍ତରରେ ଉତ୍ପାଦନ ବହୁ ଭାବରେ ବଢ଼ିଲା ଓ ବୈଷୟିକ ବିପ୍ଳବ ଯୋଗୁଁ ସମାଜର ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ହେଲା ।

ବୈଜ୍ଞାନିକ ଗବେଷଣାର ପରିସର ଓ ମାନ ଯେପରି ବଢ଼ିଲା ଓ ଯେତିକି ଯେତିକି ନୂଆ ନୂଆ ତଥ୍ୟ ଆବିଷ୍କୃତ ହେଲା ତାକୁ ପ୍ରୟୋଗ କରି ନୂଆ ନୂଆ ଟେକ୍‌ନୋଲୋଜି ସୃଷ୍ଟି ହେଲା । ଫଳତଃ ଲୋକଙ୍କର ଜୀବନ ଧାରଣ ମାନରେ ଦ୍ରୁତ ପରିବର୍ତ୍ତନ ଆସିଲା, ଲୋକଙ୍କର ଚାହିଦା ବଢ଼ିଲା ଓ ବିଳାସପୂର୍ଣ୍ଣ ଜୀବନ ଯାପନ କରିବା ପାଇଁ ବହୁ ନୂଆ ନୂଆ ସାମଗ୍ରୀ ସୃଷ୍ଟି ହେଲା । ଏହାଦ୍ୱାରା ସମାଜର ଅର୍ଥନୈତିକ ଢାଞ୍ଚା ବଦଳିଗଲା ଓ ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କରେ ଜୀବନ ଧାରଣର ମାନ ଦ୍ରୁତ ଗତିରେ ପରିବର୍ତ୍ତନ ହେବାକୁ ଲାଗିଲା । ବିଜ୍ଞାନ ଓ ଟେକ୍‌ନୋଲୋଜିକୁ ଆଶ୍ରିତ କରି ଶିଳ୍ପୋନ୍ନତ ରାଷ୍ଟ୍ର ସମୂହ ସେମାନଙ୍କର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିପାରିଲେ । ଆଜି ଉନ୍ନତ ରାଷ୍ଟ୍ର ସମୂହର ପ୍ରାଚୁର୍ଯ୍ୟମୟ ପରିବେଶ ପାଇଁ ଟେକ୍‌ନୋଲୋଜିର ବହୁଳ ବିନିଯୋଗ ଯେ ରହିଛି ଏହା କହିବା ନିଷ୍ପ୍ରୟୋଜନ ।

ସଂପ୍ରତି ଉତ୍ପାଦନ ବୃଦ୍ଧି, ବଞ୍ଚିବାର ମାନକୁ ଉନ୍ନତ କରିବା, ଜନସଂଖ୍ୟାର ଆବଶ୍ୟକତା ପୂରଣ ଇତ୍ୟାଦି ପାଇଁ ବିଜ୍ଞାନ ଓ ଟେକ୍‌ନୋଲୋଜି ଉପରେ ନିର୍ଭରଶୀଳତା ଅପରିହାର୍ଯ୍ୟ ହୋଇ ପଡ଼ିଛି । ଏହି ନିର୍ଭରଶୀଳତା ଫଳରେ ପ୍ରତ୍ୟେକ ରାଷ୍ଟ୍ରରେ ବହୁ ଜନକଲ୍ୟାଣକାରୀ ଯୋଜନା କାର୍ଯ୍ୟକାରୀ କରାଯାଇ ପାରୁଛି ଓ ଏପରିକି ସମଗ୍ର ମାନବ ଜାତିର ସାମୂହିକ କଲ୍ୟାଣ ସାଧନ ପାଇଁ ବିଜ୍ଞାନ ଓ ଟେକ୍‌ନୋଲୋଜିକୁ ପ୍ରୟୋଗ କରିବାର ଅବକାଶ ସୃଷ୍ଟି ହେବାରେ ଲାଗିଛି । ଏହାର ସଫଳ ପ୍ରୟୋଗରେ ଜୀବନ ଧାରଣର ଗୁଣାତ୍ମକ ମାନ ଓ ଅର୍ଥନୈତିକ ସମୃଦ୍ଧି ଯେ ସମ୍ଭବ ଏହା ଅଳ୍ପ ବହୁତ ଉନ୍ନତ ଓ ଅନୁନ୍ନତ ପ୍ରତ୍ୟେକ ସମାଜରେ ସ୍ୱୀକୃତ ହୋଇଛି । କାରଣ ଯେଉଁ ରାଷ୍ଟ୍ରରେ ଏହାର ବହୁଳ ପ୍ରସାର ଘଟିଛି ଓ ରାଷ୍ଟ୍ରରେ ଅର୍ଥନୀତି ଓ ଉତ୍ପାଦନ ପଦ୍ଧତି ଏହାକୁ ଆଶ୍ରା କରି ଗଢ଼ି ଉଠିଛି ସେଠାରେ ଜୀବନ ଧାରଣର ମାନ ଉନ୍ନତ ହେବା ସଙ୍ଗେ ସଙ୍ଗେ ତାହା ଏକ ସମୃଦ୍ଧ ରାଷ୍ଟ୍ରରେ ପରିଣତ ହୋଇଛି, ଅପରପକ୍ଷରେ ଏହାର ଉପଯୁକ୍ତ ବିନିଯୋଗ ଅଭାବରେ କେତେକ ରାଷ୍ଟ୍ର ଅନୁନ୍ନତ ଅବସ୍ଥାରେ ରହିଛନ୍ତି । ସୁତରାଂ ବିଜ୍ଞାନ ଓ ଟେକ୍‌ନୋଲୋଜିର ପ୍ରସାରର ପରିଣାମ ସ୍ୱରୂପ ପୃଥିବୀର ରାଷ୍ଟ୍ର ସମୂହ ଓ ସେମାନଙ୍କର ଅର୍ଥନୈତିକ ସ୍ଥିତି ଉନ୍ନତ ଓ ଅନୁନ୍ନତ ବା ବିକାଶଶୀଳ ଏପରି ଦୁଇ ଭାଗରେ ବିଭକ୍ତ ହୋଇ ଯାଇଛନ୍ତି । ବସ୍ତୁତଃ ସଂପ୍ରତି ସାମାଜିକ ପ୍ରଗତି ଓ ତା'ର କ୍ରମ ବିକାଶ, ବିଜ୍ଞାନ ଓ ଟେକ୍‌ନୋଲୋଜି ସହ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ହୋଇପଡ଼ିଛି । ସମାଜର ଭୌତିକ ବିକାଶ ଧାରାକୁ ଏହା ବହୁ ଭାବରେ ନିୟନ୍ତ୍ରଣ କରୁଛି ଓ ସେମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ସମ୍ବନ୍ଧ ଯେତେ ଜଟିଳ ବୋଧ ହେଲେ ବି ବିଜ୍ଞାନ ଓ ଟେକ୍‌ନୋଲୋଜିର ବିନା ସହାୟତାରେ ସମାଜର ଦ୍ରୁତ ବିକାଶ ଓ ଅର୍ଥନୈତିକ ପ୍ରଗତି ଏକ ପ୍ରକାରର ଅସମ୍ଭବ ହୋଇପଡ଼ିଛି ।

ସମାଜର ଅର୍ଥନୈତିକ ପ୍ରଗତିକୁ ଆହୁରି ତ୍ୱରାନ୍ୱିତ କରିବା ପାଇଁ ବିଜ୍ଞାନର

ପ୍ରୟୋଗ ଅପରିହାର୍ଯ୍ୟ ମନେହେବା ଯୋଗୁଁ ଶିଳ୍ପୋନ୍ନତ ରାଷ୍ଟ୍ର ସମୂହ ବୈଜ୍ଞାନିକ ଗବେଷଣା ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଛନ୍ତି ଓ ଏଥିପାଇଁ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ତୁମୁଳ ପ୍ରତିଯୋଗିତା ଲାଗିରହିଛି । ବିଶେଷକରି ପୃଥିବୀ ପୃଷ୍ଠର ସୀମିତ କଞ୍ଚାମାଲର ଅଭାବ ମେଣ୍ଟାଇବାକୁ, ଲୋକମାନଙ୍କର ଜୀବନ ଧାରଣ ପାଇଁ ଆବଶ୍ୟକୀୟ ସାମଗ୍ରୀକୁ ଆହୁରି ସୁଲଭ ଭାବରେ ଯୋଗାଇବାକୁ ତଥା ରାଷ୍ଟ୍ରର ଅର୍ଥନୈତିକ ବିକାଶର ଧାରାକୁ ଅବ୍ୟାହତ ରଖିବାକୁ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବୈଜ୍ଞାନିକ ଗବେଷଣା ଓ ନୂଆ ନୂଆ ଟେକ୍‌ନୋଲୋଜିର ଉଦ୍ଭାବନ ପାଇଁ ପ୍ରତିଯୋଗିତା ସୃଷ୍ଟି ହେଉଛି । ପରିଣାମତଃ ସକଳ କ୍ଷେତ୍ରରେ ବୈଜ୍ଞାନିକ ଗବେଷଣାର ସାହାଯ୍ୟ ନିଆଯାଉଛି ଯଦ୍ୱାରା ଏହାର ଗୁଣାତ୍ମକ ମାନ ଯଥେଷ୍ଟ ବୃଦ୍ଧି ପାଇଛି ଓ ଏପରିକି ବିଜ୍ଞାନ ଏକ ସର୍ବଗ୍ରାସୀ ଭୂମିକା ନେଇଛି । ଅଧିକନ୍ତୁ କେତେକ କ୍ଷେତ୍ରରେ ବୈଜ୍ଞାନିକ ଗବେଷଣା ଏପରି ବ୍ୟୟ ବହୁଳ ହୋଇ ପଡ଼ିଛି ଯଦ୍ୱାରା ଗୋଟିଏ ସମୃଦ୍ଧ ରାଷ୍ଟ୍ର ପକ୍ଷରେ ଏଥିପାଇଁ ପୁଞ୍ଜି ବିନିଯୋଗ କରିବା ସହଜସାଧ୍ୟ ହେଉନାହିଁ । ସୁତରାଂ କେତେକ ଗବେଷଣା ପାଇଁ ଆନ୍ତଃରାଷ୍ଟ୍ରୀୟ ସହଯୋଗ ଆବଶ୍ୟକ ହେଉଛି । କୌଣସି ଉଦ୍ଭାବନ ବା ଆବିଷ୍କାର ହେବା ପରେ ପରେ ତଦାଶ୍ରୟୀ ଟେକ୍‌ନୋଲୋଜି ସଂଗେ ସଂଗେ ଗଢ଼ି ଉଠୁଛି ଓ ନୂଆ ନୂଆ ସାମଗ୍ରୀ ପ୍ରସ୍ତୁତ ହୋଇ ପାରୁଛି । ସୁତରାଂ ସମାଜର ଅର୍ଥନୈତିକ ବିକାଶ ଓ ସାମାଜିକ ପ୍ରଗତି ସହ ବିଜ୍ଞାନ ଓ ଟେକ୍‌ନୋଲୋଜି ଅତି ଘନିଷ୍ଠ ଭାବରେ ସଂପୃକ୍ତ ହୋଇପଡ଼ିଛି ।

ବିଜ୍ଞାନ ଓ କାରିଗରୀ କୌଶଳର ପ୍ରୟୋଗରେ ଯେ କେବଳ ସମାଜର ଅର୍ଥନୈତିକ ଢାଞ୍ଚା ବଦଳିଛି ତା' ନୁହେଁ ଏହା ସମାଜର ମୂଲ୍ୟବୋଧ, ଶିକ୍ଷା ବ୍ୟବସ୍ଥା, ଧର୍ମ ଚେତନା ଇତ୍ୟାଦି ସବୁରି ସ୍ତରକୁ ମଧ୍ୟ ପ୍ରଭାବିତ କରିପାରିଛି । ପ୍ରକୃତିର ବା ସମାଜର ପ୍ରତ୍ୟେକଟି ଅଭିନବ ଘଟଣାକୁ କୌଣସି ଅଲୌକିକ ମାନଦଣ୍ଡରେ ବୁଝିବାକୁ ଉଦ୍ୟମ ନ ହୋଇ ବିଜ୍ଞାନ ସମ୍ମତ ପନ୍ଥାରେ ଓ କାର୍ଯ୍ୟକାରଣ ନିୟମରେ ବୁଝିବାକୁ ଚେଷ୍ଟା କରାଯାଉଛି । ଏହାଦ୍ୱାରା ବୌଦ୍ଧିକ କ୍ରିୟାଶୀଳତା ଯଥେଷ୍ଟ ବୃଦ୍ଧି ପାଇଛି ଓ ହେତୁବାଦୀ ମୂଲ୍ୟବୋଧ ଚିନ୍ତା ରାଜ୍ୟରେ ସ୍ୱୀକୃତି ଲାଭ କରିଛି । ସମାଜରେ ଯୁଗ ଯୁଗ ଧରି ରହି ଆସିଥିବା କୁସଂସ୍କାର ଓ ଅଲୌକିକ ମନୋଭାବ ବିଜ୍ଞାନର ପ୍ରଭାବରେ ଆସ୍ତେ ଆସ୍ତେ ଲୋପ ପାଇବାରେ ଲାଗିଛି । ଆମର ପାରିପାର୍ଶ୍ୱିକ ପରିବେଶକୁ ବୁଝି ନିୟନ୍ତ୍ରଣ କରିବାର ସାମର୍ଥ୍ୟ ବୃଦ୍ଧି ପାଇବା ସହିତ ଅନ୍ଧବିଶ୍ୱାସ, କୁସଂସ୍କାର ଓ ରହସ୍ୟବାଦୀ ଦୃଷ୍ଟିକୋଣ ଅପସରି ଯାଉଛି । ଏହା ସହିତ ଅତୀତର ସାମନ୍ତବାଦୀ ମାନସିକତାରେ ପରିବର୍ତ୍ତନ ହୋଇ ଗଣତାନ୍ତ୍ରିକ ଚେତନା, ସମାଜବାଦୀ ଦୃଷ୍ଟିକୋଣ ଓ ବ୍ୟକ୍ତି ସ୍ୱାଧୀନତାର ମନୋଭାବ ସମାଜରେ ବିକାଶ ଲାଭ କରିଛି । ପୁନଶ୍ଚ ଗମନାଗମନର ପ୍ରଭୂତ ବିକାଶ ଯୋଗୁଁ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସାଂସ୍କୃତିକ ବିନିମୟ ବୃଦ୍ଧି ପାଇଛି ତଥା ଆନ୍ତର୍ଜାତିକ ମନୋବୃତ୍ତି ଓ

ବିଶ୍ୱଜନୀନ ଦୃଷ୍ଟିକୋଣ ଯଥେଷ୍ଟ ବୃଦ୍ଧି ପାଇବାରେ ଲାଗିଛି । ବିଶ୍ୱ ଜାତିସଂଘ ପରି ବହୁ ଆନ୍ତର୍ରାଷ୍ଟ୍ରୀୟ ଓ ଆନ୍ତର୍ଜାତିକ ସଂଗଠନ ସୃଷ୍ଟି ହୋଇ ଏହି ସବୁ ମୂଲ୍ୟଚୟର ବିକାଶ ଦିଗରେ କାର୍ଯ୍ୟ କରୁଛନ୍ତି ।

ମୋଟ ଉପରେ ବିଜ୍ଞାନ ଓ ଟେକ୍‌ନୋଲୋଜି ସମାଜରେ ଦ୍ରୁତ ଅର୍ଥନୈତିକ ସମୃଦ୍ଧି ଓ ସାଂସ୍କୃତିକ ଜାଗରଣ ସୃଷ୍ଟି କରିଥିଲେ ବି ଅନେକ ସମସ୍ୟା ଓ ସଂକଟ ସୃଷ୍ଟି କରିବାରେ ସହାୟକ ହୋଇଛନ୍ତି । ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କରେ ବିଜ୍ଞାନ ଓ ଟେକ୍‌ନୋଲୋଜିର ବିକାଶ ଏପରି ଦ୍ରୁତ ଗତିରେ ଆଗେଇ ଯାଉଛି ଯଦ୍ଦ୍ୱାରା ଏହା ସହିତ ସମାଜର ଅନ୍ୟାନ୍ୟ ବିଭାବ ସଂଗତି ରକ୍ଷା କରିବା ସମ୍ଭବପର ହେଉନାହିଁ । ଦିନକୁ ଦିନ ଯେପରି ସୂକ୍ଷ୍ମାତିସୂକ୍ଷ୍ମ ଯନ୍ତ୍ର, ଅଟୋମେସନ ତିଆରି କରାଯାଉଛି ଓ ମେସିନ ଉପରେ ନିର୍ଭରଶୀଳତା ବଢ଼ି ଚାଲିଛି, ତଦ୍ଦ୍ୱାରା ବେକାରୀ ସମସ୍ୟା ମୁଣ୍ଡ ଟେକୁଛି ଓ ବ୍ୟକ୍ତିର ଆବଶ୍ୟକତା ଅନୁଭୂତ ହୋଇ ପାରୁନାହିଁ । ଫଳରେ ପାରିବାରିକ ସୌହାର୍ଦ୍ଦ୍ୟ ଓ ପରସ୍ପରର ସୁଖ ଦୁଃଖରେ ସମଭାଗୀ ହେବାର ମନୋଭାବ ହ୍ରାସ ପାଉଛି । ବ୍ୟକ୍ତି ଭୟଙ୍କର ପ୍ରତିଯୋଗିତାର ସମ୍ମୁଖୀନ ହେଉଥିବାରୁ ନାନା ପ୍ରକାର ମନସ୍ତାତ୍ତ୍ୱିକ ଉତ୍ତେଜନା ମଧ୍ୟ ସମାଜରେ ସୃଷ୍ଟି ହେଉଛି । ସେହିପରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ସ୍ୱଳ୍ପ ପୁଞ୍ଜି ଭିତରେ ଲୋକଙ୍କର ଜୀବନ ଧାରଣର ମାନରେ ଉନ୍ନତି ଆଣିବାକୁ ସ୍ୱତନ୍ତ୍ର ଗବେଷଣାର ଆବଶ୍ୟକତା ରହିଥିଲେ ସୁଦ୍ଧା ବହୁ ସମୟରେ ପୁଞ୍ଜିର ଅଭାବ ଓ ରାଜନୈତିକ ଅସ୍ଥିରତା ଭିତରେ ସେଥିପାଇଁ ଯଥେଷ୍ଟ ଧ୍ୟାନ ଦିଆଯାଇ ପାରୁନାହିଁ । ଫଳରେ ଉନ୍ନତ ରାଷ୍ଟ୍ର ସମୂହରେ ସକଳ ପ୍ରାଚୁର୍ଯ୍ୟ ସୃଷ୍ଟି ହେଉଥିବା ବେଳେ ଅନୁନ୍ନତ ବା ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଜୀବନ ଧାରଣର ମାନ ନିକୃଷ୍ଟ ସ୍ତରରେ ରହିଛି । ବସ୍ତୁତଃ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଓ ଲୋକଙ୍କର ଜୀବନ ଧାରଣର ମାନରେ ବିରାଟ ପାର୍ଥକ୍ୟ ଦେଖାଦେଇଛି । ଏହା ସହିତ ଶିଳ୍ପ ସମୃଦ୍ଧ ରାଷ୍ଟ୍ରମାନଙ୍କରେ ଉନ୍ନତ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କରାଯାଇ ପାରୁଥିବାରୁ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟ ସହିତ ବିକାଶଶୀଳ ରାଷ୍ଟ୍ର ସମୂହର ପଣ୍ୟ ସାମଗ୍ରୀ ସମକକ୍ଷ ହୋଇ ପାରୁନାହିଁ ଯଦ୍ଦ୍ୱାରା ଶିଳ୍ପୋନ୍ନତ ରାଷ୍ଟ୍ରମାନେ ଏକାଧିପତ୍ୟ ବିସ୍ତାର କରି ରହିଛନ୍ତି । ବସ୍ତୁତଃ ଅର୍ଥନୈତିକ ଶୋଷଣ ଓ ତାରତମ୍ୟ ବୃଦ୍ଧି ପାଇବାରେ ଲାଗିଛି । ଏହା ବ୍ୟତୀତ ସାମରିକ ଶକ୍ତିର ଅଭିବୃଦ୍ଧି ପାଇଁ ପ୍ରତ୍ୟେକ ରାଷ୍ଟ୍ରରେ ଉନ୍ନତ ବୈଜ୍ଞାନିକ କୌଶଳ ପ୍ରୟୋଗ କରାଯାଉଛି ଓ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବା କ୍ଷେତ୍ରରେ ପୃଥିବୀର ବହୁ ପ୍ରାକୃତିକ କଞ୍ଚାମାଲକୁ ନଷ୍ଟ କରାଯାଉଛି । ଆଣବିକ ଅସ୍ତ୍ର ନିର୍ମାଣ କ୍ଷେତ୍ରରେ ପ୍ରତିଯୋଗିତା ଓ ଆଣବିକ ଯୁଦ୍ଧର ସମ୍ଭାବନା ନାନା ଆନ୍ତର୍ଜାତିକ ଉତ୍ତେଜନା ସୃଷ୍ଟି କରୁଛି । ସାମରିକ ଶକ୍ତି ବୃଦ୍ଧି ପାଇଁ ପ୍ରତ୍ୟେକ ରାଷ୍ଟ୍ର ବିପୁଳ ପୁଞ୍ଜି ଖଟାଇ ଏଥିପାଇଁ ବୈଜ୍ଞାନିକ ଗବେଷଣା ଚଳାଇବା ଫଳରେ ଜନକଲ୍ୟାଣକାରୀ ଯୋଜନା ପ୍ରତି ଯଥେଷ୍ଟ ଧ୍ୟାନ ଦେଇ ପାରୁନାହାନ୍ତି । ଅଧିକନ୍ତୁ ବୈଜ୍ଞାନିକ କ୍ରିୟାଶୀଳତା ଫଳରେ ପୃଥିବୀ

ପୃଷ୍ଠର ସୀମିତ ପ୍ରାକୃତିକ ସମ୍ପଦ ବର୍ତ୍ତମାନ ଯେଉଁ ହାରରେ ବ୍ୟୟ କରାଯାଉଛି ତାହା ମଧ୍ୟ ଭବିଷ୍ୟତ ପାଇଁ ଏକ ନୈରାଶ୍ୟଜନକ ଚିତ୍ର ଦେବାରେ ଲାଗିଛି । କାରଣ ହୁଏତ କିଛି ବର୍ଷ ପରେ ଭୂପୃଷ୍ଠର ବହୁ ପ୍ରାକୃତିକ ସମ୍ପଦ ଶେଷ ହୋଇଯିବ ଫଳରେ ଭବିଷ୍ୟତରେ କ୍ରମ ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ନ୍ୟୁନତମ ଆବଶ୍ୟକତା ପୂରଣ କରିବା ସମ୍ଭବପର ହେବ ନାହିଁ । ସୁତରାଂ ସଂପ୍ରତି କେତେକ ବୁଦ୍ଧିଜୀବୀ ବିଜ୍ଞାନ ଓ ଟେକ୍‌ନୋଲୋଜି ପ୍ରସାରର ହାରକୁ ସୀମିତ କରିବା ପାଇଁ ମତ ପୋଷଣ କରୁଛନ୍ତି । ଏହା ସହିତ ପରିବେଶ ପ୍ରଦୂଷଣ ଭଳି ସମସ୍ୟାମାନ ନାନା ଆଶଙ୍କା ସୃଷ୍ଟି କରିବାରେ ଲାଗିଛି ।

ବିଜ୍ଞାନର ପ୍ରସାର ଫଳରେ ପୃଥିବୀର ଜନସାଧାରଣ ବହୁ ସୁଫଳ ଲାଭ କରିଥିଲେ ବି ଉଲ୍ଲିଖିତ ସଙ୍କଟମୟ ଆହ୍ୱାନର ମଧ୍ୟ ସମ୍ମୁଖୀନ ହୋଇଛନ୍ତି । ଯେଉଁଠି ବିଜ୍ଞାନ ଓ ଟେକ୍‌ନୋଲୋଜିର ବହୁଳ ପ୍ରସାର ହୋଇଛି କେବଳ ସେ ରାଷ୍ଟ୍ର ସମୂହ ନୁହନ୍ତି ଏପରିକି ବିକାଶଶୀଳ ଓ ଅନୁନ୍ନତ ରାଷ୍ଟ୍ରର ଜନସାଧାରଣ ମଧ୍ୟ କେତେକ କୁଫଳ ସମପରିମାଣରେ ଭୋଗୁଛନ୍ତି । ଶକ୍ତି ସଙ୍କଟ, ଆଣବିକ ଯୁଦ୍ଧର ସମ୍ଭାବନା ନେଇ ଉତ୍ତେଜନା, ପରିବେଶ ପ୍ରଦୂଷଣ ଭଳି ସମସ୍ୟାଗୁଡ଼ିକ ଶିଳ୍ପୋନ୍ନତ ଓ ବିକାଶୋନ୍ମୁଖୀ ରାଷ୍ଟ୍ରସମୂହ ସମଭାବରେ ସମ୍ମୁଖୀନ ହେଉଛନ୍ତି । ଏ ସତ୍ତ୍ୱେ ବି ବିଜ୍ଞାନର ବିକାଶଧାରାକୁ ସୀମିତ କରିବା ଓ ସମାଜକୁ ପ୍ରାଗ୍‌ବୈଜ୍ଞାନିକ ଯୁଗକୁ ଫେରାଇ ନେବା ଏକ ଅସମ୍ଭବ ଓ ଅବାସ୍ତବ କଳ୍ପନା ଅଟେ । ବରଂ ବିଜ୍ଞାନଦ୍ୱାରା ସୃଷ୍ଟ ସମସ୍ୟାରାଜି ଯେ ସେହି ବିଜ୍ଞାନ ମାଧ୍ୟମରେ ସମାଧାନ ହୋଇ ପାରିବ ଏହା କହିବା ନିଷ୍ପ୍ରୟୋଜନ । ଏହା ସହିତ ସାମରିକ ଶକ୍ତି ବୃଦ୍ଧି ପାଇଁ ବିଜ୍ଞାନର ଯେପରି ଅପପ୍ରୟୋଗ ହୋଇ ପୃଥିବୀ ପୃଷ୍ଠର ବହୁ ପ୍ରାକୃତିକ ସମ୍ପଦର ବିଲୟ ହେଉଛି ତାହାକୁ ବନ୍ଦ କରିବା ପାଇଁ ପୃଥିବୀରେ ଏକ ସାଂସ୍କୃତିକ ଜାଗରଣର ଆବଶ୍ୟକତା ଦେଖାଦେଇଛି । ବିଜ୍ଞାନର ସକଳ ବିଚାରଶୂନ୍ୟ ପ୍ରୟୋଗକୁ ବନ୍ଦ କରି ବିଜ୍ଞାନର ଗବେଷଣାକୁ ମାନବ କଲ୍ୟାଣ ଦିଗରେ ବ୍ୟବହାର କରାଯିବା ପାଇଁ ବିଶ୍ୱ ଜନମତ ସୃଷ୍ଟି ହେବା ସର୍ବାଦୌ ଆବଶ୍ୟକ । ଏହା ସହିତ ବିଜ୍ଞାନ ଓ ଟେକ୍‌ନୋଲୋଜିର ଯଥାର୍ଥ ବିନିଯୋଗ କରିପାରି ନ ଥିବାରୁ ଅନୁନ୍ନତ ଓ ବିକାଶଶୀଳ ରାଷ୍ଟ୍ର ସମୂହର ଅର୍ଥନୀତି ଯେଉଁ ଗୁରୁତର ସଙ୍କଟରେ ସମ୍ମୁଖୀନ ହେଉଛି ସେଥିରେ ଯଥୋଚିତ ସମାଧାନ ଆଣିପାରିବା ପାଇଁ ମଧ୍ୟ ଉଦ୍ୟମ ହେବା ଦରକାର । ଅବଶ୍ୟ ଉନ୍ନତ ରାଷ୍ଟ୍ର-ସମୂହରେ ଲୋକମାନଙ୍କର ଜୀବନ ଧାରଣର ମାନ ଯେଉଁ ସ୍ତରକୁ ଯାଇଛି ଓ ସେ ଦେଶମାନଙ୍କରେ ଯେଉଁ ପ୍ରକାରର ଟେକ୍‌ନୋଲୋଜି ବିକାଶ ଲାଭ କରିଛି ସେହି ପ୍ରକାରର ଟେକ୍‌ନୋଲୋଜି ଅନୁନ୍ନତ ବା ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଆବଶ୍ୟକ ନ ଥାଇପାରେ । ବରଂ ବିକାଶୋନ୍ମୁଖୀ ରାଷ୍ଟ୍ର ସମୂହରେ ଲୋକମାନଙ୍କର ଜୀବନ ଧାରଣର ମାନକୁ ଯଥେଷ୍ଟ ଅନୁଧ୍ୟାନ ପୂର୍ବକ ସେମାନଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ତାଙ୍କ ପରିବେଶ ଉପଯୋଗୀ ଟେକ୍‌ନୋଲୋଜିର ପ୍ରସାର ହେବା ଆବଶ୍ୟକ । ଅର୍ଥାତ୍

ପୃଥିବୀର ଭିନ୍ନ ଭିନ୍ନ ପରିବେଶରେ କି କି ପ୍ରକାରର କାରିଗରୀ କୌଶଳ ପ୍ରୟୋଗ କରାଗଲେ ପ୍ରତ୍ୟେକ ରାଷ୍ଟ୍ରର ଅର୍ଥନୈତିକ ଅବସ୍ଥା ସୁସ୍ଥ ବିକାଶ ଲାଭ କରିବ ସେ ନେଇ ବିଜ୍ଞାନର ଅନେକ କିଛି କରିବାର ରହିଛି ।

ମୋଟ ଉପରେ କହିବାକୁ ଗଲେ ସଂପ୍ରତି ସମାଜର ପ୍ରଗତି ଓ ଲୋକଙ୍କର ଜୀବନ ଧାରଣର ମାନରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ବିଜ୍ଞାନର ବିନା ସହାୟତାରେ ଆନୟନ କରିବା ଏକ ପ୍ରକାରର ଅସମ୍ଭବ ହୋଇ ପଡ଼ିଛି । ଏହି ପରିବର୍ତ୍ତନଶୀଳ ପରିସ୍ଥିତିରେ ଜୀବନର ସୁଖ ସମୃଦ୍ଧି ପାଇଁ ବିଜ୍ଞାନର ଭୂମିକା ଅପରିହାର୍ଯ୍ୟ ବୋଧ ହେଉଥିବାରୁ ବିଜ୍ଞାନର ଅପପ୍ରୟୋଗ ହୋଇ ମାନବ ସମାଜର ଯେପରି କ୍ଷତି ସାଧନ ନ ହୁଏ ସେଥିପାଇଁ ଯଥେଷ୍ଟ ସଚେତନତା ଆବଶ୍ୟକ । ବିଶେଷ କରି ବିଜ୍ଞାନର ସମୃଦ୍ଧି ସାଧନ ଯୋଗୁଁ ମଣିଷ ସମାଜ ଯେଉଁ ଜ୍ଞାନ ଓ ସାମର୍ଥ୍ୟର ଅଧିକାରୀ ହୋଇଛି ତାହା ଯେପରି ସମଗ୍ର ମାନବ ସମାଜର କଲ୍ୟାଣ ସାଧନରେ ବ୍ୟବହୃତ ହୁଏ ସେଥିପାଇଁ ପୃଥିବୀରେ ଏକ ନୈତିକ ଜାଗରଣର ଆବଶ୍ୟକତା ଦେଖାଦେଇଛି । ବିଜ୍ଞାନ ନୀତି ନିରପେକ୍ଷ ହୋଇଥିବାରୁ ବିଜ୍ଞାନର ଶାନ୍ତିପୂର୍ଣ୍ଣ ~~ସହଯୋଗ ଓ ସୁଖ ଶାନ୍ତିମୟ ସମାଜ ଗଠନ~~ ପାଇଁ ପୃଥିବୀର ଚିନ୍ତାଶୀଳ ବ୍ୟକ୍ତି ବିଶେଷ, ସମାଜ ବିଜ୍ଞାନୀ, ଶିକ୍ଷାବିଦ ଓ ରାଜନୈତିକ ନେତୃବୃନ୍ଦଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବିଜ୍ଞାନକୁ ମାନବ କଲ୍ୟାଣ ଦିଗରେ ବ୍ୟବହୃତ କରି ଏକ ସୁଖ ସମୃଦ୍ଧଭରା ଭବିଷ୍ୟତ ଗଠନ କରିବା ନା ଏହାର ଅପପ୍ରୟୋଗ କରି ନାନା ଉତ୍ତେଜନା ସୃଷ୍ଟିକରି ସମାଜକୁ ଧ୍ୱଂସ ମୁଖକୁ ଆଗେଇନେବା - ଏ ନୈତିକ ଆହ୍ୱାନ ସମଗ୍ର ମଣିଷ ସମାଜ ପାଇଁ ଜୀବନ ମରଣ ସମସ୍ୟା ଭାବରେ ଦଣ୍ଡାୟମାନ ହୋଇଛି । ଏନେଇ ପୃଥିବୀରେ ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରିବାରେ ବିଶ୍ୱ ଜାତିସଂଘ, ସମସ୍ତ ଆନ୍ତର୍ଜାତିକ ସଂଗଠନ, ବିଭିନ୍ନ ଦେଶର ବୁଦ୍ଧିଜୀବୀ, ରାଷ୍ଟ୍ରନୀତିଜ୍ଞ ଓ ଗଣ ମାଧ୍ୟମର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏହା କହିବା ନିଷ୍ପ୍ରୟୋଜନ ।

■■

# ଭାରତୀୟ ସମାଜ ଓ ସାଂସ୍କୃତିକ ସଙ୍କଟ

ଗାନ୍ଧୀଜୀ ଭାରତୀୟ ଜାତୀୟ ଆନ୍ଦୋଳନକୁ ନେତୃତ୍ୱ ଦେବାବେଳେ ଏକ ଆଦର୍ଶ ସମାଜର ପରିକଳ୍ପନା କରିଥିଲେ । ଭାରତର ରାଜନୈତିକ ସ୍ୱାଧୀନତା ସହିତ ରାଷ୍ଟ୍ରର ପୁନର୍ଗଠନ କରି ଏକ ଶୋଷଣହୀନ, ସାମ୍ୟ ଓ ଅହିଂସ ସମାଜର ରୂପରେଖ ଆଙ୍କିଥିଲେ । ପରାଧୀନ ଭାରତରେ ଜାତୀୟତାବାଦୀ ବୁଦ୍ଧିଜୀବୀ ଗଣ ଦେଶର ସ୍ୱାଧୀନତା ହାସଲ ହୋଇପାରିଲେ ଜାତୀୟ ଜୀବନକୁ ଶୃଙ୍ଖଳିତ କରି ଗଢ଼ିବା ସମ୍ଭବ ହେବ ବୋଲି କେତେ କେତେ ସ୍ୱପ୍ନ ମଧ ଦେଖିଥିଲେ । ଦେଶର ଅଗଣିତ ଜନଗଣଙ୍କ ଭିତରେ ଏଥିପାଇଁ ଜାଗରଣ ଆସି ପାରିଥିଲା ଓ ଅଧିକାଂଶ ଗାନ୍ଧିଜୀଙ୍କ ନେତୃତ୍ୱକୁ ଗ୍ରହଣ କରିନେଇଥିଲେ । ଏପରିକି ଯେଉଁମାନେ ଗାନ୍ଧିଜୀଙ୍କ କର୍ମପନ୍ଥାରେ ବିଶ୍ୱାସ କରୁନଥିଲେ ସେମାନେ ବି ନିଜ ନିଜ ଭାବରେ ସ୍ୱାଧୀନୋତ୍ତର ଭାରତୀୟ ସମାଜ ପାଇଁ କେତେ କେତେ ସ୍ୱପ୍ନ ଦେଖିଥିଲେ । ଗାନ୍ଧିଜୀ, ସାମ୍ୟବାଦୀ ନେତାଗଣ ଓ ଅନ୍ୟାନ୍ୟ ବିପ୍ଳବୀଗଣ ଭାବିଥିଲେ ଯେ ରାଜନୈତିକ ସ୍ୱାଧୀନତା ମିଳିପାରିଲେ ସମାଜରୁ ସକଳ ପ୍ରକାରର ବୈଷମ୍ୟ, ଅର୍ଥନୈତିକ ଶୋଷଣ ଓ ସାମାଜିକ ଅନ୍ୟାୟ ଦୂର ହେବା ସହିତ ଏକ ନୂତନ ସମାଜର ଅଭ୍ୟୁଦୟ ହୋଇପାରିବ । କିନ୍ତୁ ସ୍ୱାଧୀନତା ପରେ ସେହି ସାମାଜିକ ଲକ୍ଷ୍ୟ ବିଡ଼ମ୍ବିତ ହୋଇ ରହିଲା ପରି ମନେହୁଏ; କାରଣ, ପରାଧୀନ ଭାରତରେ ଯେଉଁସବୁ ଅନ୍ୟାୟ, ଶୋଷଣ, ଅଶିକ୍ଷା, କୁସଂସ୍କାର ଇତ୍ୟାଦି ରହିଥିଲା ସ୍ୱାଧୀନ ଭାରତରେ ସେଥିରେ କିଛି ପରିବର୍ତ୍ତନ ଆସିଥିବା ମନେହୁଏ ନାହିଁ । ବରଂ ସ୍ୱାଧୀନ ଭାରତରେ ଅନ୍ୟାୟ, ଦୁର୍ନୀତି ଓ ଅବକ୍ଷୟ ଗୁଣିତ ହେବା ଦୃଷ୍ଟିଗୋଚର ହୁଏ । ଏ ଦୃଷ୍ଟିରୁ ଭାରତୀୟ ସମାଜରେ ସଂପ୍ରତି ମଧ ଏକ ବିପ୍ଳବର ସୂତ୍ରପାତ ହେବାର ଅବକାଶ ରହିଥିବା କଥାକୁ ଅସ୍ୱୀକାର କରାଯାଇ ନ ପାରେ । କେହି କେହି ଏପରି ମଧ କହିଥାନ୍ତି ଯେ ଦେଶର ସାଂପ୍ରତିକ ପରିସ୍ଥିତି ସମାଜରେ ଏକ ବୈପ୍ଳବିକ ପରିବର୍ତ୍ତନ ପାଇଁ ଯଥେଷ୍ଟ ପକ୍ୱ ହୋଇରହିଛି ।

ସ୍ୱାଧୀନ ଭାରତରେ ଜାତୀୟ ପୁନର୍ଗଠନ ଦ୍ୱାରା ସାମାଜିକ ନ୍ୟାୟ ପ୍ରତିଷ୍ଠା ହୋଇ ନ ପାରିବା ପଶ୍ଚାତରେ ବହୁବିଧ କାରଣ ବିଦ୍ୟମାନ ଥାଇପାରେ । ସାମାଜିକ ନ୍ୟାୟ

ଉପରେ ଆଧାରିତ ଏକ ଶୋଷଣହୀନ ସୁସ୍ଥ ସମାଜ ଗଠନ ଦିଗରେ ହୁଏତ ଆମର ନିଷ୍ଠାପର ଉଦ୍ୟମ ହୋଇନାହିଁ ବା ଆମେ ଅନୁସରଣ କରିଥିବା ପନ୍ଥା ଓ ଆଭିମୁଖ୍ୟ ସମାଜରେ ମୌଳିକ ପରିବର୍ତ୍ତନ ସଂଘଟିତ କରିବାରେ ଯଥେଷ୍ଟ ନୁହେଁ । ଏପରିକି ଏହାବି କୁହାଯାଇ ପାରେ ଯେ ଆମେ କେଉଁ ପ୍ରକାରର ସମାଜ ଚାହୁଁ ଓ କେଉଁ ପନ୍ଥା ଅବଲମ୍ବନରେ ସେହି ଶ୍ରେୟ ହାସଲ ହୋଇପାରିବ ସେନେଇ ଆମର ଯଥେଷ୍ଟ ବୌଦ୍ଧିକ ସ୍ୱଚ୍ଛତା ରହିନାହିଁ । କାରଣ ବହୁ ସମୟରେ ଆମର ଲକ୍ଷ୍ୟ ଓ ପନ୍ଥା ପରସ୍ପର ବିରୋଧୀ ମନେହୁଏ । ଅବଶ୍ୟ ସ୍ୱାଧୀନତା ପରଠାରୁ ଗଣତାନ୍ତ୍ରିକ ପଦ୍ଧତିରେ ଜନଗଣଙ୍କ ଦ୍ୱାରା ନିର୍ବାଚିତ ସରକାର ହୋଇଆସିଛି ଓ ଏକ ସ୍ୱାଧୀନ ଗଣମାଧ୍ୟମ ବି ରହିଛି । ଏହା ସହିତ ସ୍ୱାଧୀନତାର ପ୍ରାକ୍‌କାଳରେ ଗାନ୍ଧିଜୀଙ୍କ ସହିତ କାର୍ଯ୍ୟ କରିଥିବା ଓ ସ୍ୱାଧୀନ ଭାରତରେ ଜନଗଣଙ୍କର ଆସ୍ଥା ଓ ସମ୍ମାନ ଲାଭ କରିଥିବା ବହୁ ନେତୃବୃନ୍ଦ ସ୍ୱାଧୀନ ଭାରତରେ ରହିଥିଲେ ଓ ବର୍ତ୍ତମାନ ସୁଦ୍ଧା କେତେକ ପ୍ରଭାବଶାଳୀ ବ୍ୟକ୍ତି ବି ରହିଛନ୍ତି । ଏହା ସହିତ ଅର୍ଦ୍ଧଶତାବ୍ଦୀ ଠାରୁ ଅଧିକ କାଳ ହେବ ସମାଜବାଦୀ ଓ ପ୍ରଗତିଶୀଳ ସଂଗଠନ ମାନ ରହି କାର୍ଯ୍ୟ କରିଛନ୍ତି । ଏହା ସତ୍ତ୍ୱେ ଜାତୀୟ ଜୀବନ ଧାରାରେ ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ବୃଦ୍ଧି ପାଇବା ବିଡ଼ମ୍ବନା କହିବାକୁ ହେବ ।

ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ଜାତୀୟ ଜୀବନର ମୌଳିକ ପରିବର୍ତ୍ତନ ଆଣିବା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଅଟେ । ସାମାଜିକ ସମ୍ବନ୍ଧକୁ ନୈତିକ ଆଦର୍ଶଚୟ ଦିଗରେ ରୂପାନ୍ତରିତ କରିବା କ୍ଷେତ୍ରରେ ପାରିପାର୍ଶ୍ୱିକ ଘଟଣାବଳୀ, କୌଣସି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ନେତୃତ୍ୱ ଓ ଜନସହଯୋଗ ପରି କାରଣମାନ ବିଦ୍ୟମାନ ଥାଏ । ଭାରତୀୟ ଜନଜୀବନ ପରିପ୍ରେକ୍ଷୀରେ ଆମର ଜାତୀୟ ଜୀବନର ଘଟଣା ପ୍ରବାହ ସାମାଜିକ କ୍ରାନ୍ତି ଆନୟନ କରିବାରେ ଯଥେଷ୍ଟ ହୋଇଥିଲେ ହେଁ ସମ୍ଭବତଃ ଗାନ୍ଧିଜୀଙ୍କ ପରେ ସ୍ୱାଧୀନ ଭାରତରେ ଏକ ବଳିଷ୍ଠ ନେତୃତ୍ୱ ସୃଷ୍ଟି ହୋଇପାରି ନାହିଁ । ପ୍ରଶ୍ନ ଉଠିପାରେ - ପରାଧୀନ ଭାରତରେ ଓ ଦେଶର ଗଣମାଧ୍ୟମ ବହୁଭାବରେ ସରକାରୀ ନିୟନ୍ତ୍ରଣାଧୀନ ଥିବା ଅବସ୍ଥାରେ ଯଦି ଦେଶର ଜନଗଣଙ୍କ ଭିତରେ ଐକ୍ୟ(!) ରହିବା ସହିତ ଏକ ଗଣ ଆନ୍ଦୋଳନ ସୃଷ୍ଟି ହୋଇ ପାରିଥିଲା ତେବେ ସଂପ୍ରତି ଏକ ଅନୁକୂଳ ପରିସ୍ଥିତି ଥାଇ ମଧ କାହିଁକି ସାମାଜିକ ପରିବର୍ତ୍ତନ ପାଇଁ ଗଣ ଆନ୍ଦୋଳନ ସଂଘଟିତ ହୋଇପାରୁ ନାହିଁ ? ଅର୍ଥାତ୍ ପରାଧୀନ ଭାରତରେ ରାଷ୍ଟ୍ରଗଠନ ପାଇଁ ଯେଉଁ ଦେଶାତ୍ମବୋଧ ରହିଥିଲା ତାହା ସ୍ୱାଧୀନ ଭାରତରେ କାହିଁକି ରହିପାରୁ ନାହିଁ ? ଏହି ପରିପ୍ରେକ୍ଷୀରେ ଜନଗଣଙ୍କ ମଧ୍ୟରେ ଜାତୀୟତାବୋଧ ସୃଷ୍ଟି କରିବାରେ ଦୁଇଟି ଭିନ୍ନ ପରିବେଶ ଓ ପରିସ୍ଥିତି ମଧ୍ୟରେ ଥିବା ପାର୍ଥକ୍ୟକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଏକ ପରାଧୀନ ରାଷ୍ଟ୍ରରେ ଜନଗଣଙ୍କ ଭିତରେ ଦେଶାତ୍ମବୋଧ ସୃଷ୍ଟି କରିବା ଆନୁପାତିକ ଭାବରେ ସହଜସାଧ୍ୟ ମନେହୁଏ । କାରଣ, ଏଠାରେ ଏକ

ବିଦେଶୀ ରାଷ୍ଟ୍ରର ଉପସ୍ଥିତି ହିଁ ଦେଶାତ୍ମବୋଧ ସୃଷ୍ଟି କରିବାରେ ଅଭିନିବେଶ ଯୋଗାଇଥାଏ । ଅଥଚ ଏକ ସ୍ୱାଧୀନ ରାଷ୍ଟ୍ରରେ ସମାଜରେ ସାଂସ୍କୃତିକ କ୍ଷୟଶୀଳତା ବିରୁଦ୍ଧରେ ଜନଗଣଙ୍କୁ ସଙ୍ଗଠିତ କରିବା ସହଜସାଧ୍ୟ ବୋଧ ହୁଏନାହିଁ । ବିଶେଷତଃ ଗୋଟିଏ ସାଂସ୍କୃତିକ ବିଚାରଧାରାର ଅଙ୍ଗବିଶେଷ ହୋଇଥିବାରୁ ତଥା କୌଣସି ବ୍ୟକ୍ତି ବିଶେଷ ଏହି ବ୍ୟବସ୍ଥା ସହ ସଂଶ୍ଳିଷ୍ଟ ନ ଥିବା ଯୋଗୁଁ ଏକ ସ୍ୱାଧୀନ ରାଷ୍ଟ୍ରରେ ଜନଗଣଙ୍କ ମଧ୍ୟରେ ଜାତୀୟତା ବୋଧ ସୃଷ୍ଟି କରିବା ଆନୁପାତିକ ଭାବରେ କଷ୍ଟସାଧ ମନେହୁଏ ।

ପୁନଶ୍ଚ ଯୁଗ ଯୁଗ ଧରି ଭାରତୀୟ ସମାଜ ବ୍ୟବସ୍ଥା ସହ ଏପରି କେତେ ସାଂସ୍କୃତିକ ମୂଲ୍ୟଚୟ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ହୋଇରହିଛି ଯାହା ପ୍ରଗତିଶୀଳ ମୂଲ୍ୟବୋଧ ଓ ସାମାଜିକ ନ୍ୟାୟ ସୃଷ୍ଟି ପାଇଁ ଅନ୍ତରାୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମର ନୈତିକ କ୍ଷୟଶୀଳତା ପାଇଁ ଏହି ଦୃଷ୍ଟିଭଙ୍ଗୀ ଯେ କେତେକାଂଶରେ ଦାୟୀ ତାହା କୁହାଯାଇପାରେ । ସଂପ୍ରତି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ବହୁଳ ପ୍ରସାର ହୋଇଥିଲେ ବି ଏବଂ ତା'ର ବହୁ ସୁଫଳ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ଜୀବନର ଗୁଣାତ୍ମକ ଅଭିବୃଦ୍ଧିରେ ସହାୟକ ହୋଇଥିଲେ ସୁଦ୍ଧା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସମାଜରେ ଯଥେଷ୍ଟ ବିକାଶ ଲାଭ କରିପାରୁ ନାହିଁ । ବରଂ ସ୍ଥଳ ବିଶେଷରେ ଆମ କୁସଂସ୍କାରକୁ ଦୃଢ଼ୀଭୂତ କରିବାରେ ପ୍ରଯୁକ୍ତିବିଦ୍ୟା ସାହାଯ୍ୟ କରୁଛି । ରେଡ଼ିଓ ଓ ଦୂରଦର୍ଶନ ଭଳି ବଳିଷ୍ଠ ଗଣମାଧ୍ୟମ ଜରିଆରେ ଜନମାନସରେ କୁସଂସ୍କାର ଓ ଅବୈଜ୍ଞାନିକ ବିଚାର ପ୍ରସାର ହୋଇପାରୁଛି । ଭାରତୀୟ ଜନମାନସରେ ଧର୍ମଚେତନା ଓ ପାରମ୍ପରିକ ବିଶ୍ୱାସ ସମୂହର ବଳିଷ୍ଠ ପ୍ରଭାବ ରହିଥିବା ଯୋଗୁଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ହେତୁବାଦ ସମାଜରେ ବିକାଶଲାଭ କରିପାରୁ ନାହିଁ । ଆମର ବହୁବିଧ ଅହେତୁକ ବିଶ୍ୱାସ ଭିତରୁ ଜନମାନସରେ ଯଥେଷ୍ଟ ପ୍ରଭାବ ବିସ୍ତାର କରି ରହିଥିବା ତଥା ସାମାଜିକ ନ୍ୟାୟ, ପ୍ରଗତିଶୀଳ ଦୃଷ୍ଟିକୋଣ ଓ ମାନବିକ ମୂଲ୍ୟବୋଧର ପ୍ରସାର ଦିଗରେ ଅନ୍ତରାୟ ସୃଷ୍ଟି କରୁଥିବା କେତେକ ସର୍ବନିମ୍ନ ବିଶ୍ୱାସ ଏଠାରେ ବିଚାର କରାଯାଉ ।

ଭାରତୀୟ ହିନ୍ଦୁ ସମାଜକୁ ଜାତି ପ୍ରଥା ଯୁଗ ଯୁଗ ଧରି ପଙ୍ଗୁ କରି ରଖିବା ଏକ ଐତିହାସିକ ସତ୍ୟ ଅଟେ । ଜାତିପ୍ରଥା ସାମାଜିକ ମନସ୍ତତ୍ତ୍ୱ ଭିତରେ ଏବେବି କାୟା ବିସ୍ତାର କରି ରହିଛି । ଜାତିଗତ ମାନସିକତା ଅତୀତରେ ସମାଜକୁ ବହୁଧା ବିଭାଜନ କରି ସାମାଜିକ ସଂହତି କ୍ଷେତ୍ରରେ ଅନ୍ତରାୟ ହୋଇ ରହିଥିଲା । ଶ୍ରମର ମର୍ଯ୍ୟାଦା କ୍ଷେତ୍ରରେ ଏହା ଏବେବି ଅନ୍ତରାୟ ହୋଇ ରହିଛି । ସ୍ୱାଧୀନ ଭାରତରେ ରାଜନୀତି କ୍ଷେତ୍ରରେ ଏହା ପ୍ରବେଶ କରି ରାଜନୈତିକ ଆଦର୍ଶକୁ କଳୁଷିତ କରିଛି । ଗଣତାନ୍ତ୍ରିକ ଆଚରଣର ବିକାଶ ଦିଗରେ ଏହା ସବୁଠାରୁ ବଡ଼ ପ୍ରତିବନ୍ଧକ ହୋଇ ରହିଛି । ସମାଜରେ ସକଳ ବ୍ୟକ୍ତି ବିଶେଷଙ୍କୁ ସମାନ ସାମାଜିକ ସମ୍ମାନ ଦେବା ଓ ପ୍ରତ୍ୟେକ ବ୍ୟକ୍ତିକୁ ସାମାଜିକ ମର୍ଯ୍ୟାଦା

ପ୍ରଦାନ କରିବା ଜାଗତିକ ବ୍ୟବସ୍ଥାରେ ସମ୍ଭବ ହୋଇପାରେ ନାହିଁ । ସ୍ୱାଧୀନତାର ପ୍ରାକ୍ କାଳରେ ଗାନ୍ଧିଜୀ ଓ କେତେକ ସାମାଜିକ ସଂସ୍କାରକ ଅସ୍ପୃଶ୍ୟତା ଦୂରୀକରଣ ନେଇ ବହୁ ବାସ୍ତବ ପଦକ୍ଷେପ ଜରିଆରେ ସାମାଜିକ ଚେତନା ସୃଷ୍ଟି କରିଥିଲେ । ସେତେବେଳେ ଏହା ବିଶ୍ୱାସ କରାଯାଉଥିଲା ଯେ ଅସ୍ପୃଶ୍ୟତା ଦୂରୀଭୂତ ହୋଇପାରିଲେ ଜାତିପ୍ରଥା ଛାଏଁ ଛାଏଁ ସମାଜରୁ ଲୋପ ପାଇଯିବ । ସେହିପରି ସମାଜବାଦୀ ଓ କମ୍ୟୁନିଷ୍ଟ ସଂଗଠନ ସହ ସଂଶ୍ଳିଷ୍ଟ ଥିବା ନେତୃବୃନ୍ଦ ନାନା ଶ୍ରମିକ ସଂଗଠନ ବା କୃଷକ ଆନ୍ଦୋଳନ ସହିତ ନିଷ୍ଠାର ସହ କାର୍ଯ୍ୟକରି ଶ୍ରେଣୀ ସଂଘର୍ଷ ଭାବଧାରା ବିଷୟରେ କିଛି ସଚେତନତା ସୃଷ୍ଟି କରିପାରିଥିଲେ ବି ଜାତିପ୍ରଥା ଭଳି ଗୋଟିଏ ନିଷ୍ଠୁର ସାମାଜିକ ବ୍ୟବସ୍ଥାକୁ ଦୂର କରିବାରେ ବା ସାମାଜିକ କ୍ରାନ୍ତି ସୃଷ୍ଟି କରିବାରେ ସମର୍ଥ ହୋଇପାରି ନାହାନ୍ତି । ଅଧିକନ୍ତୁ ଅସ୍ପୃଶ୍ୟତା ଦୂର ହେଲେ ଜାତିପ୍ରଥା ଦୂର ହୋଇଯିବ ଏହି ବିଶ୍ୱାସ ବି ଠିକ୍ ବୋଲି ପ୍ରମାଣିତ ହୋଇନାହିଁ । ଅସ୍ପୃଶ୍ୟତା ବିରୁଦ୍ଧରେ ସରକାରୀ ଆଇନ ଓ ପରିବର୍ତ୍ତିତ ସାମାଜିକ ପରିବେଶ ଯୋଗୁଁ ଏହା କେତେକାଂଶରେ ସମାଜରୁ ଦୂର ହୋଇପାରିଥିଲେ ବି ଜାତିପ୍ରଥା ଦୂର ହୋଇପାରି ନାହିଁ ।

ଜାତିପ୍ରଥା ଭଳି ଆଉ ଯେଉଁ ଦୃଷ୍ଟିଭଙ୍ଗୀଟି ଜନଗଣଙ୍କୁ ସାମାଜିକ ଘଟଣା ପ୍ରବାହ ପ୍ରତି ବିତସ୍ପୃହ କରି ରଖିଥାଏ ତାହା ହେଲା ଆମର ପାରଲୌକିକ ବିଶ୍ୱାସ । ଆମ ପରଂପରାରେ ବ୍ୟକ୍ତିର ସାମାଜିକ ଜୀବନକୁ ହେୟ କରାଯାଇ ଜୀବନର ଲକ୍ଷ୍ୟ ପ୍ରାପ୍ତି କ୍ଷେତ୍ରରେ କେତେକ ଅତୀନ୍ଦ୍ରିୟ ଓ ଅଲୌକିକ ବିଶ୍ୱାସକୁ ଶ୍ରେୟ ଭାବରେ ଗ୍ରହଣ କରାଯାଇଛି । ଆମର ସାମାଜିକ ମନସ୍ତତ୍ତ୍ୱକୁ ଆମର ଧର୍ମଗ୍ରନ୍ଥ, ଯୋଗୀ, ସାଧୁ ଓ ତଥାକଥିତ ଅବତାର ପୁରୁଷଗଣ ଏପରି ପ୍ରଭାବିତ କରିଛନ୍ତି ଯେ ଜୀବନର ନ୍ୟୁନତମ ଆବଶ୍ୟକତାକୁ ପୂରଣ କରିପାରୁ ନଥିବା ବ୍ୟକ୍ତି ବିଶେଷ ଏକ ପାରଲୌକିକ ଜଗତର କଳ୍ପନାକୁ ଗ୍ରହଣ କରିନେଉଛି । ସୁତରାଂ ସାମାଜିକ ଜୀବନରେ ବ୍ୟକ୍ତିର ନୈତିକ ଅଙ୍ଗୀକାରବୋଧ ନେଇ ସଚେତନତା ଆମ ସମାଜରେ ନାହିଁ । ଧର୍ମଗତ ଉପାସନା ଓ ଉପଚାର ନେଇ ସାଧାରଣ ଜନଗଣ ଯେତିକି ଆଗ୍ରହ ଓ ସାମର୍ଥ୍ୟ ବିନିଯୋଗ କରିଥାନ୍ତି ବାସ୍ତବ ଜୀବନରେ ନିମ୍ନତମ ନୈତିକତା ରକ୍ଷା କରିବାରେ ସେତିକି ସଚେତନତା ପ୍ରକାଶ କରନ୍ତି ନାହିଁ । ଅର୍ଥାତ୍ ନୈତିକ ଅଙ୍ଗୀକାର ଓ ସାମାଜିକ ଶୃଙ୍ଖଳାବୋଧ ନେଇ ସମାଜରେ ସଚେତନତା ନ ଥିବାବେଳେ ଧର୍ମୀୟ ପରମ୍ପରା ଓ କର୍ମକାଣ୍ଡ ନେଇ ଭାବାବେଗ ଅଧିକ ରହିବା ଦେଖାଯାଏ । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ ଜନଗଣ ଧର୍ମୀୟ ଉପାସନା ପାଳନ କରିବା ଦ୍ୱାରା ପାରଲୌକିକ ପୁଣ୍ୟତା ଲାଭ କରିବେ ବୋଲି ବିଶ୍ୱାସ କରିଥାନ୍ତି । ପରିଣାମତଃ କେତେକ ସାଂସ୍କୃତିକ ଭାବଧାରାର ପ୍ରଭାବରେ ଆମ ଜୀବନର ଦୃଷ୍ଟିଭଙ୍ଗୀ ସାମାଜିକ କର୍ତ୍ତବ୍ୟବୋଧ ପ୍ରତି ଅଙ୍ଗୀକାର ରହିବା ବା ନୀତିନିଷ୍ଠ ହେବା ପରିବର୍ତ୍ତେ ଅଧିକ ସ୍ୱାର୍ଥକେନ୍ଦ୍ରିକ ହୋଇ ରହିଛି ।

ସେହିପରି ଭାଗ୍ୟବାଦ ସମାଜର ପ୍ରଗତିଶୀଳ ମୂଲ୍ୟବୋଧର ବିକାଶ କ୍ଷେତ୍ରରେ ଅନ୍ତରାୟ ହୋଇ ରହିଛି । ସମାଜର ସକଳ ଅନ୍ୟାୟ ଓ ବ୍ୟକ୍ତି ଜୀବନର ସ୍ଥିତି ପୂର୍ବ ନିର୍ଦ୍ଦିଷ୍ଟ ବୋଲି ବହୁ ସମୟରେ ଜନଗଣ ବିଶ୍ୱାସ କରିଆସିଛନ୍ତି । ସମାଜର ପ୍ରତ୍ୟେକଟି ବ୍ୟବସ୍ଥା ଯେ ସାମାଜିକ ଅନୁଷ୍ଠାନ, ନିୟନ୍ତ୍ରଣ ଓ ଶାସନ ବ୍ୟବସ୍ଥାରୁ ସୃଷ୍ଟି ଏହି ବିଶ୍ୱାସ ଆମ ସମାଜରେ ଯଥେଷ୍ଟ ବିକାଶଲାଭ କରିନାହିଁ । ସବୁ କିଛି ଅଦୃଷ୍ଟର ନିୟନ୍ତ୍ରଣାଧୀନ ଓ ପୂର୍ବ ନିର୍ଦ୍ଧାରିତ ବୋଲି ଯୁଗ ଯୁଗ ଧରି ବିଶ୍ୱାସ କରାଯାଇଛି । ପରିଣାମତଃ ସମାଜକୁ ଉନ୍ନତ କରିବାରେ ବ୍ୟକ୍ତିର ଭୂମିକା ଓ ବ୍ୟକ୍ତିଗତ ପ୍ରୟାସର ମହତ୍ତ୍ୱ ନେଇ ଯଥେଷ୍ଟ ସଚେତନତା ସାମାଜିକ ଜୀବନଧାରାରେ ରହି ନାହିଁ ।

ଆମର ସଂସ୍କୃତି ଯେଉଁସବୁ ଆଦର୍ଶ ଓ ଭାବଧାରାକୁ ନେଇ ପୁଷ୍ଟ ହୋଇଛି ତାକୁ ସାଂପ୍ରତିକ ଯୁଗର ଅନ୍ୱେଷା ଓ ଜୀବନଧର୍ମ ସହିତ ତୁଳନା କରାଯିବା ଆବଶ୍ୟକ । କୌଣସି ସଂସ୍କୃତିର ଯଥାର୍ଥ ମୂଲ୍ୟାୟନ ଛଡ଼ା ତାହାର ପ୍ରଗତିଶୀଳ ଓ କ୍ଷୟଶୀଳ ଦିଗ ବିଷୟରେ ଯଥେଷ୍ଟ ସ୍ୱଚ୍ଛତା ଆସିପାରେ ନାହିଁ । ସେହି ପରିପ୍ରେକ୍ଷୀରେ ଆମ ସଂସ୍କୃତିର ମହନୀୟ ଦିଗ ଛଡ଼ା ଏହାର ଯେଉଁସବୁ ମନ୍ଦ ପ୍ରଭାବ ଆମର ଜନ ଜୀବନକୁ ଯୁଗ ଯୁଗ ଧରି ପ୍ରଭାବିତ କରି ରଖିଛି ତା'ର ମୂଲ୍ୟାୟନ ହେବା ଦରକାର । ଏ କ୍ଷେତ୍ରରେ ଭାବାବେଗ ପରିବର୍ତ୍ତେ ବିଚାରଶୀଳତା ମାପକାଠି ହେବା ଆବଶ୍ୟକ । ଆମ ସାମୂହିକ ଜୀବନଧାରାକୁ କ୍ଷୟଶୀଳ କରାଉଥିବା ଭାବାବେଗ ସମ୍ବନ୍ଧରେ ସଚେତନ ନ ହେଲେ ଆମର ଦୃଷ୍ଟିଭଙ୍ଗୀରେ ମୌଳିକ ପରିବର୍ତ୍ତନ ସଂଘଟିତ ହୋଇପାରିବ ନାହିଁ । ବସ୍ତୁତଃ କୌଣସି ଆଦର୍ଶକୁ ଜାତୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଗଲେ ବି ଜନଜୀବନରେ ତା'ର ବାସ୍ତବ ପ୍ରତିଫଳନ ନ ହୋଇପାରିଲେ ଆମର ଈପ୍‌ସିତ ଲକ୍ଷ୍ୟ ବିଡମ୍ବିତ ହୋଇ ରହିବ । ଉଦାହରଣ ସ୍ୱରୂପ ଧର୍ମ ନିରପେକ୍ଷ ମୂଲ୍ୟଚୟକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ନିଆଗଲେ ବି ସମାଜର ଜନଗଣଙ୍କର ଦୃଷ୍ଟିଭଙ୍ଗୀ ଯଦିଓ ସାଂପ୍ରଦାୟିକ ଭାବନା ଭିତରେ ନିମଜ୍ଜିତ ଥାଏ – ଯାହା ବହୁ ସମୟରେ ଆମ ଜାତୀୟ ଦୃଶ୍ୟପଟରେ ଦେଖାଯାଏ – ତେବେ ଈପ୍‌ସିତ ଲକ୍ଷ୍ୟ ପୂରଣ ହୋଇପାରେ ନାହିଁ । ଧର୍ମନିରପେକ୍ଷତା ପରି ଗଣତାନ୍ତ୍ରିକ ଆଚରଣ, ଜାତିହୀନ ସମାଜ ଇତ୍ୟାଦି ଆଦର୍ଶଚୟ ସଂପର୍କରେ ଏହା ମଧ୍ୟ କୁହାଯାଇପାରେ ।

ବସ୍ତୁତଃ ସମାଜର କୌଣସି ଅଭିଳକ୍ଷିତ ଲକ୍ଷ୍ୟ ସାଧନ ଦିଗରେ ରହିଥିବା ଅନ୍ୟାନ୍ୟ ପ୍ରତିବନ୍ଧକ ଅପେକ୍ଷା ଜନଗଣଙ୍କର ଦୃଷ୍ଟିଭଙ୍ଗୀ ଓ ବିଚାରଶୀଳତାର ପ୍ରଭାବ ଅଧିକ ମୂଲ୍ୟବାନ ମନେହୁଏ । ଯେଉଁ ପରମ୍ପରା, ବିଶ୍ୱାସ ଓ ଦୃଷ୍ଟିଭଙ୍ଗୀ ଲୋକଙ୍କର ଜୀବନଧାରାକୁ ପ୍ରଭାବିତ କରି ରଖିଥାଏ ତାହା ପ୍ରଗତିଶୀଳ ମୂଲ୍ୟବୋଧର ପ୍ରତିକୂଳ ହେଲେ ସମାଜରେ ସାଂସ୍କୃତିକ ସଂକଟର ଉଦ୍ରେକ ହୁଏ । ପରମ୍ପରା କ୍ରମରେ ଅନୁସୃତ ହେଉଥିବା ବିଶ୍ୱାସଗୁଡ଼ିକ ଅହେତୁକ ବା ଅନୈତିକ ହୋଇଥିଲେ ତାହା ସମାଜର ଗୁଣାତ୍ମକ

ଅଗ୍ରଗତି କ୍ଷେତ୍ରରେ ପ୍ରତିବନ୍ଧକ ହୋଇଥାଏ । ଏପରିକି ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଚାହୁଁଥିବା ବ୍ୟକ୍ତିବିଶେଷ ସମୟରେ ଏହି ସାଂସ୍କୃତିକ ଭାବଧାରାକୁ ନିଜର ଅବଚେତନ ସ୍ତରରେ ଏପରି ଗ୍ରହଣ କରି ନେଇଥାନ୍ତି ଯଦ୍ୱାରା ଏହାର ମନ୍ଦ ଦିଗଟି ପ୍ରତି ଯଥେଷ୍ଟ ଧ୍ୟାନ ଦେଇପାରନ୍ତି ନାହିଁ ।

ସୁତରାଂ ସମାଜର ପାରମ୍ପରିକ ବିଶ୍ୱାସ ସମୂହକୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବତାବାଦ ଆଭିମୁଖ୍ୟରୁ ପର୍ଯ୍ୟାଲୋଚନା କରାଯିବା ଆବଶ୍ୟକ । କୌଣସି ଭାବଧାରାକୁ ଏହାର ଉତ୍କର୍ଷତା ପରିବର୍ତ୍ତେ ଏହାର ପ୍ରାଚୀନତା ବା ଶାସ୍ତ୍ରୀୟ ପ୍ରମାଣ ଭିତରେ ଗ୍ରହଣ କରିବାଦ୍ୱାରା ସାଂସ୍କୃତିକ କ୍ଷୟଶୀଳତାର ସୂତ୍ରପାତ ହୁଏ । ଗୋଟିଏ ସାମାଜିକ ବ୍ୟବସ୍ଥା ଓ ପରମ୍ପରା ସବୁ ପରିସ୍ଥିତିରେ ଗ୍ରହଣଯୋଗ୍ୟ ନୁହେଁ । ବୈଜ୍ଞାନିକ କ୍ରିୟାଶୀଳତା ଓ ଜ୍ଞାନର ବିକାଶ ସହିତ ମଣିଷର ଜୀବନାଦର୍ଶ ଓ ସାମାଜିକ ଶ୍ରେୟ ପରିବର୍ତ୍ତିତ ହେଉଥାଏ । ସୁତରାଂ ସମୟର ପରିବର୍ତ୍ତନ ସହ ପରମ୍ପରା ଜନିତ ବିଶ୍ୱାସ ଓ ଭାବାଦର୍ଶର ମୂଲ୍ୟାୟନ କରାଯାଇ ଏହାର ଉତ୍କର୍ଷ ଦିଗଟିକୁ ଗ୍ରହଣ କରିବା ସହିତ ଯଦି ଅପକର୍ଷତାକୁ ପରିହାର କରାଯାଏ ତାହା ଏକ ଜୀବନ୍ତ ସଂସ୍କୃତି ଭାବରେ ତିଷ୍ଠି ରହେ । ଅଥଚ ସମସ୍ତ ପରିବର୍ତ୍ତନ ପ୍ରତି ବିତସ୍ପୃହ ରହି କେତେକ ପରମ୍ପରାକୁ ଚିରନ୍ତନ ସଂସ୍କୃତି ବୋଲି ଗ୍ରହଣ କରିବାଦ୍ୱାରା ସମାଜ କ୍ଷୟଶୀଳ ହୋଇଥାଏ । ଏକ କ୍ଷୟଶୀଳ ସମାଜ ସାମାଜିକ ଶ୍ରେୟ ସାଧନ ବା ଜୀବନର ଗୁଣାତ୍ମକ ବିକାଶ କ୍ଷେତ୍ରରେ ଯେ ସବୁଠାରୁ ବଡ଼ ପ୍ରତିବନ୍ଧକ ଏହା ନିଃସନ୍ଦେହରେ କୁହାଯାଇପାରେ ।

■■

# ଶିକ୍ଷା ଓ ସାମାଜିକ ଦୃଶ୍ୟପଟ

ଯେକୌଣସି ସମାଜ ଓ ରାଷ୍ଟ୍ରର ସାମୂହିକ କଲ୍ୟାଣ ପାଇଁ ଏକ ଉନ୍ନତ ଶିକ୍ଷା ବ୍ୟବସ୍ଥା ଏକାନ୍ତ ଆବଶ୍ୟକ । ଯେଉଁ ଦେଶର ଶିକ୍ଷା ବ୍ୟବସ୍ଥା ଯେତିକି ଉନ୍ନତ ଓ ଶୃଙ୍ଖଳିତ ସେ ଦେଶ ସେତିକି ସଭ୍ୟ ଓ ତା'ର ସାମାଜିକ ଜୀବନ ସେତିକି ସଂସ୍କୃତି ସଂପନ୍ନ । ଏହା ଅନସ୍ୱୀକାର୍ଯ୍ୟ ଯେ ଶୃଙ୍ଖଳିତ ସାମାଜିକ ଜୀବନ ଦେଶର ଶିକ୍ଷା ବ୍ୟବସ୍ଥା ଉପରେ ଅନେକାଂଶରେ ନିର୍ଭରଶୀଳ; କାରଣ, ଜୀବନର ଗୁଣାତ୍ମକ ଅଭିବୃଦ୍ଧିରେ ଶିକ୍ଷାର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଜୀବନର ଗୁଣାତ୍ମକ ଅଭିବୃଦ୍ଧି ପାଇଁ ହେଉ ବା ସମାଜର ସାମୂହିକ କଲ୍ୟାଣ ସାଧନ ପାଇଁ ହେଉ ଏ ପ୍ରତ୍ୟେକଟି ସମାଜର ଉନ୍ନତ ଶିକ୍ଷା ବ୍ୟବସ୍ଥା ସହିତ ଅଙ୍ଗାଙ୍ଗୀ ଭାବରେ ସଂଶ୍ଳିଷ୍ଟ । ବସ୍ତୁତଃ ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରରେ ଦେଶର ଶିକ୍ଷା ବ୍ୟବସ୍ଥାକୁ ପ୍ରାଧାନ୍ୟ ଦିଆ ଯାଇଥାଏ । ଏକ ସୁଚିନ୍ତିତ ଶିକ୍ଷା ବ୍ୟବସ୍ଥା ମାଧ୍ୟମରେ ଦେଶର ଭାବୀ ନାଗରିକମାନଙ୍କର ବିକାଶ କରାଇବା ଦ୍ୱାରା ସାମାଜିକ ଲକ୍ଷ୍ୟ ହାସଲ ସମ୍ଭବ ହୋଇଥାଏ । ସାମାଜିକ ଲକ୍ଷ୍ୟ ହାସଲ କ୍ଷେତ୍ରରେ ତଥା ଜୀବନର ଗୁଣାତ୍ମକ ମାନ ଅଭିବୃଦ୍ଧିରେ ଶିକ୍ଷା ବ୍ୟବସ୍ଥା ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ନେଇଥାଏ ।

ଶିକ୍ଷାର ଅର୍ଥ ଓ ପରିସର ବହୁ ବ୍ୟାପକ । ସଭ୍ୟତାର ବିକାଶ ସହିତ ଶିକ୍ଷା କ୍ଷେତ୍ରରେ ପ୍ରାଚୀନ କାଳରୁ ଏପର୍ଯ୍ୟନ୍ତ ନାନା ନୂତନ ପ୍ରୟୋଗ ଓ ପରୀକ୍ଷା ହୋଇ ଆସିଛି । ପୃଥିବୀର ପ୍ରତ୍ୟେକ ଉନ୍ନତ ସଭ୍ୟତାରେ ସମାଜ ବିଜ୍ଞାନୀ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ଶିକ୍ଷା କ୍ଷେତ୍ରରେ ନୂଆ ନୂଆ ଦିଗନ୍ତର ସନ୍ଧାନ ଦେଇଛନ୍ତି । ସମାଜର ପରିବର୍ତ୍ତିତ ପରିସ୍ଥିତିରେ ନୂଆ ନୂଆ ଶିକ୍ଷା ପଦ୍ଧତି ମଧ୍ୟ ଅନୁସୃତ ହୋଇଛି । ମହାମତି ପ୍ଲେଟୋଙ୍କଠାରୁ ଆରମ୍ଭ କରି ଆଧୁନିକ ଯୁଗରେ ଜନ ଡ୍ୟୁ ଓ ମହାତ୍ମା ଗାନ୍ଧୀଙ୍କ ପର୍ଯ୍ୟନ୍ତ ଚିନ୍ତାନାୟକମାନେ ସେମାନଙ୍କର ବିଚାର ବିମର୍ଶଦ୍ୱାରା ଶିକ୍ଷା ଦର୍ଶନର ଇତିହାସକୁ ପରିପୁଷ୍ଟ କରିଛନ୍ତି । ଶିକ୍ଷାର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ଉପଯୋଗ ସମ୍ବନ୍ଧରେ ଶିକ୍ଷା ଦର୍ଶନରେ ନାନା ସିଦ୍ଧାନ୍ତମାନ ରହିଛି ।

ଶିକ୍ଷାକୁ ଯଦିଓ ଜ୍ଞାନ ଅର୍ଥରେ ବ୍ୟବହାର କରାଯାଏ ତେବେ ଏହା କହିବା ଅସମୀଚୀନ ହେବନାହିଁ ଯେ ଜ୍ଞାନ ହିଁ ହେଉଛି ଶକ୍ତି । ଏକ ବ୍ୟାପକତର ଅର୍ଥରେ ଏହା

କୁହଯାଇ ପାରିବ ଯେ ଗୋଟିଏ ବ୍ୟକ୍ତିର ଜ୍ଞାନ ଆହରଣ ଆନୁଷ୍ଠାନିକ ଶିକ୍ଷା ବା ଜୀବନର ଏକ ନିର୍ଦ୍ଦିଷ୍ଟ ଅବଧି ଭିତରେ ସମାପ୍ତ ହୋଇଯାଏ ନାହିଁ । ବରଂ ମଣିଷର ଅନୁଭୂତି ଯେତିକି ବ୍ୟାପକ ହେଉଥାଏ ଜୀବନର ଅଭିଜ୍ଞତା ସେତିକି ପକ୍ୱ ହେଉଥାଏ । ଜଣେ ବ୍ୟକ୍ତି ତା'ର ଜନ୍ମଠାରୁ ଆରମ୍ଭ କରି ଜୀବନର ଶେଷ ପର୍ଯ୍ୟନ୍ତ ତା'ର ସାମାଜିକ ପରିବେଶରୁ ନାନା ଅନୁଭୂତି ଲାଭ କରିଥାଏ । ସୁତରାଂ ବ୍ୟକ୍ତିର ଜୀବନରେ ଶିକ୍ଷାର ପୂର୍ଣ୍ଣତା ଆସିବା ଅସମ୍ଭବ ମନେହୁଏ । ଏହି ମାନଦଣ୍ଡରେ 'ସମଗ୍ର ଜୀବନ ହିଁ ଶିକ୍ଷା' ବୋଲି କେହି କେହି କହିଥାନ୍ତି । ଶିକ୍ଷାର ଏହି ବୃହତ୍ତର ଅର୍ଥ ପରିପ୍ରେକ୍ଷୀରେ ଶିକ୍ଷା ଆନୁଷ୍ଠାନିକ ବା ଅଣଆନୁଷ୍ଠାନିକ ହୋଇପାରେ । ଅଣଆନୁଷ୍ଠାନିକ ଶିକ୍ଷାର ପରିସର ଅତି ବ୍ୟାପକ ଥିବା ସ୍ଥଳେ ଆନୁଷ୍ଠାନିକ ଶିକ୍ଷାକୁ କେତୋଟି ବର୍ଷ ଭିତରେ ସୀମିତ ରଖାଯାଏ । ସୁତରାଂ ବିଷୟଟିର ବ୍ୟାପକତା ଦୃଷ୍ଟିରୁ ଶିକ୍ଷା ସଂକ୍ରାନ୍ତରେ ନାନା ଦିଗରୁ ଓ ନାନା ପ୍ରସଙ୍ଗକୁ ନେଇ ଆଲୋଚନା କରାଯାଇପାରେ । ଶଂସିତ ପ୍ରବନ୍ଧରେ ଆମ ଦେଶର ପ୍ରଚଳିତ ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ କିଛି ଆଲୋଚନା କରାଯିବାକୁ ପ୍ରୟାସ କରାଯାଇଛି ।

ପରାଧୀନ ଭାରତରେ ଇଂରେଜମାନେ ପ୍ରଶାସନିକ ସୁବିଧା ଉଦ୍ଦେଶ୍ୟରେ କର୍ମଚାରୀ ସୃଷ୍ଟି କରିବା ପାଇଁ ଏକ/ବ୍ୟବସ୍ଥା ପ୍ରଚଳନ କରିଥିଲେ । ତା' ପୂର୍ବରୁ ଆନୁଷ୍ଠାନିକ ଶିକ୍ଷାର କୌଣସି ସୁଯୋଗ ଆମ ସମାଜରେ ପ୍ରାୟ ନ ଥିଲା । ବ୍ରିଟିଶ ଭାରତରେ ଟି.ବି. ମାକଲେ (୧୮୦୦-୧୮୫୯) ଭାରତବର୍ଷରେ ଉଚ୍ଚ ଶିକ୍ଷାର ରୂପରେଖ ଆଙ୍କିଥିଲେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ସାମାନ୍ୟ କେତୋଟି ଅନୁଷ୍ଠାନକୁ ଛାଡ଼ିଦେଲେ ମାକଲେଙ୍କ ଦ୍ୱାରା ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଆମର ଜାତୀୟ ଶିକ୍ଷାନୀତି ଭାବରେ ଚଳି ଆସିଥିଲା । ୧୯୩୬ ମସିହାରେ ଗାନ୍ଧିଜୀ ବ୍ରିଟିଶ ଶିକ୍ଷାନୀତିକୁ ତ୍ରୁଟିପୂର୍ଣ୍ଣ ଦର୍ଶାଇ 'ନୂଆ ତାଲିମ' ନାମରେ ଏକ ଶିକ୍ଷାନୀତିର ବ୍ୟାଖ୍ୟା କରିଥିଲେ । ଏହାକୁ ମୌଳିକ ଶିକ୍ଷା କୁହାଗଲା । ଏହି ଶିକ୍ଷା ବ୍ୟବସ୍ଥା ବ୍ୟକ୍ତିକୁ ସ୍ୱାବଲମ୍ବନଶୀଳ କରାଇବା ଆଭିମୁଖ୍ୟ ନେଇ ଗଢ଼ି ଉଠିଥିଲା । ଏହି ମୌଳିକ ଶିକ୍ଷାନୀତିରେ ପ୍ରତ୍ୟେକ ଛାତ୍ର ବା ଛାତ୍ରୀକୁ ତା'ର ଅଭିରୁଚି ଅନୁଯାୟୀ କାରିଗରୀ ତାଲିମ ଦେବା ସହିତ ବୌଦ୍ଧିକ ଓ ନୈତିକ ଶିକ୍ଷା ଦେବାକୁ ପରାମର୍ଶ ଦିଆଯାଇଥିଲା । ଗାନ୍ଧୀଙ୍କ ଶିକ୍ଷା ବ୍ୟବସ୍ଥାରେ ଶରୀର ଶ୍ରମକୁ ଅଧିକ ଗୁରୁତ୍ୱ ଦିଆ ଯାଇଥିଲା । ସ୍ୱାଧୀନ ଭାରତରେ ଦେଶର ଶିକ୍ଷାନୀତି ପ୍ରଣୟନ କରିବା ପାଇଁ ସରକାର ନାନା କମିଟି ଓ କମିଶନ ନିଯୁକ୍ତ କରିଥିଲେ । ସେ ମଧ୍ୟରୁ ୧୯୪୮-୪୯ରେ ଡଃ ରାଧାକ୍ରିଷ୍ଣନ କମିଶନ, ୧୯୫୨-୫୩ ରେ ଡଃ ମୁଦାଲିୟର କମିଶନ ଓ ତୃତୀୟ ପଞ୍ଚବାର୍ଷିକ ଯୋଜନାର ଶେଷ ଭାଗରେ ୧୯୬୪-୬୬ ରେ ଡଃ କୋଠାରୀ କମିଶନ ଜାତୀୟ ଶିକ୍ଷାନୀତି ଉପରେ ଅତି ପାଣ୍ଡିତ୍ୟପୂର୍ଣ୍ଣ ପରାମର୍ଶ ମାନ ସରକାରଙ୍କୁ ଦେଇଛନ୍ତି । ଏହିସବୁ ଶିକ୍ଷାବିଦ୍ ମାନଙ୍କର ପରାମର୍ଶକୁ ଅନୁଧ୍ୟାନ କରି ୧୯୬୮ରେ ସରକାର ଆମର

ଜାତୀୟ ଶିକ୍ଷାନୀତି ପ୍ରଣୟନ କରିଥିଲେ । ଏହାର ଅଠର ବର୍ଷ ପରେ ୧୯୮୬ରେ ଆଉ ଏକ ଜାତୀୟ ଶିକ୍ଷାନୀତି ପ୍ରଣୟନ କରାଯାଇ ଏହାର ପ୍ରୟୋଗ ଆରମ୍ଭ ହୋଇଛି ।

ସ୍ୱାଧୀନତା ପ୍ରାପ୍ତି ପରେ ଆନୁଷ୍ଠାନିକ ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଆମର ଜାତୀୟ ଯୋଜନା ସ୍ତରରେ ଶିକ୍ଷାକୁ ପ୍ରାଧାନ୍ୟ ଦିଆଯିବା ମନେହୁଏ । ପରିଣାମତଃ ସ୍ୱାଧୀନତା ପରେ ଦେଶରେ ସାକ୍ଷରତା ଅନେକାଂଶରେ ବଢ଼ିଛି ଓ ଶିକ୍ଷାୟତନ ସଂଖ୍ୟା ବୃଦ୍ଧି ପାଇଛି । ପ୍ରାଥମିକ ସ୍ତରଠାରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଶିକ୍ଷାନୁଷ୍ଠାନମାନଙ୍କର ପରିମାଣାତ୍ମକ ଅଭିବୃଦ୍ଧି ଘଟିଛି ଓ ଜାତୀୟ ଆୟର ମୁଖ୍ୟ ଅଂଶ ଏଥିରେ ବ୍ୟୟ କରାଯାଉଛି । ଏହା ସହିତ ଅଣଆନୁଷ୍ଠାନିକ ଶିକ୍ଷା ଉପରେ ମଧ ଗୁରୁତ୍ୱ ଆରୋପ କରାଯାଇ ସରକାରୀ ଉଦ୍ୟୋଗ ତଥା ସ୍ୱେଚ୍ଛାସେବୀ ସଂଗଠନ ଜରିଆରେ ପ୍ରୌଢ଼ ଶିକ୍ଷା ଓ ନାରୀଶିକ୍ଷାକୁ ପ୍ରୋତ୍ସାହନ ଦିଆଯାଉଛି । ସରକାରୀ କର୍ମସଂସ୍ଥାନ ସ୍ତରରେ ଆବଶ୍ୟକ ପଡୁଥିବା ଲୋକଶକ୍ତି ଆମର ଯଥେଷ୍ଟ ହୋଇପାରିଛି ଓ ଏପରିକି ଶିକ୍ଷିତ ବେକାର ସମାଜରେ ଏକ ସମସ୍ୟା ଭାବରେ ମୁଣ୍ଡ ଟେକିଛି । ଏହା ସହିତ କୃଷି ଓ ବୈଷୟିକ ସ୍ତରରେ ଆମ ଦେଶ ସ୍ୱାଧୀନତା ପୂର୍ବରୁ ଯେପରି ଅତି/ସ୍ତରରେ ରହିଥିଲା ସେ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ମିଳିଛି । କୃଷି, ଶିଳ୍ପ ଓ ବୈଷୟିକ ଶିକ୍ଷା ସ୍ତରରେ ଉନ୍ନତ ଓ ଉଚ୍ଚମାନର ଗବେଷଣାମାନ ସମ୍ଭବପର ହେଲାଣି । ଜାତୀୟ ସ୍ତରରେ ଉଚ୍ଚମାନର ଗବେଷଣା ପ୍ରତିଷ୍ଠାନ କରାଯାଇ ମୌଳିକ ଗବେଷଣା କରାଯାଇ ପାରୁଛି । ଉନ୍ନତ ରାଷ୍ଟ୍ର ସମୂହର ବିଶ୍ୱବିଦ୍ୟାଳୟମାନଙ୍କରେ ପରିଚାଳିତ ହେଉଥିବା ଗବେଷଣାର ମାନ ସହ ସମକକ୍ଷ ହେବାପାଇଁ ଆମ ଦେଶରେ ଗବେଷଣାକୁ ପ୍ରୋତ୍ସାହନ ଦିଆଯାଇ ପାରିଲାଣି । ସ୍ୱାଧୀନତା ପରେ ଶିକ୍ଷାକ୍ଷେତ୍ରରେ ଏହିପରି ଅନେକ ସୁଫଳ ମିଳିଲାଣି ଓ ଶିକ୍ଷାର ପ୍ରସାର ଯୋଗୁଁ ଆମ ସମାଜର ଅନମନୀୟ ରକ୍ଷଣଶୀଳ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହେଲାଣି ।

ଶିକ୍ଷାକ୍ଷେତ୍ରରେ ଉଲ୍ଲିଖିତ ସୁଫଳ ସହିତ ଶିକ୍ଷାୟତନ ମାନଙ୍କର ପରିମାଣାତ୍ମକ ଓ କିଛି ଗୁଣାତ୍ମକ ଅଭିବୃଦ୍ଧି ହୋଇଥିଲେ ସୁଦ୍ଧା ଏ କ୍ଷେତ୍ରରେ ଆମର ସଫଳତା ଅପେକ୍ଷା ବିଫଳତା ଅଧିକ ମନେହୁଏ । ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧଶତାବ୍ଦୀ ମଧରେ ଶିକ୍ଷା ମାଧମରେ ସମାଜରେ ଯେଉଁ ପରିବର୍ତ୍ତନର ସୂତ୍ରପାତ ହେବା କଥା ତାହା ଏବେବି ବିଡ଼ମ୍ବିତ ହୋଇ ରହିଛି । ସ୍ୱାଧୀନତାର ପ୍ରାକ୍ କାଳରେ ଯେଉଁ ସୁସ୍ଥ ସାମାଜିକ ସମ୍ବନ୍ଧରେ ପରିକଳ୍ପନା କରାଯାଇଥିଲା ଓ ଯାହା ଶିକ୍ଷା ମାଧମରେ ଆସି ପାରିଥାନ୍ତା ତାହା ସୁଦୂର ପରାହତ ମନେହୁଏ । ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଶିକ୍ଷା ବ୍ୟବସ୍ଥା ସେପରି ଉଲ୍ଲେଖନୀୟ ଭୂମିକା ନେଇପାରି ନାହିଁ । ସୁତରାଂ ଜାତୀୟ ଜୀବନର ବିଫଳତା କ୍ଷେତ୍ରରେ ଶିକ୍ଷା କ୍ଷେତ୍ରର ବିଫଳତା ଅଧିକ ବୋଲି କେତେକ ବୁଦ୍ଧିଜୀବୀ ମତ ଦେଇଥାନ୍ତି ।

ଆମ ଶିକ୍ଷା ବ୍ୟବସ୍ଥାର ଏକ ବଡ଼ ଦୁର୍ବଳତା ହେଉଛି ଏହା ଆମର ସାମାଜିକ

ଜୀବନ ସହିତ ବିଶେଷ ସଂହତି ରକ୍ଷା କରିପାରୁ ନାହିଁ । ସମାଜର ବାସ୍ତବ ପରିସ୍ଥିତି ଓ ଜୀବନର ଆବଶ୍ୟକତା ସହ ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥାର ସମ୍ବନ୍ଧ ଥିବା ମନେହୁଏ ନାହିଁ । କୌଣସି ଦେଶର ଶିକ୍ଷା ବ୍ୟବସ୍ଥା ସମାଜର ବାସ୍ତବ ପରିସ୍ଥିତି ଓ ଭବିଷ୍ୟତକୁ ଦୃଷ୍ଟିରେ ରଖି ବିକାଶ ଲାଭ କରିବା ରାଷ୍ଟ୍ରପାଇଁ ମଙ୍ଗଳ ଜନକ ମନେହୁଏ । ପରନ୍ତୁ ଆମର ଶିକ୍ଷା ବ୍ୟବସ୍ଥା ଆମର ସାମାଜିକ ଜୀବନ ସହିତ କିପରି ସଙ୍ଗତି ହରାଇ ବସିଛି ତାହା ଦେଶର କ୍ରମବର୍ଦ୍ଧିଷ୍ଣୁ ବେକାର ସମସ୍ୟାରୁ ଜଣାପଡ଼େ । ଆମ ଦେଶରେ ଅନେକ ଦାରିଦ୍ର୍ୟ ଥିବା ବେଳେ ଓ ଯୁବଶକ୍ତିର ଏକ କ୍ଷୁଦ୍ର ଅଂଶ ଉଚ୍ଚଶିକ୍ଷା ସ୍ତରକୁ ଆସି ପାରୁଥିବା ସ୍ଥଳେ ଦେଶର ଅଗଣିତ ଶିକ୍ଷିତ ଯୁବକ କୌଣସି କର୍ମସଂସ୍ଥାନ ନ ପାଇବା ଏକ ବିଡ଼ମ୍ବନା ଅଟେ । ପ୍ରଚଳିତ ଶିକ୍ଷା ଏପରି ଚାକିରି ସର୍ବସ୍ୱ- ହୋଇପଡ଼ିଛି ଯଦ୍ୱାରା କର୍ମସଂସ୍ଥାନ ଓ ଉପାର୍ଜନ (ତାହା ଯେଉଁ ପନ୍ଥାରେ ହେଉନା କାହିଁକି) ବ୍ୟତୀତ ଉଚ୍ଚ ଶିକ୍ଷାର କୌଣସି ମୂଲ୍ୟ ରହୁ ନାହିଁ । ଆମ ସାମାଜିକ ମନସ୍ତତ୍ତ୍ୱରେ ଶ୍ରମର ମର୍ଯ୍ୟାଦା ନ ଥିବାରୁ ସରକାରୀ କର୍ମସଂସ୍ଥାନକୁ ଯଥେଷ୍ଟ ସ୍ୱୀକୃତି ମିଳି ପାରୁଥିବା ବେଳେ ଶରୀର ଶ୍ରମକୁ ହେୟ ମନେ କରାଯାଉଛି । ସୁତରାଂ ଯୁବ ସମାଜ ଭିତରେ ଏନେଇ ଅସ୍ୱାଭାବିକ ପ୍ରତିଯୋଗିତା ଲାଗିରହୁଛି । ଜଣେ ଶିକ୍ଷିତ ଯୁବକ ଶିକ୍ଷାଲାଭର ଲକ୍ଷ୍ୟକୁ କେବଳ କର୍ମସଂସ୍ଥାନ ଓ ଉପାର୍ଜନ ପାଇଁ ଉଦ୍ଦିଷ୍ଟ ବୋଲି ଭାବୁଥିବାରୁ ସେନେଇ ନାନା ଅହେତୁକ ପ୍ରତିଯୋଗିତାର ସମ୍ମୁଖୀନ ହେଉଛି । ଯୁବକମାନଙ୍କ ଭିତରେ ତୀବ୍ର ପ୍ରତିଯୋଗିତା ମନସ୍ତାତ୍ତ୍ୱିକ ଉତ୍ତେଜନା ସୃଷ୍ଟି କରୁଛି । ଚାକିରି ପାଇଁ ଯେକୌଣସି ପନ୍ଥାର ଆଶ୍ରୟ ନିଆଯାଉଛି । ସମାଜରେ ଜଣେ କୃଷକ, ଶ୍ରମଜୀବୀ ଓ କାରିଗର ଅପେକ୍ଷା ଚାକିରି କ୍ଷେତ୍ରରେ ଅବସ୍ଥାପିତ ବ୍ୟକ୍ତି ବିଶେଷ ନିରାପଦ ଉପାର୍ଜନ, ଆବଶ୍ୟକୀୟ ଅବସର ଓ ସାମାଜିକ ସମ୍ମାନ ଲାଭ କରି ପାରୁଛି । ନିଜର ଦାବୀ ବା ଆବଶ୍ୟକତାକୁ ଏକ ସଂଗଠନ ମାଧମରେ ସରକାରଙ୍କ ଦୃଷ୍ଟିକୁ ଆଣିପାରୁଛି । ଅନ୍ୟାନ୍ୟ କର୍ମକ୍ଷେତ୍ରରେ ଏପରି ସୁଯୋଗର ଅବକାଶ ରହୁନାହିଁ ।

ଉଚ୍ଚ ଶିକ୍ଷା ସହିତ କେବଳ ଡିଗ୍ରୀ ଲାଭ ଓ କର୍ମସଂସ୍ଥାନ ନିବିଷ୍ଟ ଭାବେ ସମ୍ବନ୍ଧିତ ହୋଇ ରହିଥିବାରୁ ଏହାର ଆଭିମୁଖ୍ୟ ଭିତରେ କୌଣସି ମହତ୍ତର ଭାବନା ପ୍ରତିଫଳିତ ହେଉନାହିଁ । ନାଗରିକ କର୍ତ୍ତବ୍ୟବୋଧ, ନୈତିକ ଆଚରଣ ଓ ମାନବବାଦୀ ଦୃଷ୍ଟିଭଙ୍ଗୀ ଶିକ୍ଷାୟତନ ବାତାବରଣ ଭିତରୁ ଜଣେ ଛାତ୍ର ଶିକ୍ଷା କରିପାରୁ ନାହିଁ । ବସ୍ତୁତଃ ସାମାଜିକ ଜୀବନରେ ନୈତିକ ଆଦର୍ଶବୋଧ ପ୍ରତିଫଳିତ ହେଉନାହିଁ । ଦେଶର ପ୍ରଶାସନିକ ବ୍ୟବସ୍ଥାରେ ଦୁର୍ନୀତି ସାଧାରଣ ଘଟଣା ହୋଇପଡୁଛି । ରାଜନୈତିକ ବ୍ୟବସ୍ଥାରେ କୌଣସି ଉଚ୍ଚ ଆଦର୍ଶ ପ୍ରତିଫଳିତ ହୋଇପାରୁ ନାହିଁ । ସମାଜର ବିଭିନ୍ନ କ୍ଷେତ୍ରରେ ଅନ୍ୟାୟ, ଦୁର୍ନୀତି ଓ ଅନୈତିକତା ଏପରି ବୃଦ୍ଧି ପାଇଛି ଯାହାର କୁପ୍ରଭାବ ଶିକ୍ଷାନୁଷ୍ଠାନ ଉପରେ ମଧ ପଡୁଛି । ଏକ ବିଷବ୍ୟୂହ ସଦୃଶ ଆମର ସାମାଜିକ ବ୍ୟବସ୍ଥା ଶିକ୍ଷାକ୍ଷେତ୍ରକୁ ସଂକ୍ରମିତ ହୋଇ ଏହାକୁ

କଳୁଷିତ କରୁଥିବା ବେଳେ ଶିକ୍ଷାୟତନ କ୍ଷେତ୍ରରେ ଆଦର୍ଶବୋଧ ଓ ନୈତିକତାର ଅଭାବ କ୍ରମେ କ୍ରମେ ସାମାଜିକ ଜୀବନକୁ ସଂକ୍ରମିତ ହୋଇ ଆସୁଛି ।

ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ଜନଗଣଙ୍କର ସାମାଜିକ ଅଙ୍ଗୀକାରବୋଧ ଗଣତନ୍ତ୍ରର ସଫଳତା ପାଇଁ ଆବଶ୍ୟକ ହୋଇଥାଏ । ବ୍ୟକ୍ତି ସାମାଜିକ କର୍ତ୍ତବ୍ୟ ଓ ଶୃଙ୍ଖଳିତ ଆଚରଣ ଅନେକାଂଶରେ ନିଜର ଶିକ୍ଷାନୁଷ୍ଠାନ ମାନଙ୍କରୁ ଲାଭ କରିଥାଏ । କିନ୍ତୁ ଆମ ଦେଶର ଶିକ୍ଷାୟତନମାନଙ୍କରେ ବିଦ୍ୟାର୍ଥୀର ବୌଦ୍ଧିକ ଓ ନୈତିକ ବିକାଶ କ୍ଷେତ୍ରରେ ସମନ୍ୱୟ ପ୍ରତିଷ୍ଠା ନେଇ କୌଣସି ବ୍ୟବସ୍ଥା ପ୍ରାୟତଃ ଦେଖିବାକୁ ମିଳେ ନାହିଁ । ପୁନଶ୍ଚ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ଶୃଙ୍ଖଳାବୋଧ ନେଇ କୌଣସି ଗୁରୁତ୍ୱ ଦିଆଯାଏ ନାହିଁ । ଅଧିକନ୍ତୁ ଶିକ୍ଷାୟତନର ପରିସର ଦୂଷିତ ରାଜନୈତିକ ପ୍ରଭାବରୁ ମୁକ୍ତ ହୋଇପାରେ ନାହିଁ । ଯୋଗ୍ୟତା, ନିଷ୍ଠା ଓ ଚାରିତ୍ରିକ ଶୃଙ୍ଖଳା ପରିବର୍ତ୍ତେ ରାଜନୈତିକ ପ୍ରଭାବ ସାମାଜିକ ଶ୍ରେୟ ହାସଲ କ୍ଷେତ୍ରରେ ଅଧିକ ସହାୟକ ବୋଲି ସମୟରେ ବିଶ୍ୱାସ କରାଯାଏ । ଏହି ମାନସିକତା ଶିକ୍ଷାୟତନର ପବିତ୍ରତା ପାଇଁ ଯେ ଅତ୍ୟନ୍ତ ପରିପନ୍ଥୀ ଏହା କହିବା ନିଷ୍ପ୍ରୟୋଜନ ।

ଦେଶର ସବୁ ଶ୍ରେଣୀର ବ୍ୟକ୍ତି ବିଶେଷଙ୍କ ପାଇଁ ଏକା ପ୍ରକାରର ଶିକ୍ଷା ବ୍ୟବସ୍ଥା ପରିବର୍ତ୍ତେ ନାନା ତାରତମ୍ୟ ମୂଳକ ବ୍ୟବସ୍ଥା ଦୃଷ୍ଟିଗୋଚର ହୋଇଥାଏ । ବିଭିନ୍ନ ଅଞ୍ଚଳରେ ଗଢ଼ି ଉଠିଥିବା ଅସଂଖ୍ୟ ପବ୍ଲିକ ସ୍କୁଲ ଓ କୋଚିଂ ସେଣ୍ଟର ଏପରି ବ୍ୟୟବହୁଳ ଯେ ସାଧାରଣ ପରିବାରର ପିଲାମାନେ ସେଥିରେ ଅଧ୍ୟୟନ କରିବା ଅସମ୍ଭବ ବୋଧହୁଏ । ଏହା ସହିତ ଗାଁ ଗହଳରେ ଥିବା ଅଗଣିତ ବିଦ୍ୟାଳୟମାନଙ୍କରେ ସର୍ବନିମ୍ନ ଆବଶ୍ୟକତା ରହି ନ ଥିବା ବେଳେ କେତୋଟି ମୁଷ୍ଟିମେୟ ଅନୁଷ୍ଠାନକୁ ପ୍ରାଚୁର୍ଯ୍ୟ ଭିତରେ ରଖିବା ଦେଖାଯାଏ । କୋମଳମତି ବିଦ୍ୟାର୍ଥୀମାନଙ୍କ ଭିତରେ ପ୍ରଥମାବସ୍ଥାରୁ ବିଳାସପୂର୍ଣ୍ଣ ଜୀବନ ପ୍ରତି ଆଗ୍ରହ ସୃଷ୍ଟି କରିବା ଦ୍ୱାରା ସେମାନେ ଭବିଷ୍ୟତରେ ସାମାଜିକ ବାସ୍ତବତା ପ୍ରତି ଉଦାସୀନ ରହି ବ୍ୟକ୍ତିଗତ ସ୍ୱାର୍ଥକୁ ଅଧିକ ଗୁରୁତ୍ୱ ଦେବାର ସମ୍ଭାବନା ଥାଏ । ଶିକ୍ଷା ବ୍ୟବସ୍ଥାରେ ସାମାଜିକ ବୈଷମ୍ୟ ପରିପୁଷ୍ଟ ହେବା ଆମ ଦେଶ ପରି ଏକ ରକ୍ଷଣଶୀଳ ଓ ଜାତିଭିତ୍ତିକ ସମାଜ ପାଇଁ ଶୁଭଙ୍କର ନୁହେଁ । ପୁନଶ୍ଚ ଆମର ପ୍ରଚଳିତ ବ୍ୟବସ୍ଥା ଓ ଶିକ୍ଷା ପଦ୍ଧତି ନୂଆ ନୂଆ ବୈଷମ୍ୟ ସୃଷ୍ଟି କରିବା କ୍ଷେତ୍ରରେ ସହାୟକ ହେବା ଦେଖାଯାଏ । ଏହି ବୈଷମ୍ୟ ଜନିତ ବିଭେଦ ଯୋଗୁଁ ସାମାଜିକ ସଂହତି ବାଧାପ୍ରାପ୍ତ ହେବା ସହିତ ଅର୍ଥନୈତିକ ଅସନ୍ତୁଳନ ବୃଦ୍ଧି ପାଇବା ଦେଖାଯାଏ । ପରିଣାମତଃ ସମାଜର କତିପୟ ବ୍ୟକ୍ତିବିଶେଷ ପ୍ରାଚୁର୍ଯ୍ୟ ଭିତରେ ରହିବା ବେଳେ ଦେଶର ଅଗଣିତ ଜନଗଣ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାରେ ଅସମର୍ଥ ହେବା ଦେଖାଯାଏ । ସମାଜର ସଙ୍ଗଲ ବୈଷମ୍ୟ ପ୍ରଚଳିତ ବ୍ୟବସ୍ଥା, ଶିକ୍ଷାନୀତି, ଜାତୀୟ ସ୍ତରରେ ପ୍ରବର୍ତ୍ତିତ ହେଉଥିବା ଉଦ୍ୟୋଗ ଓ

ଯୋଜନାର ପରିଣାମ ବୋଲି ଗ୍ରହଣ କରିବା ପରିବର୍ତ୍ତେ ଏହାକୁ ପୂର୍ବ ନିର୍ଦ୍ଦିଷ୍ଟ ବୋଲି କହି ଏଡାଇ ଯିବା ପାଇଁ ଉଦ୍ୟମ କରାଯାଏ । ଭାଗ୍ୟବାଦ, ପୂର୍ବ ନିର୍ଦ୍ଦିଷ୍ଟବାଦ ଇତ୍ୟାଦି ତାତ୍ତ୍ୱିକ ଭାବନା ମାଧ୍ୟମରେ ସାମାଜିକ ବୈଷମ୍ୟକୁ ଦୃଢ଼ୀଭୂତ କରାଯାଏ । ଶିକ୍ଷା ବ୍ୟବସ୍ଥାରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶକୁ ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ । ପରିଣାମତଃ ସମାଜର ଶିକ୍ଷିତ ଓ ସଚେତନ ବ୍ୟକ୍ତି ବିଶେଷ ନାନା କୁସଂସ୍କାର ଓ ଅହେତୁକ ବିଶ୍ୱାସର ଶିକାର ହେବା ଦେଖାଯାଏ ।

ମୋଟ ଉପରେ ଆମ ଶିକ୍ଷା ବ୍ୟବସ୍ଥାର ଭଲ ଓ ମନ୍ଦ ଦିଗର ମୂଲ୍ୟାୟନ ଆବଶ୍ୟକ । ଯେଉଁ ସବୁ ମୂଲ୍ୟଚୟକୁ ସାମାଜିକ/ଜାତୀୟ ଶ୍ରେୟ ଭାବରେ ଗ୍ରହଣ କରାଯାଇଛି ଦେଶର ଶିକ୍ଷା ବ୍ୟବସ୍ଥା ମାଧ୍ୟମରେ ସେସବୁକୁ କିପରି ଦେଶର ଶିକ୍ଷାର୍ଥୀମାନଙ୍କୁ ଶିକ୍ଷା ଦେଇହେବ ସେନେଇ ଗଭୀର ଅନୁଶୀଳନ ଆବଶ୍ୟକ । ଆମର ପରିକଳ୍ପିତ ଆଦର୍ଶ ଓ ବାସ୍ତବ ରୂପାୟନ କ୍ଷେତ୍ରରେ ରହି ଯାଉଥିବା ପାର୍ଥକ୍ୟକୁ ଦୂର କରିବାରେ ଆମ ଦେଶର ଶିକ୍ଷା ବ୍ୟବସ୍ଥା ଏକ ପ୍ରମୁଖ ଭୂମିକା ନେଇପାରିବ । ଏହା ନ ହେଲେ ଆମର ଲକ୍ଷ୍ୟ ଓ ସ୍ୱପ୍ନ ବିଡ଼ମ୍ବିତ ହୋଇ ରହିଯିବ । ଏବେବି ଦେଶର ଜନସଂଖ୍ୟାର ଯେଉଁ ବିରାଟ ଅଂଶଟି ଅଶିକ୍ଷା, କୁସଂସ୍କାର ଓ ଦାରିଦ୍ର୍ୟର କଷାଘାତରେ ନିଷ୍ପେଷିତ ହୋଇ ନିମ୍ନ ସ୍ତରରେ ଜୀବନ ବଞ୍ଚୁଛନ୍ତି ତାହା କିପରି ଦୂର କରାଯାଇ ପାରିବ ସେ ନେଇ ଗଭୀର ଅନୁଧ୍ୟାନ ଆବଶ୍ୟକ । ଆମର ଜାତୀୟ ସଂହତି, ଗଣତନ୍ତ୍ର, ଧର୍ମନିରପେକ୍ଷ ଆଦର୍ଶ ସବୁକୁ ରାଷ୍ଟ୍ରୀୟ ସ୍ତରରେ ଦୃଢ଼ କରିବା ପାଇଁ ଆବଶ୍ୟକ ହେଉଥିବା ସାମାଜିକ ସଚେତନତା ଶିକ୍ଷା ଜରିଆରେ ସୃଷ୍ଟି କରାଯାଇ ପାରିବ । ସାମାଜିକ ନ୍ୟାୟ, ଶୋଷଣହୀନ ଅର୍ଥନୀତି ଇତ୍ୟାଦି ବୃହତ୍ତର ଲକ୍ଷ୍ୟଗୁଡ଼ିକ ପାଇଁ ଶିକ୍ଷା ବ୍ୟବସ୍ଥାକୁ ଆୟୁଧ ଭାବରେ ନିଆଯାଇ ପାରିବ । ଦେଶର ଶିକ୍ଷା ବ୍ୟବସ୍ଥା ସହ ସାମାଜିକ କ୍ରାନ୍ତି ପ୍ରଶ୍ନଟି ଅଙ୍ଗାଙ୍ଗୀ ଭାବରେ ସଂଶ୍ଳିଷ୍ଟ ଥିବାରୁ ସମାଜର ଯେକୌଣସି ଈପ୍ସିତ ଲକ୍ଷ୍ୟ ସାଧନ ପାଇଁ ଶିକ୍ଷା କ୍ଷେତ୍ରରେ ପ୍ରଥମେ ପରିବର୍ତ୍ତନ ଆସିବା ଆବଶ୍ୟକ । ''ଗୋଟିଏ ଦେଶର ଭବିଷ୍ୟତ ସେ ଦେଶର ଶ୍ରେଣୀ କକ୍ଷରେ ରୂପ ନିଏ'' ଯେଉଁ ଉକ୍ତିଟି ରହିଛି ତାହାକୁ ଗ୍ରହଣ କରି ଜାତୀୟ ଶିକ୍ଷାନୀତି ପାଇଁ ଅନେକ ସତର୍କ ରହିବାକୁ ହେବ । ଦେଶର ଶିକ୍ଷା ବ୍ୟବସ୍ଥାକୁ ଉନ୍ନତ କରିପାରିଲେ ଜାତୀୟ ଜୀବନର ଅଧିକାଂଶ ସମସ୍ୟା ସମ୍ଭବତଃ ଦୂରୀଭୂତ ହୋଇପାରିବ । ସୁତରାଂ ଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା ପାଇଁ ଜାତୀୟ ସ୍ତରରେ ପ୍ରୟାସ ସାମାଜିକ ବିକାଶ ଧାରାରେ ଏକ ମାଇଲଖୁଣ୍ଟ ହେବ ।

■■

# ନୈତିକତା ଓ ସାମ୍ପ୍ରତିକ ଦୃଶ୍ୟପଟ

ବ୍ୟକ୍ତି ପାଇଁ ଗୋଷ୍ଠୀଗତ ଜୀବନ ଯେପରି ଅପରିହାର୍ଯ୍ୟ, ସମାଜ ପାଇଁ ବ୍ୟକ୍ତିମାନଙ୍କର ନୈତିକ ଆଚରଣ ସେହିପରି ଅପରିହାର୍ଯ୍ୟ । ସମାଜରେ ବ୍ୟକ୍ତି ଅନ୍ୟମାନଙ୍କ ସହ ଏକତ୍ର ବାସ କରୁଥିବାରୁ ଓ ପରସ୍ପର ପ୍ରତି ସତତ ନିର୍ଭରଶୀଳ ରହିଥିବାରୁ ଜୀବନ ଧାରଣ ପାଇଁ କେତେକ ସର୍ବନିମ୍ନ ନୈତିକ ଆଚରଣ ପାଳନ କରିବାର ଆବଶ୍ୟକତା ଥାଏ । ଗୋଷ୍ଠୀଗତ ଜୀବନ ଓ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧର ଆବଶ୍ୟକତା ଦୃଷ୍ଟିରୁ ସମାଜରେ ନୈତିକ ଅନୁଶାସନ ଦରକାର ହୁଏ । ଏପରିକି ଏହା ଏକ ଐତିହାସିକ ସତ୍ୟ ଭାବେ ସ୍ୱୀକୃତ ଯେ ନୈତିକ ଆଚରଣ ଦ୍ୱାରା ସାମାଜିକ ଜୀବନ ଶୃଙ୍ଖଳିତ ହେବାବେଳେ ଏହାର ଅଭାବରେ ସମାଜରେ ସ୍ଥିରତା ଓ ଐକ୍ୟ ନଷ୍ଟ ହୋଇଥାଏ । ଉଚ୍ଚ ନୈତିକ ମାନ ଉପରେ ପ୍ରତିଷ୍ଠିତ ଥିବା ସମାଜ ସଭ୍ୟତା ଓ ସଂସ୍କୃତିର ବିକାଶ କରାଇବା ସମୟରେ ଏକ ଅନୈତିକ ସମାଜ ଏହାର ବିକାଶରେ ଅନ୍ତରାୟ ହୋଇଥାଏ । ଏପରିକି ସମାଜର ନୈତିକ ଭିତ୍ତି ଉପରେ ସାମାଜିକ ସ୍ଥିତି ଓ ସ୍ଥିରତା ନିର୍ଭର କରିବା ଏକ ଅନୁଭବଗତ ଐତିହାସିକ ସତ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ବସ୍ତୁତଃ ସାମାଜିକ ସ୍ଥିରତା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଉପରେ ବ୍ୟକ୍ତିର ସୁଖ, ଶାନ୍ତି ନିର୍ଭର କରୁଥିବାରୁ ବ୍ୟଷ୍ଟି ଓ ସମଷ୍ଟି ଉଭୟଙ୍କ ପାଇଁ ନୈତିକ ଆଚରଣର ଆବଶ୍ୟକତା ରହିଥାଏ । ସୁତରାଂ ପ୍ରତ୍ୟେକ ସମାଜରେ ନୈତିକ ଅନୁଶାସନ ବିଧି ପ୍ରକାଶ୍ୟରେ ବା ଅପ୍ରକାଶ୍ୟରେ ପ୍ରବର୍ତ୍ତିତ ଥାଏ ।

ସମାଜର ଅର୍ଥପୂର୍ଣ୍ଣ ସ୍ଥିତି ଏହାର ନୈତିକ ଅନୁଶାସନ ଉପରେ ମୁଖ୍ୟତଃ ନିର୍ଭରଶୀଳ ରହିଥିବାରୁ ପ୍ରତ୍ୟେକ ସମାଜରେ ବ୍ୟକ୍ତି ବିଶେଷକୁ ନୈତିକ ଆଚରଣ ପ୍ରତି ଆଗ୍ରହୀ କରିବା ପାଇଁ ଉଦ୍ୟମ କରାଯାଏ । ନୈତିକତା ବ୍ୟକ୍ତିର ସହଜାତ ସ୍ୱଭାବ ହୋଇଥିଲେ ଏହାର ପ୍ରବର୍ତ୍ତନ ବା ଶିକ୍ଷାର ଆବଶ୍ୟକତା ରହି ନ ଥାନ୍ତା । ସତ୍ୟବାଦୀ ହେବା ଯଦି ବ୍ୟକ୍ତିର ସହଜାତ ଗୁଣ ହୋଇଥାନ୍ତା ଅର୍ଥାତ୍ ଯେକୌଣସି ପରିସ୍ଥିତିରେ ଜଣେ ସତ କହିବ ବୋଲି ବିଶ୍ୱାସ କରାଯାଉଥାନ୍ତା ତେବେ ''ସତ କହିବା ଉଚିତ୍'' ଏହା ଶିକ୍ଷା ଦେବାର ଆବଶ୍ୟକତା ରହି ନ ଥାନ୍ତା । ପରନ୍ତୁ ସତ କହିବା ବ୍ୟକ୍ତିର ସ୍ୱଭାବ, ଶିକ୍ଷା

ଦୃଷ୍ଟିକୋଣ ଓ ସ୍ଥଳ ବିଶେଷରେ ସାମାଜିକ ପରିସ୍ଥିତି ଉପରେ ନିର୍ଭର କରୁଥିବାରୁ ସତ କହିବାକୁ ବ୍ୟକ୍ତିକୁ ଶିକ୍ଷା ଦେବାର ଆବଶ୍ୟକତା ପଡ଼ିଥାଏ । ସେହିପରି ପ୍ରତ୍ୟେକ ନୈତିକ ଗୁଣ ବିଷୟରେ ଏହା କୁହାଯାଇ ପାରେ; ଅର୍ଥାତ୍ ସମାଜରେ ନୈତିକ ଆଚରଣ ବ୍ୟକ୍ତିକୁ ଶିକ୍ଷା ଦେବାର ଆବଶ୍ୟକତା ରହିଥାଏ । ଅବଶ୍ୟ ଅନୈତିକ ହେବାଦ୍ୱାରା କୌଣସି ବ୍ୟକ୍ତି ସମୟରେ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ କରିବାର ଦୃଷ୍ଟାନ୍ତ ବି ସମାଜରେ ବିରଳ ନୁହେଁ । ଲାଞ୍ଚ ନେବା ବା ଦେବା ଏକ ଗର୍ହିତ କାର୍ଯ୍ୟ ହେଲେ ମଧ୍ୟ ସ୍ଥଳ ବିଶେଷରେ ଏହା ଲାଞ୍ଚ-ଗ୍ରହୀତା ବା ଦାତାର ଉପକାରରେ ଆସିଥାଏ । ତଥାପି ଅନୈତିକ କାର୍ଯ୍ୟ ସାମାଜିକ ସ୍ଥିରତା ପ୍ରତି ବିପଦ ସୃଷ୍ଟି କରୁ ନ ଥିଲେ ବି ଓ ଏପରିକି ସ୍ଥଳ ବିଶେଷରେ ବ୍ୟକ୍ତିର ଉପକାରରେ ଆସୁଥିଲେ ମଧ୍ୟ ଏହି ପ୍ରକାର କାର୍ଯ୍ୟକୁ ସମାଜରେ ସ୍ୱୀକୃତି ଦିଆଯାଇ ନପାରେ । କାରଣ ଏହା ବିଶ୍ୱାସ କରାଯାଏ ଯେ ଅନୈତିକ କାର୍ଯ୍ୟକୁ ଦମନ କରାନଗଲେ ଭବିଷ୍ୟତରେ ଏହା ବ୍ୟାପକ ହୋଇ ସାମାଜିକ ସ୍ଥିରତା ଓ ସୌହାର୍ଦ୍ଦ୍ୟର ଧ୍ୱଂସକାରକ ହୋଇଥାଏ । ବସ୍ତୁତଃ ଅନୈତିକ କାର୍ଯ୍ୟକଳାପକୁ ରୋକିବା ଓ ନୈତିକ ଜୀବନ ପାଇଁ ଆଗ୍ରହ ସୃଷ୍ଟି କରିବା ସମାଜର ଏକ ପ୍ରମୁଖ ଦାୟିତ୍ୱ ।

ଏ ଦୃଷ୍ଟିରୁ ନୈତିକ ଆଚରଣ ଦ୍ୱାରା ସାମାଜିକ ସ୍ଥିରତା ଅକ୍ଷୁଣ୍ଣ ରହିବା ସହିତ ବ୍ୟକ୍ତିଗତ ସୁଖ, ସ୍ୱାଚ୍ଛନ୍ଦ୍ୟ ଯେ ଅଧିକ ନିରାପଦ ଏ ବିଶ୍ୱାସ ସୃଷ୍ଟି କରିବାରେ ସମାଜର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅର୍ଥାତ୍ ବ୍ୟକ୍ତି ଓ ଗଣମାନସରେ ନୈତିକ ମୂଲ୍ୟଚୟର ପ୍ରାଧାନ୍ୟ ବିଷୟରେ ଯଥାର୍ଥ ଧାରଣା ସୃଷ୍ଟି କରିବାରେ ସମାଜର ଆବଶ୍ୟକତା ଯଥେଷ୍ଟ ବେଶୀ । ଯେଉଁ ସବୁ କାରଣ ବ୍ୟକ୍ତି ମାନସରେ ନୈତିକ ଜୀବନ ପ୍ରତି ଆଗ୍ରହ ସୃଷ୍ଟି କରିଥାଏ ତାହା ମଧ୍ୟ ଯଥାର୍ଥରେ ବିଚାର୍ଯ୍ୟ । ପ୍ରଥମତଃ ନୈତିକ ଆଚରଣ ପ୍ରତି ସାମାଜିକ ସମ୍ମାନ ଓ ସ୍ୱୀକୃତି ଥିଲେ ଓ ଅନୈତିକ ଆଚରଣରେ ବ୍ୟକ୍ତି ସାମାଜିକ କଟାକ୍ଷର ଶିକାର ହେଉଥିଲେ ନୈତିକ କାର୍ଯ୍ୟ ପ୍ରତି ଆଗ୍ରହ ସମାଜରେ ରହେ । ଦ୍ୱିତୀୟରେ ସାଧାରଣତଃ ଦୁର୍ନୀତି ମୂଳକ କାର୍ଯ୍ୟକଳାପ ଦେଶର ପ୍ରଶାସନିକ ବ୍ୟବସ୍ଥା ଭିତରେ ଶୀଘ୍ର ଚିହ୍ନଟ ହୋଇ ଦଣ୍ଡ ବ୍ୟବସ୍ଥା ହୋଇ ପାରୁଥିଲେ ଜନମାନସରେ ଗର୍ହିତ କାର୍ଯ୍ୟପ୍ରତି ଭୟ ଜାତ ହୁଏ । କୌଣସି ଅନୈତିକ କାର୍ଯ୍ୟ ଦ୍ୱାରା ସାମାଜିକ ସମ୍ମାନ ହରାଇବା ସହିତ ଦେଶର ପ୍ରଶାସନିକ ବ୍ୟବସ୍ଥାରେ ଦଣ୍ଡ ଭୋଗିବାକୁ ହେଉଥିଲେ ଅନୈତିକ କାର୍ଯ୍ୟ ପ୍ରତି ବ୍ୟକ୍ତିର ଭୟ ରହିଥାଏ । ତୃତୀୟରେ ନୈତିକ ଜୀବନର ଅନ୍ତର୍ନିହିତ ମହତ୍ତ୍ୱ ଉପରେ ଶ୍ରଦ୍ଧା ରହିଲେ ନୈତିକ ଆଚରଣ ପ୍ରତି ବ୍ୟକ୍ତି ବିଶେଷର ଆକର୍ଷଣ ବଢ଼େ । ଅର୍ଥାତ୍ ନୈତିକ ଜୀବନର ଅନ୍ତର୍ନିହିତ ପବିତ୍ରତାକୁ ଗ୍ରହଣ କଲେ ବ୍ୟକ୍ତି ବିଶେଷ ଅନୈତିକ ଆଚରଣ ପ୍ରତି ସହଜରେ ଆଗ୍ରହୀ ହୁଏ ନାହିଁ । ନୈତିକତାର ଅନ୍ତର୍ନିହିତ ସାଂସ୍କୃତିକ ମୂଲ୍ୟ ପ୍ରତି ସମ୍ମାନବୋଧ ନୈତିକ ଆଚରଣ ପାଇଁ ପ୍ରେରଣା ଦିଏ । ନୈତିକତାକୁ କେବଳ ସୁଖମୟ ଜୀବନର ଅବଲମ୍ବନ ଭାବରେ ଗ୍ରହଣ

କଲେ ହୁଏତ ଏହାର ପ୍ରେରଣା ବଳିଷ୍ଠ ହୁଏ ନାହିଁ । କାରଣ ବ୍ୟକ୍ତି କୌଣସି ସାମାଜିକ ପରିପ୍ରେକ୍ଷୀରେ ଯଦି ଅନୁଭବ କରେ ଯେ ସାମାନ୍ୟ ଆଦର୍ଶର ପ୍ରତିଦାନରେ ଅଥଚ କୌଣସି ପ୍ରକାରର ସାମାଜିକ ଅସମ୍ମାନ ବା ଦଣ୍ଡ ନ ପାଇ ବଞ୍ଚିବାର ମାନକୁ ଉନ୍ନତ କରିପାରିବ ତେବେ ଅନୈତିକ ପନ୍ଥା ଗ୍ରହଣ କରିନେବାରେ ସେ ଯଥେଷ୍ଟ ଅନ୍ତର୍ବିରୋଧ ପାଇବ ନାହିଁ । ଏହି ଦୃଷ୍ଟିରୁ ନୈତିକ ଜୀବନର ଅନ୍ତର୍ନିହିତ ଆଦର୍ଶକୁ ସ୍ୱପ୍ରତିଷ୍ଠ ମୂଲ୍ୟବୋଧ ଭାବେ ବିଚାର କରି ଏହାକୁ ଏକ ସଂସ୍କୃତି ସଂପନ୍ନ ଜୀବନର ମାନଦଣ୍ଡ ଭାବେ ଗ୍ରହଣ କଲେ ନୈତିକ ଆଚରଣ ପାଇଁ ଶ୍ରଦ୍ଧା ରହିପାରିବ । ଯଦିବା କେତେକ କ୍ଷେତ୍ରରେ ଏହି ନୈତିକତା ସୁଖ, ସ୍ୱାଚ୍ଛନ୍ଦ୍ୟ ପ୍ରତି ପ୍ରତିକୂଳ ହେଉଥାଏ ଅଥବା ଏକ ଅନୈତିକ ପନ୍ଥା ନିଜର ଇପ୍‌ସିତ ପ୍ରାପ୍ୟ ଆଣିଦେଇ ପାରୁଥାଏ ତଥାପି ବ୍ୟକ୍ତି ବିଶେଷ ନୈତିକ ଜୀବନ ପାଇଁ ପ୍ରେରଣା ପାଇପାରିବେ । ଏହି ପ୍ରକାରର ଜୀବନ ସ୍ଥଳ ବିଶେଷରେ ଯନ୍ତ୍ରଣା ଦାୟକ ହେଲେ ବି ଶ୍ରେୟସ୍କର ଭାବେ ଗ୍ରହଣ କରାଯାଇପାରେ । ସୁତରାଂ ନୈତିକ ଜୀବନ ଯାପନ ପାଇଁ ଆଲୋଚିତ ପ୍ରେରଣାମାନଙ୍କ ମଧ୍ୟରୁ ଶେଷୋକ୍ତ କାରଣଟି ଅନ୍ୟ କାରଣଗୁଡ଼ିକ ଅପେକ୍ଷା ଯେ ଉତ୍କୃଷ୍ଟତର, ଏହା କୁହାଯାଇପାରେ ।

ଏହି ପରିପ୍ରେକ୍ଷୀରେ ନୈତିକ ଉତ୍କର୍ଷ ଓ ଅପକର୍ଷ ସମାଜ ଭିତରେ ଥିବା ପାର୍ଥକ୍ୟ ଯଥାର୍ଥରେ ବିଚାର୍ଯ୍ୟ । ଅବଶ୍ୟ ''ଉତ୍କର୍ଷ'' ବା ''ପ୍ରଗତିଶୀଳତା'' ଓ ''ଅପକର୍ଷ'' ବା ''କ୍ଷୟଶୀଳତା'' ସଂପୂର୍ଣ୍ଣ ଭାବେ ଆପେକ୍ଷିକ ପ୍ରତ୍ୟୟ ହୋଇଥିବାରୁ ଉତ୍କର୍ଷ ବା ଅପକର୍ଷ ସମାଜର ଏକ ସଂଜ୍ଞା ବା ନିର୍ଦ୍ଦିଷ୍ଟ ମାନଦଣ୍ଡ ବାହାର କରିବା କଠିନ ହୋଇପାରେ । କାରଣ, ଏକ ନିର୍ଦ୍ଦିଷ୍ଟ ସମାଜ ତା'ଠାରୁ ଅଧିକ ପ୍ରଗତିଶୀଳ ସମାଜ ସହିତ ତୁଳନୀୟ ହେବା ବେଳେ କ୍ଷୟଶୀଳ ଜଣାପଡ଼େ; ଅଥଚ ତା'ଠାରୁ ଅଧିକ କ୍ଷୟଶୀଳ ସମାଜ ସହିତ ତୁଳନା ହେବାବେଳେ ପ୍ରଗତିଶୀଳ ଜଣାପଡ଼େ । ସୁତରାଂ ନିରଙ୍କୁଶ ଭାବେ କୌଣସି ସମାଜ ପ୍ରଗତିଶୀଳ ବା କ୍ଷୟଶୀଳ ଜଣାପଡ଼ି ନ ପାରେ । ତଥାପି ଏକ କ୍ଷୟଶୀଳ ସମାଜ ବିଷୟରେ ଏହା କୁହାଯାଇପାରେ ଯେ ଏଥିରେ ଅନୈତିକ ପନ୍ଥା ଦ୍ୱାରା ବିକାଶ ଓ ପ୍ରତିଷ୍ଠା ସମ୍ଭବ ହୋଇଥାଏ, ଅଥଚ ନୈତିକ ଜୀବନ ଯାପନ ଦ୍ୱାରା ଏହା ଅସମ୍ଭବ ଜଣାପଡ଼େ । ସେହିପରି ଅନୈତିକ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବାରେ କୌଣସି ସମାଜ ଅପାରଗ ହେଲେ ଓ ପରିଣାମରେ ଜନମାନସରେ ଅନୈତିକ କାର୍ଯ୍ୟ ପ୍ରତି ବିଦ୍ୱେଷ ବା ଘୃଣା ସୃଷ୍ଟି ନ ହୋଇ ସମ୍ମାନ ଉଦ୍ରେକ କଲେ ତାହା ଏକ ଅପକର୍ଷ ସମାଜରେ ପରିଣତ ହୁଏ । ଏହି ସମାଜରେ ନୈତିକ ନିୟମର ଲଙ୍ଘନ ଏକ ସାଧାରଣ ଘଟଣା ହୋଇପଡ଼େ ଓ ଯେକୌଣସି ପନ୍ଥାରେ ସାମାଜିକ ପ୍ରେୟ ହାସଲ କରିବାର ଦୃଷ୍ଟିକୋଣ ଗ୍ରହଣ କରିନିଆଯାଏ ।

ଅନ୍ୟ ପକ୍ଷରେ ପ୍ରଗତିଶୀଳ ସମାଜରେ ବ୍ୟକ୍ତି ବିଶେଷ ନୈତିକ ଆଚରଣକୁ ସଭ୍ୟ ଜୀବନର ମୂଲ୍ୟବୋଧ ଭାବେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନୈତିକତାର ଅନ୍ତର୍ନିହିତ

ମୂଲ୍ୟକୁ ସମ୍ମାନ ଦେଇଥାନ୍ତି । ଅର୍ଥାତ୍ ନୈତିକ ଆଚରଣକୁ କେବଳ ସାମାଜିକ ସୁଖ ସ୍ୱାଚ୍ଛନ୍ଦ୍ୟ ଦୃଷ୍ଟିରୁ ନୁହେଁ, ବରଂ ଏହାକୁ ଏକ ସଂସ୍କୃତି ସଂପନ୍ନ ଜୀବନର ମୂଳ ଭିତ୍ତି ବୋଲି ଗ୍ରହଣ କରିଥାନ୍ତି ।

ଉତ୍କର୍ଷତାର ଏହି ମାନବଦଣ୍ଡରେ ସାଂପ୍ରତିକ ଭାରତୀୟ ସମାଜକୁ ବିଚାର କରାଯାଉ । ଆମ ସମାଜରେ ସାମାଜିକ ପ୍ରତିଷ୍ଠା ହାସଲ କରିବାରେ ବହୁ ସମୟରେ ନୈତିକ - ପନ୍ଥା ପ୍ରତିଫଳିତ ନ ହେବାର ଚିତ୍ର ଯଥେଷ୍ଟ ସ୍ପଷ୍ଟ । ଅର୍ଥ ଉପାର୍ଜନ ଠାରୁ ଆରମ୍ଭ କରି ରାଜନୈତିକ ନେତୃତ୍ୱ, ସାମାଜିକ ସମ୍ମାନ ଓ ବୌଦ୍ଧିକ ଖ୍ୟାତି ଅର୍ଜନ ପର୍ଯ୍ୟନ୍ତ ସବୁ ସ୍ତରରେ ନୈତିକ ସ୍ଖଳନ ଦୃଷ୍ଟିଗୋଚର ହୁଏ । ଯେ କୌଣସି ପନ୍ଥା ଅବଲମ୍ବନ କରି ସାମାଜିକ ପ୍ରତିପତ୍ତି ଓ ପ୍ରତିଷ୍ଠା ଲାଭ କରିବାର ଦୃଷ୍ଟିକୋଣ ଆମ ସମାଜରେ ସଂପ୍ରତି ବିକାଶ ଲାଭ କରିଛି । ଅନୈତିକ ପନ୍ଥାରେ, ଅଥଚ ସାମାଜିକ ଲାଞ୍ଛନାର ସମ୍ମୁଖୀନ ନ ହୋଇ, ଯେକୌଣସି ପ୍ରେୟ ହାସଲ କରିହେବ ଏହି ମନୋଭାବ ସଂପ୍ରତି ସଂକ୍ରମିତ ହେବାରେ ଲାଗିଛି । ସାମାଜିକ ପ୍ରେୟ ହାସଲ ଦିଗରେ ଯେକୌଣସି ପନ୍ଥାର ଆଶ୍ରୟ ନେବା ଓ ନୈତିକ ଆଚରଣର ଅନ୍ତର୍ନିହିତ ମୂଲ୍ୟ ପ୍ରତି ବୀତସ୍ପୃହ ରହିବା ଲୋକ ଚରିତ୍ର ନିମ୍ନଗାମୀ ହେବାର ଏକ ବଳିଷ୍ଠ ପ୍ରମାଣ ବୋଲି କୁହାଯାଇପାରେ ।

କୌଣସି ଦେଶର ଲୋକ ଚରିତ୍ର ନିମ୍ନଗାମୀ ହେବା ପଶ୍ଚାତରେ ସାମାଜିକ ପରିବେଶ, ରାଜନୈତିକ ନେତୃତ୍ୱ, ଅର୍ଥନୈତିକ ପରିସ୍ଥିତି, ସାଂସ୍କୃତିକ ବିଚାରଧାରା ପରି ବହୁ କାରଣ ରହିପାରେ । ଆମର ନୈତିକ ଅଧୋଗତି ପଶ୍ଚାତରେ ଏସବୁର ଭୂମିକା ଯେ ରହିଛି ଏହା କହିବା ମଧ୍ୟ ନିଷ୍ପ୍ରୟୋଜନ । ଆମ ସମାଜର ଅପକର୍ଷତାର କାରଣ ବାହାର କରିବାକୁ ଯାଇ ଜଣେ ଅର୍ଥନୀତି ବିଜ୍ଞାନୀ ଯୋଜନାରେ ମୌଳିକ ତ୍ରୁଟି, କୃଷିର ବିକାଶ ଦିଗରେ ଅବହେଳା, ଗ୍ରାମ୍ୟ ଶିଳ୍ପର ଅଧୋଗତି, ଧନୀ ଦରିଦ୍ର ମଧ୍ୟରେ ଥିବା ବିରାଟ ପାର୍ଥକ୍ୟ ଭଳି ବହୁ କାରଣ ଦେଇପାରନ୍ତି । ଜଣେ ସମାଜ ବିଜ୍ଞାନୀ ସାମାଜିକ କାରଣ ବାହାର କରିବାକୁ ଯାଇ ଆମର ଜାତିପ୍ରଥା, ଧର୍ମଗତ ଓ ଭାଷାଗତ ବିଭେଦ, ନିରକ୍ଷରତା ଇତ୍ୟାଦି ନାନା କାରଣ ଖୋଜି ପାରନ୍ତି । ଏପରିକି ଜଣେ ହେତୁବାଦୀ ସଂସ୍କୃତି ନାମରେ ଥିବା ଅପସଂସ୍କୃତି, ସ୍ୱାଧୀନ ଚିନ୍ତା ପରିବର୍ତ୍ତେ ଧର୍ମଗତ ଭାବପ୍ରବଣତା ଓ ରକ୍ଷଣଶୀଳତା, ଅବାସ୍ତବ ଓ ପରମାର୍ଥିକ ଦୃଷ୍ଟିକୋଣ ଓ କୁସଂସ୍କାର ପରି କାରଣକୁ ଆମ ନୈତିକ ସ୍ଖଳନର କାରଣ ବୋଲି ବିଚାର କରିପାରନ୍ତି । ସେହିପରି ଧର୍ମଗତ, ଶିକ୍ଷାଗତ ବା ଅନ୍ୟାନ୍ୟ କାରଣ ମଧ୍ୟ ଦିଆଯାଇପାରେ ।

ଏସବୁ କାରଣ ବ୍ୟତୀତ ରାଜନୈତିକ କାରଣ ସମୂହ ଜାତୀୟ ଜୀବନର ଅଧୋଗତି ପାଇଁ ବିଶେଷ ଦାୟୀ ବୋଲି କୁହାଯାଇପାରେ । ଅର୍ଥନୈତିକ, ସାମାଜିକ ଓ ଶିକ୍ଷାଗତ ବ୍ୟବସ୍ଥାକୁ ରାଜନୈତିକ ବ୍ୟବସ୍ଥା ନିୟନ୍ତ୍ରଣ କରୁଥିବାରୁ ଓ ଭାରତ ବର୍ଷରେ

ରାଜନୀତିର ପ୍ରବେଶ ସବୁ ସ୍ତରରେ ଅବାଧରେ ହୋଇ ପାରୁଥିବାରୁ ଜାତୀୟ ଜୀବନରେ ନୈତିକ ମୂଲ୍ୟବୋଧର ହ୍ରାସ ନେଇ ରାଜନୈତିକ କାରଣ ସମୂହ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସକଳ ରାଜନୈତିକ କାରଣକୁ ଦୁଇଟି ଦିଗରୁ ବିଚାର କରାଯାଇପାରେ; ଯଥା (୧) ସାଂପ୍ରତିକ ଭାରତୀୟ ସମାଜରେ ସକଳ ସ୍ତରରେ ରାଜନୀତି ପ୍ରବେଶ କରିବା ଓ ଜାତୀୟ ଜୀବନର କୌଣସି କ୍ଷେତ୍ର ରାଜନୈତିକ ପ୍ରଭାବରୁ ମୁକ୍ତ ନ ରହିବା, ଓ (୨) ଆମ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଜନୈତିକ ଜୀବନ ନୈତିକତାଠାରୁ ସଂପୂର୍ଣ୍ଣ ଦୂରେଇଯିବା ଓ ରାଜନୈତିକ ଦଳ ସମୂହର କୌଣସି ଆଚରଣ ବିଧି ନ ରହିବା ।

ସକଳ ସ୍ତରରେ ରାଜନୀତି ପ୍ରବେଶ କରିବା ଓ ଜାତୀୟ ଜୀବନର କୌଣସି କ୍ଷେତ୍ର ରାଜନୈତିକ ପ୍ରଭାବରୁ ମୁକ୍ତ ନ ରହିବା ଫଳରେ ଦେଶର ଉନ୍ନୟନ କ୍ଷେତ୍ରରେ ବି ରାଜନୈତିକ ଦୂରଭିସନ୍ଧି ଆରୋପ କରାଯାଉଛି । ନିଜର ରାଜନୈତିକ ପ୍ରଭାବ ରହିଥିଲେ ଜଣେ ବ୍ୟକ୍ତି ସମାଜରେ ପ୍ରଚୁର ଉପାର୍ଜନ କରିବାଠାରୁ ଆରମ୍ଭ କରି ସାମାଜିକ ପଦ ପଦବୀ, ସାହିତ୍ୟିକ ଖ୍ୟାତି ଓ ବୌଦ୍ଧିକ ସମ୍ମାନ ବି ଲାଭ କରିପାରୁଛି । ଏପରିକି ସମାଜ ସେବା କରିବାକୁ ଯାଉଥିବା କୌଣସି ବ୍ୟକ୍ତିର ରାଜନୈତିକ ପ୍ରଭାବ ନ ଥିଲେ ସେ ବହୁ ସମୟରେ ନାନା ପ୍ରତିବନ୍ଧକର ସମ୍ମୁଖୀନ ହେଉଛି, ଅଥଚ ନିଜର ସ୍ୱାର୍ଥସାଧନ ପାଇଁ କୌଣସି ସେବାକାର୍ଯ୍ୟ କଲା ସମୟରେ ରାଜନୈତିକ ପ୍ରଭାବଶାଳୀ ବ୍ୟକ୍ତି ସକଳ ସୁଯୋଗ ପାଇପାରୁଛି । ଫଳତଃ ଜାତୀୟ ଜୀବନରେ ସରକାରଙ୍କ ପ୍ରତି ଏକ ସନ୍ଦେହ ମନୋଭାବ ଜନମାନସରେ ଗଢ଼ି ଉଠୁଛି ଓ ଯେକୌଣସି ଜନହିତୈଷୀ ନିଷ୍ପତ୍ତିକୁ ସନ୍ଦେହ ଚକ୍ଷୁରେ ଦେଖାଯାଉଛି ।

ଦ୍ୱିତୀୟ କାରଣ ବିଷୟରେ ଏହା କୁହାଯାଇପାରେ ଯେ ରାଜନୀତି ସହିତ ସଂପୃକ୍ତ ଥିବା ବ୍ୟକ୍ତି ବିଶେଷଙ୍କର ବ୍ୟକ୍ତିଗତ ଜୀବନର ଆଚରଣକୁ ଜାତୀୟ ସଙ୍ଗଠନରେ ଆଦୌ ଗୁରୁତ୍ୱ ଦିଆଯାଉ ନାହିଁ । ଜଣେ ବ୍ୟକ୍ତିଙ୍କର ଆଚରଣ, ନୈତିକ ଶୃଙ୍ଖଳା, ସାଧୁତା, ଚରିତ୍ରବତ୍ତା ପ୍ରତି ଗୁରୁତ୍ୱ ଦିଆ ନ ଯାଇ ଦଳୀୟ ଆନୁଗତ୍ୟକୁ ତାଙ୍କ ରାଜନୈତିକ ଜୀବନର ମାନଦଣ୍ଡ ଭାବେ ବିଚାର କରାଯାଉଛି । ଦଳୀୟ ଆନୁଗତ୍ୟକୁ ନୈତିକ ଆଦର୍ଶ ଊର୍ଦ୍ଧ୍ୱରେ ବିଚାର କରାଯାଉଥିବାରୁ ଆମର ରାଜନୈତିକ ଜୀବନ ଅନୈତିକତା ପ୍ରଭାବରୁ ମୁକ୍ତ ରହିପାରୁ ନାହିଁ ।

ବସ୍ତୁତଃ ସମାଜର ନୈତିକ ଅଧୋଗତି କ୍ଷେତ୍ରରେ ରାଜନୈତିକ କାରଣ ସମୂହ ଅଧିକ ଦାୟୀ ବୋଲି କୁହାଯାଇପାରେ । ଅବଶ୍ୟ ସାଂପ୍ରତିକ ସମାଜର ଅନୁଷ୍ଠାନମାନଙ୍କୁ ରାଜନୈତିକ ପ୍ରଭାବରୁ ମୁକ୍ତ ରଖିବା ବା ରାଜନୈତିକ ବ୍ୟକ୍ତିଙ୍କର ଜାତୀୟ ଜନମତକୁ ପ୍ରଭାବିତ କରିବାର ସମ୍ଭାବନାକୁ ଏଡାଇ ଦିଆଯାଇ ନ ପାରେ । ରାଜନୈତିକ କାର୍ଯ୍ୟ କାଳେ ନୈତିକ ଆଦର୍ଶ ପ୍ରତି ଉଦାସୀନ ରହିବ ସେଥିପାଇଁ ଗାନ୍ଧିଜୀ ରାଜନୀତି ଓ

ନୈତିକତା ଭିତରେ ଏକ ସମନ୍ୱୟ ଆଣିଥିଲେ । ତାଙ୍କର ରାଜନୈତିକ କାର୍ଯ୍ୟକଳାପ ଭିତରେ ଉଚ୍ଚ ଆଦର୍ଶ ପ୍ରତିଫଳିତ ହେଉଥିଲା ଓ ବିଶେଷତଃ କୌଣସି ରାଜନୈତିକ କର୍ମୀଙ୍କ ପାଇଁ ବ୍ୟକ୍ତିଗତ ଜୀବନରେ ସାଧୁତା, ସତ୍ୟବାଦିତା, ସରଳ ଜୀବନ ଯାପନ ଆଦି ପ୍ରତି ସେ ଅତ୍ୟଧିକ ଗୁରୁତ୍ୱ ଆରୋପ କରୁଥିଲେ । କିନ୍ତୁ ସଂପ୍ରତି ଆମର ଅସଂଖ୍ୟ ରାଜନୈତିକ ଦଳମାନଙ୍କ ଆଭିମୁଖ୍ୟରେ ନୈତିକ ମୂଲ୍ୟବୋଧର କୌଣସି ସ୍ୱଷ୍ଟ ଚିତ୍ର ଦେଖିବାକୁ ମିଳେ ନାହିଁ ବା ନୈତିକ ଆଚରଣ ପ୍ରତି ଗୁରୁତ୍ୱ ଦିଆଯାଏ ନାହିଁ । ବସ୍ତୁତଃ ବ୍ୟକ୍ତି ବିଶେଷଙ୍କର କୌଣସି ଦଳ ପ୍ରତି ଆନୁଗତ୍ୟ ଦଳର ଆଦର୍ଶ ବା କର୍ମସୂଚୀ ଦ୍ୱାରା ଅନୁପ୍ରାଣିତ ନ ହୋଇ କ୍ଷମତା ହାସଲ ବା ସ୍ୱାର୍ଥ ସାଧନ ଦ୍ୱାରା ପ୍ରଭାବିତ ହୋଇଥାଏ ।

ଜନମାନସରେ ନୈତିକ ଆଚରଣ ପ୍ରତି ଶ୍ରଦ୍ଧା ସୃଷ୍ଟି କରିବାରେ ସାମାଜିକ ପରିବେଶର ଭୂମିକା ସବୁଠୁ ଗୁରୁତ୍ୱପୂର୍ଣ୍ଣ । ସାମାଜିକ ପରିବେଶ ଉନ୍ନତ ହୋଇଥିଲେ ବ୍ୟକ୍ତି ବିଶେଷ ଏହାର ପ୍ରଭାବରେ ନୈତିକ ଜୀବନ ଯାପନ ପାଇଁ ପ୍ରେରଣା ପାଇଥାନ୍ତି । ଦେଶର ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥା, ଗଣମାଧମ ଓ ପରିବେଶ ଭିତରୁ ପ୍ରତ୍ୟେକ ବ୍ୟକ୍ତି ନାଗରିକ କର୍ତ୍ତବ୍ୟବୋଧ ଓ ଅନ୍ୟ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ ଶିକ୍ଷା କରିଥାନ୍ତି । କିନ୍ତୁ ସାମ୍ପ୍ରତିକ ସମାଜରେ ଏସବୁର ଅଭାବରେ ନାଗରିକ କର୍ତ୍ତବ୍ୟବୋଧ ଦ୍ରୁତ ଗତିରେ ହ୍ରାସ ପାଇବାରେ ଲାଗିଛି । ପରିଣାମରେ ବ୍ୟକ୍ତି ନିଜକୁ ଅସହାୟ ବୋଧ କରୁଛି ଓ ଅନ୍ୟ ପ୍ରତି ମାନବିକ ଦୃଷ୍ଟିକୋଣ କମିଯିବା ଫଳରେ ଜଣେ ସ୍ୱଳ୍ପ ବିଶେଷରେ ନିଜ ଶକ୍ତିର ଅପଚୟ କରୁଛି । ନିଜର କର୍ତ୍ତବ୍ୟ ସଂପାଦନ କରିବା ଏକ ସାମାଜିକ ଆବଶ୍ୟକତା ହୋଇଥିଲେ ବି ଏହାର ଗୁରୁତ୍ୱ ଯଥେଷ୍ଟ ଅନୁଭୂତ ହେଉନାହିଁ ଓ ଜଣେ ନିଜର କର୍ତ୍ତବ୍ୟ କଲାବେଳେ ଅନ୍ୟ ପ୍ରତି ଦୟା ପ୍ରଦର୍ଶନ କରୁଛି ବୋଲି ଭ୍ରାନ୍ତ ମନୋଭାବ ସୃଷ୍ଟି ହେଉଛି । ସୁତରାଂ ଅନ୍ୟ ସହ ବ୍ୟକ୍ତିଗତ ସମ୍ବନ୍ଧ ନ ଥିଲେ ବା ଅନ୍ୟକୁ ସନ୍ତୁଷ୍ଟ କରିପାରୁ ନ ଥିଲେ ନିଜର ନ୍ୟାୟୋଚିତ କାର୍ଯ୍ୟଟି ସୁବିଧାରେ ସଂପାଦିତ ହୋଇପାରୁନାହିଁ । ଫଳତଃ ସମାଜ ବିଷୟରେ ଏକ ନୈରାଶ୍ୟଜନକ ମନୋଭାବ ସୃଷ୍ଟି ହେବାରେ ଲାଗିଛି । କୌଣସି ନା କୌଣସି ପରିସ୍ଥିତିରେ ପ୍ରତ୍ୟେକ ବ୍ୟକ୍ତି ଏହି ପ୍ରତିବନ୍ଧକର ସମ୍ମୁଖୀନ ହେଉଥିବାରୁ ଜାତୀୟ ଜୀବନରେ ଗଭୀର ଅସନ୍ତୋଷ ଓ ନୈରାଶ୍ୟ ବୃଦ୍ଧି ପାଉଛି । ବ୍ୟକ୍ତି ବିଶେଷର ନୈରାଶ୍ୟ ଓ ଅସନ୍ତୋଷର ସମଷ୍ଟିରେ ଜାତୀୟ ଅସନ୍ତୋଷ ବିରାଟ ଆକାର ଧାରଣ କରୁଛି । ଜଣେ ଏହି ନୈରାଶ୍ୟଜନକ ପରିସ୍ଥିତିର ସମ୍ମୁଖୀନ ହେଉଥିବାରୁ ପ୍ରତିଦାନରେ ସେ ସଚେତନ ଭାବେ ହେଉ ବା ଅଜ୍ଞାତ ଭାବରେ ହେଉ ସୁଯୋଗ ପାଇଲେ ନିଜର ପ୍ରଭୁତ୍ୱ ବିସ୍ତାର କରିବାକୁ ପଶ୍ଚାତପଦ ହେଉନାହିଁ । କ୍ଷମତାରେ ରହିଥିବା ରାଜନୈତିକ ବ୍ୟକ୍ତି ନିଜ କର୍ତ୍ତବ୍ୟର ଅସଦ୍ ବ୍ୟବହାର କରି ଜଣେ ଯନ୍ତ୍ରୀକୁ ହଇରାଣ କରୁଛି ଓ ଯନ୍ତ୍ରୀ ନିଜର କ୍ଷତି ପୂରଣ କରିବାକୁ ଯାଇ ଠିକାଦାରକୁ ଅସୁବିଧାରେ ପକାଉଛି । ଠିକାଦାର ଅନ୍ୟଦ୍ୱାରା

ଅସୁବିଧାର ସମ୍ମୁଖୀନ ହୋଇ ନିଜର କର୍ତ୍ତବ୍ୟରେ ଅସତ୍ ଉପାୟ ଅବଲମ୍ବନ କରୁଛି । ଶୁଳକ୍ ଆଦାୟ କର୍ମଚାରୀ ଦୋକାନୀ ପାଖରେ ନିଜର ପ୍ରଭୁତ୍ୱ ବିସ୍ତାରକରି ତା'ଠାରୁ ଅର୍ଥ ସଂଗ୍ରହ କରୁଛି ଓ ଦୋକାନୀ ନିଜର କ୍ଷତି ପୂରଣ କରିବାକୁ ଯାଇ ନିକୃଷ୍ଟ ଧରଣର ଜିନିଷ ବଜାରକୁ ଛାଡୁଛି । ଡାକ୍ତରଖାନାର କର୍ମଚାରୀ ରୋଗୀ ପାଖରେ ନିଜର ସାମର୍ଥ୍ୟ ଜାହିର କରୁଛି, ଅଥଚ ଟ୍ରେନରେ ଏକ ସ୍ଥାନ ସଂରକ୍ଷଣ ପାଇଁ ନିଜକୁ ଅସହାୟ ବୋଧ କରୁଛି କାରଣ, ସେତେବେଳେ ସେ ରୋଗୀ ଦାୟିତ୍ୱରେ ନାହିଁ । ଏହିପରି ଅସଂଖ୍ୟ ଉଦାହରଣ ଆମର ସାମାଜିକ ଜୀବନରୁ ଦିଆଯାଇପାରେ । ଅନ୍ୟ ଦ୍ୱାରା ପ୍ରତାରିତ ହୋଇ ପ୍ରତିଦାନରେ ଅନ୍ୟକୁ ପ୍ରତାରିତ କରିବା ଏକ ଜୀବନଧାରାରେ (Way of life) ପରିଣତ ହୋଇଯାଉଛି ।

ଆମ ସମାଜରେ ନୈତିକତା ହ୍ରାସର ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି ଭଲ ମନ୍ଦ ନିର୍ବିଶେଷରେ ନିଜକୁ ପରିସ୍ଥିତି ସହିତ ଖାପ ଖୁଆଇ ନେବାର ମନୋବୃତ୍ତି । ପରିସ୍ଥିତି ସହିତ ନିଜକୁ ମିଶାଇ ନେବାର ମନୋଭାବ ଏପରି ଏକ ଜୀବନ ଦର୍ଶନରେ ପରିଣତ ହୋଇଯାଉଛି ଯଦ୍ୱାରା ଏହାର ନୈତିକ ଦିଗ ପ୍ରତି ଗୁରୁତ୍ୱ ଦିଆଯାଉ ନାହିଁ । ଏପରିକି ପରିସ୍ଥିତି ସହିତ ଖାପ ଖୁଆଇ ନ ପାରିଲେ ଜଣେ ବଞ୍ଚି ପାରିବ ନାହିଁ ଓ କେହି ନିଜର ନୈତିକ ପରାକାଷ୍ଠାର ପରିଚୟ ଦେଇ ନିଜକୁ ଅନ୍ୟାୟ ସହିତ ଖାପ ଖୁଆଇ ନ ନେଲେ ତାହାକୁ ଅବାସ୍ତବବାଦୀ ବା ଆଦର୍ଶବାଦୀ କହି କଟାକ୍ଷ କରାଯାଏ । ନିଜର ନ୍ୟାୟୋଚିତ ପ୍ରମୋଶନ ପାଇଁ ଉପରିସ୍ଥ ପଦସ୍ଥ ବ୍ୟକ୍ତିଙ୍କୁ ଲାଞ୍ଚ ଦେବା ଆବଶ୍ୟକ, ନିଜର ଆବଶ୍ୟକ ଯୋଗ୍ୟତା ଥାଇ ବି ନିଯୁକ୍ତି ପାଇଁ ଅନ୍ୟକୁ ସନ୍ତୁଷ୍ଟ କରିବା ଦରକାର, ସରକାରୀ ଚିକିତ୍ସାଳୟରେ ନିଜ ଚିକିତ୍ସାର ସୁବନ୍ଦୋବସ୍ତ କରିବା ପାଇଁ ଡାକ୍ତରଙ୍କୁ ଅର୍ଥ ଦେବା ଉଚିତ, ନିଜର କଣ୍ଟ୍ରୋଲ ସାମଗ୍ରୀ ଠିକ୍ ପାଇବା ପାଇଁ ଯୋଗାଣ ବିଭାଗ କର୍ମଚାରୀଙ୍କୁ ଖୁସି କରିବା ଆବଶ୍ୟକ, କୌଣସି ଦିଅଁ ଦର୍ଶନ ପାଇଁ ପୂଜକକୁ ବଟି ଦେବା ଦରକାର ଇତ୍ୟାଦି କାର୍ଯ୍ୟକୁ ଅସୁବିଧାରେ ସମ୍ମୁଖୀନ ହେବା ଅପେକ୍ଷା ଗ୍ରହଣ କରିନେବା ବିଜ୍ଞତାର ପରିଚାୟକ ବୋଲି ଯୁକ୍ତି କରାଯାଏ । ଅନ୍ୟାୟ ସହିତ ସାଲିସ କରିନେବାର ମନୋଭାବକୁ ଯୁଗର ଆବଶ୍ୟକତା ବୋଲି ଗ୍ରହଣ କରିବା ଓ ଏଥିପାଇଁ ନିଜକୁ ବାସ୍ତବବାଦୀ ବୋଲାଇବା ଏକ କ୍ଷୟଶୀଳ ସମାଜର ଚିତ୍ର ଦେଇଥାଏ ।

କୌଣସି ଅନ୍ୟାୟ କାର୍ଯ୍ୟରେ ଜଣେ ସଚେତନ ବ୍ୟକ୍ତିର ପ୍ରତିକ୍ରିୟା ହେଉଛି ସେ ଏଥିପାଇଁ ଦୁଃଖ ପ୍ରକାଶ କରେ, ଅନୁତାପ କରେ ଓ ସ୍ଥଳ ବିଶେଷରେ ଗଭୀର ମାନସିକ ଯନ୍ତ୍ରଣା ଲାଭକରେ । କିନ୍ତୁ ଅନୁଶୋଚନାର ବିଷୟ ଆମର ଜାତୀୟ ଜୀବନରୁ ଏପରି ବହୁ ଦୃଷ୍ଟାନ୍ତ ମିଳିଥାଏ ଯଦ୍ୱାରା ଏକ ଅନୈତିକ କାର୍ଯ୍ୟରେ ଲିପ୍ତ ରହି ସେଥିପାଇଁ ଗର୍ବ ଅନୁଭବ କରିବା ଓ ନିଜ ସାମର୍ଥ୍ୟର ପରାକାଷ୍ଠା ଦେଖାଇବା,। ପ୍ରଭାବ ପକାଇ ବିନା ଯୋଗ୍ୟତାରେ ନିଜ ପୁତ୍ରକୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ କରାଇ ପାରିବାରୁ ନିଜକୁ

କରିଦ୍ୱକର୍ମା ବିଚାର କରିବା, ସିନେମା ଟିକେଟକୁ କଳାବଜାର କରି ଅନ୍ୟମାନଙ୍କଠାରୁ ଅଧିକ ରୋଜଗାର କରୁଥିବାରୁ ନିଜର ବାହାବା ଦେଖାଇବା, ଅପମିଶ୍ରିତ ଜିନିଷକୁ ଖାଣ୍ଟି କହି ବିକ୍ରୀ କରି ପାରିଥିବାରୁ ସନ୍ତୋଷ ଲାଭ କରିବା, ଲୋକଙ୍କର ଧର୍ମଗତ ଭାବ ପ୍ରବଣତାର ସୁଯୋଗ ନେଇ କିଛିଟା ଯାଦୁ ଦେଖାଇ ନିଜକୁ ଅଲୌକିକ ଶକ୍ତି ସଂପନ୍ନ ବୋଲି ବିଶ୍ୱାସ ଜନ୍ମାଇବା ଇତ୍ୟାଦି ଅସଂଖ୍ୟ ଉଦାହରଣ ଆମ ଜନ ଜୀବନରୁ ଦିଆଯାଇ ପାରେ । ଏହି ସବୁ କାରଣର ପ୍ରାଧାନ୍ୟ ନେଇ ଆମ ସମାଜରେ ଏପରି ବିଶ୍ୱାସ ବୃଦ୍ଧି ପାଇବାରେ ଲାଗିଛି ଯେ ନୈତିକ ଜୀବନ ଯାପନ ଦ୍ୱାରା ବ୍ୟକ୍ତି ସୁଖ ଶାନ୍ତି ପାଇପାରିବ ନାହିଁ ଓ ନୈତିକତା ସହିତ ସୁଖ ଶାନ୍ତିର ସମ୍ବନ୍ଧ ନାହିଁ । ଯେଉଁଠି ଅନୈତିକ ପନ୍ଥାକୁ ସାମାଜିକ ଶ୍ରେୟ ହାସଲ କ୍ଷେତ୍ରରେ ଅବଲମ୍ବନ କରାଯାଏ ଓ ଏହା ସମାଜରେ ବହୁଳ ଭାବରେ ଏକ ଜୀବନଧାରାରେ ପରିଣତ ହୋଇଥାଏ ତାହା ଯେ ଏକ ଅପକର୍ଷ ସମାଜ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମାଜର ଏହି ଅଧୋଗତି ସମୟରେ ଲୋକ ଚରିତ୍ରକୁ ଉନ୍ନତ କରିବା ପାଇଁ ଜାତୀୟ ସ୍ତରରେ ପ୍ରୟାସ ହେବା ଚାହି । ଆମର ଶିକ୍ଷା ବ୍ୟବସ୍ଥା, ଗଣମାଧ୍ୟମ ଓ ସକଳ ପ୍ରକଳ୍ପ ଭିତରେ ଏହି ଲକ୍ଷ୍ୟକୁ ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ । ଯେକୌଣସି ପ୍ରକାରର ଅନୈତିକ କାର୍ଯ୍ୟ ସମାଜର ସୁସ୍ଥ ବିକାଶ ଦିଗରେ କିପରି ଅନ୍ତରାୟ ଏହି ବିଶ୍ୱାସ ଜନମାନସରେ ପ୍ରତିଷ୍ଠା କରିବା ପାଇଁ ସୁଚିନ୍ତିତ ଓ ନିରନ୍ତର ପଦକ୍ଷେପ ଦରକାର । ସମାଜର ନୈତିକ ଅଧୋଗତି ପାଇଁ ବ୍ୟକ୍ତି ବିଶେଷ କିପରି ଦାୟୀ ଏହି ଭାବନା ସୃଷ୍ଟି କରିବା ଦିଗରେ ସବୁ ସ୍ତରରୁ ଉଦ୍ୟମ ହେବା ବାଞ୍ଛନୀୟ । ବିଶେଷ କରି ସାମ୍ପ୍ରତିକ ପରିବେଶରେ ଅସୁସ୍ଥ ବୋଧ କରୁଥିବା ସଚେତନ ବ୍ୟକ୍ତିମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେବା ଉଚିତ୍ । କେଉଁ ପ୍ରକାରର ଜୀବନ ବ୍ୟକ୍ତି ପାଇଁ ଶ୍ରେୟ ଓ ଜୀବନର ଲକ୍ଷ୍ୟ କ'ଣ ହେବା ଆବଶ୍ୟକ ଏ ବିଷୟରେ ଜନ ମାନସରେ ଭାବନା ଉଦ୍ରେକ କରିବା ପାଇଁ ଦେଶର ସଚେତନ ବୁଦ୍ଧିଜୀବୀମାନେ ଉଦ୍ୟମ କରିବା ଦରକାର । ସମାଜର ସକଳ ମୂଲ୍ୟବୋଧ ଭୁଷୁଡି ପଡୁଥିବା ସମୟରେ ନିଜକୁ ଉଦାସୀନ ରଖିଲେ ସେହି ଦୁର୍ଗତି ଭିତରେ ନିଜର ଜୀବନ ଯେ ଏକ ସମୟରେ ବିପର୍ଯ୍ୟସ୍ତ ହୋଇ ପଡ଼ିବ ଏକଥା ଦେଶର ଯୁବ ଶକ୍ତିକୁ ବୁଝାଇବା ବିଧେୟ ।

ଏହା ସହିତ ଆମର ପ୍ରାଚୀନ ମୂଲ୍ୟବୋଧ ଓ ଲୋକସଂସ୍କୃତି ଏତେ ଉନ୍ନତ ଥାଇ ବି କେଉଁ କାରଣରୁ ଆମ ଜାତୀୟ ଚରିତ୍ର ନିମ୍ନଗାମୀ ହେବାରେ ଲାଗିଛି ଓ ଯୁଗ ଯୁଗର ଆଦର୍ଶ ଜନମାନସରେ ପ୍ରତିଫଳିତ ହୋଇ ପାରୁନାହିଁ ଏ କ୍ଷେତ୍ରରେ ଏକ ସ୍ୱଚ୍ଛ ଚିତ୍ର ପାଇବାକୁ ଏଥିରେ ବୌଦ୍ଧିକ ଗବେଷଣା ହେବା ଆବଶ୍ୟକ । ଆମ ସଂସ୍କୃତି ଉପରେ ବାହ୍ୟ ସଂସ୍କୃତି ପ୍ରଭାବର ଭଲ ଓ ମନ୍ଦ ଦିଗ ଉପରେ ବିଶ୍ଲେଷଣ ହୋଇ ସକଳ ପ୍ରକାରର କୁପ୍ରଭାବ

ଓ ଅପସଂସ୍କୃତିକୁ ପ୍ରତିରୋଧ କରାଗଲେ ହୁଏତ ଏକ ସାଂସ୍କୃତିକ ଜାଗରଣର ଉନ୍ମେଷ ହୋଇପାରେ ।

ସୁତରାଂ ଲୋକଙ୍କର ଦୃଷ୍ଟିଭଙ୍ଗୀରେ ଏକ ମୌଳିକ ପରିବର୍ତ୍ତନ ସଂଘଟିତ କରାଇବାକୁ ହେଲେ ସବୁ ସ୍ତରରେ ବାସ୍ତବ ପଦକ୍ଷେପ ନେବା ଆବଶ୍ୟକ । ଅବଶ୍ୟ ଏହାର ପରିଣାମ ନେଇ ସନ୍ଦେହ ରହିପାରେ, ତଥାପି ନୈତିକ ସ୍ଖଳନକୁ ରୋକିବା ଦିଗରେ ଜାତୀୟ ସ୍ତରରେ ସଚେତନ ପଦକ୍ଷେପ କେବେବି ନିଷ୍ଫଳ ହେବ ନାହିଁ ଏହା ମଧ୍ୟ ଆଶା କରିବା ଉଚିତ୍ । ଏହା ସହିତ ଲୋକମାନଙ୍କର ଆବଶ୍ୟକତା, ସମସ୍ୟା ଓ ଦୃଷ୍ଟିକୋଣକୁ ଯଥେଷ୍ଟ ଅନୁଧ୍ୟାନ କରି ଏହା ସହିତ ସାମଞ୍ଜସ୍ୟ ରକ୍ଷା କରିବା ଆମର ସକଳ ସାମାଜିକ ପ୍ରକଳ୍ପ, ଶିକ୍ଷା ଓ ଯୋଜନା ନିୟନ୍ତ୍ରିତ ହେବା ଆବଶ୍ୟକ । ବିଶେଷ କରି ସକଳ ସରକାରୀ ଉଦ୍ୟୋଗର ପ୍ରୟୋଗ କ୍ଷେତ୍ରରେ ଦୁର୍ନୀତି ଯେପରି ଅବାଧରେ ରହିଯାଇ ପାରୁଛି ଓ ସରକାରୀ ନୀତିର ମୌଳିକ ତ୍ରୁଟି ଯୋଗୁଁ ଜାତୀୟ ଜୀବନର ବହୁ ସ୍ତରରେ ଅନୈତିକତା ବୃଦ୍ଧି ପାଉଛି ସେଥିପାଇଁ ଯଥେଷ୍ଟ ସଚେତନତା ଆବଶ୍ୟକ । ଏହିପରି ସବୁ ସ୍ତରକୁ ଦୁର୍ନୀତିମୁକ୍ତ କରିବା ପାଇଁ ପ୍ରୟାସ ହେଲେ ଏହାର ସୁଫଳ ନିଶ୍ଚୟ ମିଳି ପାରିବ । ନୈତିକତା ସହିତ ବ୍ୟକ୍ତିଗତ ସୁଖ ଓ ସାମାଜିକ ସଂହତି ଯେ ଓତପ୍ରୋତ ଭାବେ ଜଡ଼ିତ ଏହି ବିଶ୍ୱାସ ଜନଗଣଙ୍କ ମଧ୍ୟରେ ସୃଷ୍ଟି କରିବା ପାଇଁ ଉଦ୍ୟମ ଦରକାର । ଲୋକ ଚରିତ୍ରକୁ ଉନ୍ନତ କରିବା ପାଇଁ ଯଦି ସାମାଜିକ କ୍ରାନ୍ତି ଦିଗରେ କିଛି ନିଷ୍ଠାପର ଉଦ୍ୟମ ହୋଇପାରନ୍ତା ତେବେ ଜାତୀୟ ଜୀବନରେ ଗୁଣାତ୍ମକ ପରିବର୍ତ୍ତନ ଆସିପାରନ୍ତା । ଆଜିର ସଙ୍କଟମୟ ପରିସ୍ଥିତିକୁ ପ୍ରତିହତ କରିବା ପାଇଁ ଅନ୍ୟାନ୍ୟ ପଦକ୍ଷେପ ସହିତ ଜାତୀୟ ସ୍ତରରେ ଏକ ନୈତିକ ଜାଗରଣର ଯେ ଗୁରୁତ୍ୱ ରହିଛି ଏହା ଅନସ୍ୱୀକାର୍ଯ୍ୟ ।

■■

# ଗଣତନ୍ତ୍ର ଓ ଜାତୀୟ ଦୃଶ୍ୟପଟ

ଗଣତନ୍ତ୍ର ଯେପରି ଏକ ରାଜନୈତିକ ଶାସନ ପ୍ରକ୍ରିୟାକୁ ବୁଝାଏ ସେହିପରି କେତେକ ସାମାଜିକ ମୂଲ୍ୟବୋଧକୁ ମଧ ସୂଚାଇଥାଏ । ଅବଶ୍ୟ ଏହା ଏକ ରାଜନୈତିକ ବ୍ୟବସ୍ଥା ଭାବରେ ସମ୍ପ୍ରତି ସ୍ୱୀକୃତ ହୋଇଛି । ପ୍ରଥମେ ଏହା କେତେକ ସାମାଜିକ ଆଦର୍ଶ ଭାବେ ବିକାଶ ଲାଭ କରିଥିଲା । ଗଣତନ୍ତ୍ରକୁ ଏକ ରାଜନୈତିକ ବ୍ୟବସ୍ଥା ଭାବରେ ଗ୍ରହଣ କଲାବେଳେ ମତ ପାର୍ଥକ୍ୟ ରହିପାରେ, କିନ୍ତୁ ଏହାକୁ ଏକ ଆଦର୍ଶବୋଧ ଭାବରେ ଗ୍ରହଣ କରିବାବେଳେ ଏହି ମତ ପାର୍ଥକ୍ୟ ସୀମିତ ଥିବା ମନେହୁଏ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ନିରପେକ୍ଷ ନିର୍ବାଚନ, ନିର୍ବାଚିତ ସରକାର, ବିଚାର ବିଭାଗ ଓ ସମ୍ବାଦପତ୍ରର ସ୍ୱାଧୀନତା, ବ୍ୟକ୍ତି ସ୍ୱାଧୀନତା ଓ ନାଗରିକ ଅଧିକାରକୁ ଗୁରୁତ୍ୱ ଦିଆଯାଇଥାଏ । ଜଣେ ନାଗରିକ କୌଣସି ସଂଗଠନ କରିବା, ନିଜର ସ୍ୱାଧୀନ ମତ ବ୍ୟକ୍ତ କରିବା, କୌଣସି ଧର୍ମକୁ ଗ୍ରହଣ କରିବା ବା ନ କରିବା, ନିଜର ସାମର୍ଥ୍ୟାନୁଯାୟୀ କର୍ମ ସଂସ୍ଥାନ ଗ୍ରହଣ କରିବା, ରାଷ୍ଟ୍ର ଭିତରେ ବା ବାହାରକୁ ଯିବା ପାଇଁ ପ୍ରୟାସୀ ହେବା ଇତ୍ୟାଦି ଅଧିକାର ଏ କ୍ଷେତ୍ରରେ ପାଇଥାଏ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଏହି ସବୁକୁ ପ୍ରାଧାନ୍ୟ ଦିଆଯାଇଥାଏ । କେହି କେହି ଏସବୁକୁ ଗଣତନ୍ତ୍ରର ଆଙ୍ଗିକତା ବୋଲି ଉଲ୍ଲେଖ କରି ପୁଞ୍ଜିବାଦୀ ବ୍ୟବସ୍ଥାର ବିଲୋପ, ଅର୍ଥନୈତିକ ସମତା ଓ ରାଷ୍ଟ୍ରଦ୍ୱାରା ସକଳ ପୁଞ୍ଜି ନିୟନ୍ତ୍ରଣକୁ ଯଥାର୍ଥ ଗଣତନ୍ତ୍ର ବୋଲି କହିଥାନ୍ତି । ବିଶେଷ କରି କମ୍ୟୁନିଷ୍ଟ ମାନେ ନିର୍ବାଚନ ବ୍ୟବସ୍ଥା, ଗଣମାଧମର ସ୍ୱାଧୀନତା ଓ ନାଗରିକ ଅଧିକାର ଅପେକ୍ଷା ଅର୍ଥନୈତିକ ସମତାକୁ ଯଥାର୍ଥ ଗଣତନ୍ତ୍ର କହିଥାନ୍ତି ଓ ସମାଜବାଦ ଛଡ଼ା ଗଣତନ୍ତ୍ର ମୂଲ୍ୟହୀନ ବୋଲି ଉଲ୍ଲେଖ କରିଥାନ୍ତି । ଗଣତନ୍ତ୍ରର ଏହି ଦ୍ୱିବିଧ ଅର୍ଥ କେତେକାଂଶରେ ପାରିଭାଷିକ ମନେ ହେଲେ ବି ଗଣତନ୍ତ୍ର ଓ କମ୍ୟୁନିଷ୍ଟ ଶାସନ ପ୍ରକ୍ରିୟା ଭିତରେ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ସଂପ୍ରତି ଗଣତନ୍ତ୍ର ଏକ ରାଜନୈତିକ ଶାସନ ବ୍ୟବସ୍ଥାକୁ ବୁଝାଉଥିଲେ ହେଁ ଏହା ଏକ ଆଦର୍ଶ ଭାବରେ ବିକାଶ ଲାଭ କରିଛି । ସଭ୍ୟତାର ସୁଦୀର୍ଘ ଅଗ୍ରଗତି ଭିତରେ ଗଣତାନ୍ତ୍ରିକ ଚେତନାର ବିକାଶ ଏକ ଐତିହାସିକ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ, ଏହି ବିଚାରଧାରା ଏକ ପାଶ୍ଚାତ୍ୟ ରାଜନୈତିକ ଆଦର୍ଶ ଭାବରେ ଗତ କେତେ ଶତାବ୍ଦୀ ଧରି ଅଭ୍ୟୁଦୟ

ହୋଇଛି । ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୁଗର ସନ୍ଧିକ୍ଷଣରେ ପାଶ୍ଚାତ୍ୟ ଚିନ୍ତାମାନସ ବହୁ ଭାବରେ ତୃମୂଳ ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା । ମଧ୍ୟଯୁଗୀୟ-ଧର୍ମଭିତ୍ତିକ-ସମାଜରେ ରାଜତନ୍ତ୍ର ରହିବା ସହିତ ଏହା ବିଶ୍ୱାସ କରାଯାଉଥିଲା ଯେ ରାଜା ଈଶ୍ୱରଙ୍କର ଅବତାର ସଦୃଶ, ଏଣୁ ରାଜତନ୍ତ୍ରର ବିରୋଧ କରିବା ଅର୍ଥ ଈଶ୍ୱରୀୟ ନିୟମକୁ ଲଙ୍ଘନ କରିବା । ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୁଗରେ ଅନେକ କିଛି ଘଟଣାବଳୀ ସମାଜରୁ ରାଜତନ୍ତ୍ରକୁ ବିଲୋପ କରି ଏକ ନୂତନ ରାଜନୈତିକ ମୂଲ୍ୟବୋଧ ସୃଷ୍ଟି କରିବାରେ ସହାୟକ ହେଲା । ଗଣତାନ୍ତ୍ରିକ ଦୃଷ୍ଟିକୋଣ ସେହି ରାଜନୈତିକ ମୂଲ୍ୟବୋଧର ସଫଳ ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ନୂତନ ରାଜନୈତିକ ବ୍ୟବସ୍ଥାର ଅଭ୍ୟୁଦୟ ସହିତ ଜଗତ ଓ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ଧର୍ମଗ୍ରନ୍ଥମାନଙ୍କରେ ରହିଥିବା ଅନୁଶାସନ ସକଳକୁ ମଧ୍ୟ ଯୁଗରେ ନିରଙ୍କୁଶ ବୋଲି ଧରି ନିଆ ଯାଇଥିଲା । କିନ୍ତୁ ଅନୁଭବବାଦୀ ବୁଦ୍ଧିବାଦର ବିକାଶ ଯୋଗୁଁ ବିଶାଳ ପ୍ରକୃତିକୁ ବିଶ୍ଳେଷଣ କରିବା ସହିତ ସମାଜର ପ୍ରତ୍ୟେକଟି ଘଟଣାକୁ ମଧ୍ୟ ମଣିଷ ନିଜର ଅନୁଭୂତି ଓ ବୁଦ୍ଧିଦ୍ୱାରା ପର୍ଯ୍ୟାଲୋଚନା କରିପାରିଲା । ଅନୁଭବସିଦ୍ଧ ଓ ତର୍କ ବୁଦ୍ଧି ସମ୍ମତ ଜ୍ଞାନ ଧର୍ମୀୟ ବିଚାରର ବିରୁଦ୍ଧାଚରଣ କରୁଥିଲେ ବି ଆସ୍ତେ ଆସ୍ତେ ପ୍ରାଧାନ୍ୟ ଲାଭ କଲା । ଏହି ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ଏକ ସ୍ୱାଧୀନ ଓ ମୁକ୍ତ ଜୀବନ ପାଇଁ ସାମାଜିକ ଚେତନା ସୃଷ୍ଟି କଲା । ଫଳରେ ମଣିଷ ପ୍ରତି ଦୃଷ୍ଟିଭଙ୍ଗୀରେ ମଧ୍ୟ ପରିବର୍ତ୍ତନ ଆସିଲା । ମଣିଷର ଜୀବନକୁ ସାମାଜିକ ବ୍ୟବସ୍ଥାରେ ସାଧନ ବା ନିମିତ୍ତ ବୋଲି ନିଆନଯାଇ ଏହାକୁ ଏକ ଲକ୍ଷ୍ୟ ଭାବରେ ନିଆଗଲା । ଦୃଷ୍ଟିଭଙ୍ଗୀରେ ଏହି ପରିବର୍ତ୍ତନ ଗଣତାନ୍ତ୍ରିକ ଚେତନାକୁ ପୁଷ୍ଟ କରିବା ଦିଗରେ ସହାୟକ ହେବା ସହିତ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପାଇଁ ସାମାଜିକ ଅନୁକୂଳତା ସୃଷ୍ଟି କଲା ।

ବୈଚାରିକ ସ୍ତରରେ ''ସବୁ ମଣିଷ ସମାନ'' ଏହି ଭାବନା ସମାଜରେ ବ୍ୟକ୍ତ ହେଲା । ଫଳରେ ସମାଜରେ ଶାସକ ଓ ପୂଜକ ଶ୍ରେଣୀ ଯେଉଁ ପ୍ରାଧାନ୍ୟ ବିସ୍ତାର କରି ରହିଥିଲେ ଏବଂ ଲୋକମାନଙ୍କୁ ଧର୍ମୀୟ ଦିବ୍ୟ ଅନୁଶାସନ ନାମରେ ଯେପରି ଅଧସ୍ତନ କରି ଶୋଷଣ କରୁଥିଲେ ସେହି ଦୃଷ୍ଟିଭଙ୍ଗୀରେ ମଧ୍ୟ ପରିବର୍ତ୍ତନ ଆସିଲା । ପ୍ରତ୍ୟେକ ବ୍ୟକ୍ତି ନିଜ ସାମର୍ଥ୍ୟର ଯଥୋଚିତ ବିକାଶ କରାଇବା ପାଇଁ ଅନୁକୂଳ ସାମାଜିକ ପରିବେଶ ପାଇ ପାରିଲା । ବ୍ୟକ୍ତିର ସ୍ୱାଧୀନତା, ଅଧିକାର ଓ ମର୍ଯ୍ୟାଦା କ୍ଷେତ୍ରରେ ରାଷ୍ଟ୍ରୀୟ ହସ୍ତକ୍ଷେପ ହ୍ରାସ ପାଇବାରେ ଲାଗିଲା । ବ୍ୟକ୍ତି ଓ ରାଷ୍ଟ୍ର ଭିତରେ ଥିବା ସମ୍ବନ୍ଧକୁ ସାମ୍ବିଧାନିକ ବ୍ୟବସ୍ଥା ଦ୍ୱାରା ସ୍ପଷ୍ଟ କରାଗଲା । ଗଣତାନ୍ତ୍ରିକ ଭାବନା ସମାଜରେ ଯେତିକି ପୁଷ୍ଟ ହେବାକୁ ଲାଗିଲା ମାନବିକ ଅଧିକାର ଓ ମର୍ଯ୍ୟାଦା ନେଇ ସାମାଜିକ ଚେତନା ସେତିକି ଦୃଢ଼ ହେଲା ।

ବ୍ୟକ୍ତି ଓ ରାଷ୍ଟ୍ର ଭିତରେ ସମ୍ବନ୍ଧ ପରିପ୍ରେକ୍ଷୀରେ ବ୍ୟକ୍ତି ସ୍ୱାଧୀନତାକୁ ରକ୍ଷା କରିବା ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ସ୍ୱୀକୃତ ହେଲା । ଏହା ସହିତ ଗଣତାନ୍ତ୍ରିକ ଚେତନା ଜନମଙ୍ଗଳ

ରାଷ୍ଟ୍ର ପ୍ରତ୍ୟୟକୁ ସୃଷ୍ଟି କଲା । ସମାଜର ବା ରାଷ୍ଟ୍ରରେ କୌଣସି ସ୍ୱେଚ୍ଛାଚାରୀ ହସ୍ତକ୍ଷେପକୁ ବିରୋଧ କରିବାରେ ବ୍ୟକ୍ତିର ସାମ୍ବିଧାନିକ ଅଧିକାର ରହିଲା । ବ୍ୟକ୍ତି ଓ ରାଷ୍ଟ୍ରର ସମ୍ବନ୍ଧ ଆଇନଦ୍ୱାରା ସିଦ୍ଧ ହେବାରୁ ଆଇନ ହିଁ ରାଷ୍ଟ୍ରୀୟ ବ୍ୟବସ୍ଥାକୁ ନିୟନ୍ତ୍ରଣ କଲା । ରାଷ୍ଟ୍ର ଓ ସରକାରର କ୍ଷମତା ସାମ୍ବିଧାନିକ ଆଇନ ଭିତରେ ସୁନିର୍ଦ୍ଦିଷ୍ଟ କରାଗଲା । ସରକାର ଉପରେ ଜନଗଣଙ୍କର ନିୟନ୍ତ୍ରଣ ଓ ସାର୍ବଭୌମତ୍ୱ ପ୍ରତିଷ୍ଠା ହେଲା ।

ଏହା ସହିତ ସାମାଜିକ ବା ରାଷ୍ଟ୍ରୀୟ ସମସ୍ୟା ସମାଧାନ କ୍ଷେତ୍ରରେ ନୈତିକ ସାଧନ ପ୍ରାଧାନ୍ୟ ଲାଭ କଲା । ଗଣତାନ୍ତ୍ରିକ ଚେତନାର ବିକାଶ ସହ ଜନଗଣଙ୍କ ସମସ୍ୟାକୁ ଶାନ୍ତିପୂର୍ଣ୍ଣ ଓ ସାମ୍ବିଧାନିକ ପନ୍ଥାରେ ସମାଧାନ କରିବା ଯେକୌଣସି ଜନମଙ୍ଗଳ ରାଷ୍ଟ୍ରର ପ୍ରଧାନ ଆଭିମୁଖ୍ୟ ହୋଇ ରହିଲା । ସାମାଜିକ ବା ରାଜନୈତିକ ଲକ୍ଷ୍ୟ ସାଧନ କ୍ଷେତ୍ରରେ ପନ୍ଥାର ମହତ୍ତ୍ୱକୁ ଗୁରୁତ୍ୱ ଦିଆଗଲା । ଏହା ସହିତ ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା ରାଷ୍ଟ୍ରର ପ୍ରଧାନ ଆଭିମୁଖ୍ୟ ହେଲା । ସମାଜରେ ଯେକୌଣସି ପ୍ରକାରର ବୈଷମ୍ୟ, ପକ୍ଷପାତିତା ଓ ପ୍ରଭେଦାତ୍ମକ ମନୋଭାବକୁ ଅଗଣତାନ୍ତ୍ରିକ ବୋଲି ବିଚାର କରାଗଲା । ଏହିସବୁ ଆଦର୍ଶ ବୈଚାରିକ ସ୍ତରରେ ସ୍ୱୀକୃତ ହେବାଦ୍ୱାରା ମଣିଷ ମଣିଷ ଭିତରେ ରହିଥିବା ବିଭେଦ ଓ ପାର୍ଥକ୍ୟ ଆସ୍ତେ ଆସ୍ତେ ସଙ୍କୁଚିତ ହେଲା । ସବୁ ମଣିଷ ଅଭିନ୍ନ ନ ହେଲେ ବି ସବୁ ମଣିଷ ଯେ ସମାନ ଓ ସମସ୍ତଙ୍କର ସମାନ ଅଧିକାର ରହିବା ଆବଶ୍ୟକ ଏହା ଗଣତାନ୍ତ୍ରିକ ଆଦର୍ଶବୋଧର ମୂଳ ଭିତ୍ତି ହୋଇ ରହିଲା । ''ପ୍ରଗତିର ସୁଫଳ ରାଷ୍ଟ୍ରର ପ୍ରତ୍ୟେକ ବ୍ୟକ୍ତି ପାଇବାକୁ ହକଦାର'' ଏହା ଗଣତାନ୍ତ୍ରିକ ଆଦର୍ଶବୋଧ ଭାବେ ସ୍ୱୀକୃତ ହେଲା ।

ଗଣତାନ୍ତ୍ରିକ ଚେତନା ସମାଜରେ ଏହିପରି ଆସ୍ତେ ଆସ୍ତେ ବିକାଶ ଲାଭକରି ଉଲ୍ଲିଖିତ ଆଦର୍ଶବୋଧକୁ ନେଇ ପୁଷ୍ଟ ହେବାକୁ ଲାଗିଲା । ଏହି ଆଦର୍ଶବୋଧ ଓ ଦୃଷ୍ଟିଭଙ୍ଗୀର ବିକାଶ ସହିତ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ବହୁ କ୍ଷେତ୍ରରେ ପ୍ରବର୍ତ୍ତନ ହେଲା । ଏଠାରେ ପ୍ରଶ୍ନ ଉଠିପାରେ ଗଣତାନ୍ତ୍ରିକ ଆଦର୍ଶ (ଏହାକୁ ସାମାଜିକ ଗଣତନ୍ତ୍ର କୁହାଯାଉ) ଓ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା (ଏହାକୁ ରାଜନୈତିକ ଗଣତନ୍ତ୍ର କୁହାଯାଉ) ପରସ୍ପର ସହିତ କେତେ ଦୂର ସଂପର୍କିତ ? ଅବଶ୍ୟ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଉଭୟ ଯେ ଅଭିନ୍ନ ନୁହନ୍ତି ଏହା କୁହାଯାଇପାରେ । କେତେକ ରାଷ୍ଟ୍ରରେ ରାଜନୈତିକ ଗଣତନ୍ତ୍ର ଥାଇ ବି ସାମାଜିକ ଗଣତନ୍ତ୍ର ଓ ଏହାର ମୂଲ୍ୟଚୟ ନ ରହିବା ବାସ୍ତବ ଅଟେ । ଅବଶ୍ୟ ରାଜନୈତିକ ଗଣତନ୍ତ୍ର ରାଷ୍ଟ୍ରରେ ସ୍ଥାୟୀ ହେବାଦ୍ୱାରା ସାମାଜିକ ଗଣତନ୍ତ୍ର ବିକାଶର ସମ୍ଭାବନା ଥାଏ । କିନ୍ତୁ ସାମାଜିକ ଗଣତନ୍ତ୍ର ରହିଥିଲେ ରାଜନୈତିକ ଗଣତନ୍ତ୍ରର ଭିତ୍ତି ଅତି ସୁଦୃଢ଼ ହୋଇଥାଏ ।

ଆମ ଦେଶ ପରିପ୍ରେକ୍ଷୀରେ ଏହା କୁହାଯାଇପାରେ ଯେ ଆମ ଦେଶରେ ରାଜନୈତିକ ଗଣତନ୍ତ୍ର ରହିଛି । ତଥାପି ଆମର ଜନ ଜୀବନରେ ସାମାଜିକ ଗଣତନ୍ତ୍ରର

ଆଦର୍ଶଗୁଡ଼ିକ ଯଥାର୍ଥରେ ପ୍ରତିଫଳିତ ହୋଇପାରୁ ନାହିଁ । ସାମାଜିକ ଗଣତନ୍ତ୍ରର ବିକାଶ ଦିଗରେ ରାଜନୈତିକ ଗଣତନ୍ତ୍ରର ଭୂମିକା ଅନେକ ଥିଲେ ବି ବହୁ ସମୟରେ ଧର୍ମଗତ ଓ ସାଂସ୍କୃତିକ କାରଣ ସମୂହ ଏ କ୍ଷେତ୍ରରେ ଅନେକ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ଯୁଗ ଯୁଗ ଧରି ଆମର ସାଂସ୍କୃତିକ ମୂଲ୍ୟଚୟ ଏ ପ୍ରକାର ଏକ ସାମାଜିକ ମନସ୍ତତ୍ତ୍ୱ ସୃଷ୍ଟି କରିଛି ଯଦ୍ୱାରା ଗଣତନ୍ତ୍ର ଏକ ଜୀବନଧାରାରେ ପରିଣତ ହେଉନାହିଁ । ଆମର ଜାତି ଭିତ୍ତିକ ସମାଜରେ ବ୍ୟକ୍ତିର ସାମାଜିକ ଭୂମିକା ଜନ୍ମରୁ ସ୍ଥିର ହୋଇଯାଏ । ଫଳତଃ 'ସବୁ ମଣିଷ ସମାନ', 'ସମସ୍ତଙ୍କର ସମାନ ନାଗରିକ ଅଧିକାର ରହିବା ଆବଶ୍ୟକ' ଏହି ଦୃଷ୍ଟିଭଙ୍ଗୀ ସମାଜରେ ପ୍ରତିଫଳିତ ହୁଏ ନାହିଁ । ଦେଶର ସମ୍ବିଧାନ ମାନବିକ ଅଧିକାର ଓ ସାମାଜିକ ନ୍ୟାୟକୁ ସ୍ୱୀକୃତି ଦେଇଥିଲେ ବି ବାସ୍ତବ କ୍ଷେତ୍ରରେ ସାମାଜିକ ମନସ୍ତତ୍ତ୍ୱ ଏହାକୁ ଗ୍ରହଣ କରିପାରି ନାହିଁ । ଫଳରେ ସାମାଜିକ ବୈଷମ୍ୟ ଏବେବି ସମାଜରେ ଉତ୍କଟ ହୋଇ ରହିଛି । ସାମାଜିକ ବୈଷମ୍ୟ ଅର୍ଥନୈତିକ ଶୋଷଣ କ୍ଷେତ୍ରରେ ସହାୟକ ହେଉଛି । ଉତ୍କଟ ସାମାଜିକ ବୈଷମ୍ୟ ଓ ଅର୍ଥନୈତିକ ତାରତମ୍ୟ ସାମାଜିକ ନ୍ୟାୟ ପ୍ରତିଷ୍ଠା କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରୁଛି । ତା' ସହିତ ଅଶିକ୍ଷା ଓ ନିରକ୍ଷରତା ଗଣତନ୍ତ୍ରର ସଫଳତା ପାଇଁ ବଡ଼ ପ୍ରତିବନ୍ଧକ । ଯେଉଁ ସମାଜରେ ପ୍ରାୟ ଅର୍ଦ୍ଧେକ ବ୍ୟକ୍ତି ନିରକ୍ଷର ରହିଛନ୍ତି ସେଠାରେ ଗଣତାନ୍ତ୍ରିକ ଜୀବନଧାରାର ସଫଳତା ଆହ୍ୱାନର ସମ୍ମୁଖୀନ ହେବା ସ୍ୱାଭାବିକ ମନେହୁଏ । ମୋଟ ଉପରେ କହିବାକୁ ଗଲେ ଜାତିଗତ ମାନସିକତା, ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ, ଉତ୍କଟ ଦାରିଦ୍ର୍ୟ, ଅଶିକ୍ଷା ଏବଂ ନିରକ୍ଷରତା ବ୍ୟାପକ ଥିବା ଏକ ସମାଜରେ ରାଜନୈତିକ ଗଣତନ୍ତ୍ର ଏକ ଔପଚାରିକ ସ୍ତରରେ ରହିଯାଏ । ଗଣତାନ୍ତ୍ରିକ ମୂଲ୍ୟବୋଧ ସାମାଜିକ ପ୍ରବାହ ଭିତରେ ପ୍ରତିଫଳିତ ହୋଇପାରେ ନାହିଁ । ସୁତରାଂ ଭାରତ ବର୍ଷରେ ରାଜନୈତିକ ଗଣତନ୍ତ୍ର ଅର୍ଦ୍ଧ ଶତାବ୍ଦୀ ଧରି ରହିଥିଲେ ମଧ୍ୟ ଗଣତାନ୍ତ୍ରିକ ଆଦର୍ଶଚୟ ସାମାଜିକ ସମ୍ବନ୍ଧ ସ୍ତରକୁ ପ୍ରସାରିତ ହୋଇ ଆସିପାରି ନାହିଁ ।

ରାଜନୈତିକ ଗଣତନ୍ତ୍ରର ସଫଳତା ପାଇଁ ଏକ ସାମାଜିକ ଓ ସାଂସ୍କୃତିକ ବାତାବରଣ ଅପରିହାର୍ଯ୍ୟ ମନେହୁଏ । ନାଗରିକ ସଚେତନତା, ମାନବିକ ମର୍ଯ୍ୟାଦାବୋଧ ଓ ବିଚାରଶୀଳ ଜୀବନଦୃଷ୍ଟି ଅଧିକ ସାମାଜିକ ସ୍ୱୀକୃତି ଲାଭ କରିଥିବା ରାଷ୍ଟ୍ରରେ ରାଜନୈତିକ ଗଣତନ୍ତ୍ରର ସଫଳତା ସୁଦୃଢ଼ ଭିତ୍ତି ଉପରେ ଦଣ୍ଡାୟମାନ ଥାଏ । ଅଥଚ ଗୋଟିଏ ଦେଶର ସାମାଜିକ ଓ ସାଂସ୍କୃତିକ ବାତାବରଣ ଏସବୁ ପ୍ରତି ପ୍ରତିକୂଳ ଥିଲେ ସେଠାରେ ଗଣତନ୍ତ୍ରର ସଫଳତା ଆୟାସସାଧ୍ୟ ମନେହୁଏ ।

ଆମ ଜାତୀୟ ଦୃଶ୍ୟପଟରେ ଜନଗଣଙ୍କ ଭିତରେ ଧର୍ମଗତ ଭାବପ୍ରବଣତା ଯେତିକି ପ୍ରତିଫଳିତ ହୁଏ ସେ ତୁଳନାରେ ନାଗରିକ କର୍ତ୍ତବ୍ୟବୋଧ ହୁଏ ନାହିଁ । ଅତୀନ୍ଦ୍ରିୟ ଓ ପାରଲୌକିକ ବିଶ୍ୱାସ ଏବଂ ଧର୍ମୀୟ ଉପଚାରଗୁଡ଼ିକ ସାମାଜିକ ମନସ୍ତତ୍ତ୍ୱକୁ ଏପରି କବଳିତ

କରି ରଖିଛି ଯେ ସାମାଜିକ ଅଙ୍ଗୀକାରବୋଧ ନେଇ ସଚେତନତା ଅପାଂକ୍ତେୟ ହୋଇପଡ଼ିଛି । ଧର୍ମୀୟ ଉପାସନା ଓ ବିଶ୍ୱାସ ପାଖରେ ସାଧୁତା ଓ କର୍ତ୍ତବ୍ୟନିଷ୍ଠା ମୂଲ୍ୟହୀନ ବୋଲି ମାନସିକତା ମଧ୍ୟ ରହିଛି । ସୁଖପ୍ରଦ ସାମାଜିକ ଜୀବନ ପ୍ରତି ଉଦାସୀନ ରହି ପାରଲୌକିକ ପ୍ରାପ୍ତି ପାଇଁ ଭାବନାର ପ୍ରସାର କରାଯାଉଛି । ପୁନଶ୍ଚ ମଣିଷ ପ୍ରତି ଦୃଷ୍ଟିକୋଣ କ୍ଷେତ୍ରରେ ଆମର ମୂଲ୍ୟଚୟ ଏକ ସୁସ୍ଥ ସାମାଜିକ ସମ୍ବନ୍ଧର ପ୍ରତିକୂଳ ମନେହୁଏ । ହୁଏତ ଆମର ସାଂସ୍କୃତିକ ଓ ଧର୍ମୀୟ ବିଶ୍ୱାସ ସ୍ତରରେ ମଣିଷକୁ ଏକ ଅବିନାଶୀ ଆତ୍ମା ବୋଲି ପରିକଳ୍ପନା କରାଯାଇଛି । ଅଥଚ ଆମର ସାମାଜିକ ବାସ୍ତବତା କ୍ଷେତ୍ରରେ ମଣିଷ ମଣିଷ ଭିତରେ ନାନା ପ୍ରାଚୀର ରହି ଆସିଛି । ସାମନ୍ତବାଦୀ ମାନସିକତା ସାମାଜିକ ମନସ୍ତତ୍ତ୍ୱ ଭିତରେ ଏବେବି ବଦ୍ଧମୂଳ ହୋଇ ରହିଛି ।

ଆମ ଦେଶରେ ରାଜନୈତିକ ଗଣତନ୍ତ୍ର ଏହିପରି ପ୍ରତିକୂଳ ସାମାଜିକ ଓ ସାଂସ୍କୃତିକ ପରିବେଶ ମଧ୍ୟରେ ଗତି କରୁଥିବା ଦେଖାଯାଏ । ସ୍ୱାଧୀନତା ପରଠାରୁ ଦେଶରେ ଗଣତାନ୍ତ୍ରିକ ବ୍ୟବସ୍ଥାଟି ଅବ୍ୟାହତ ରହିଛି ଓ ଗଣତାନ୍ତ୍ରିକ ଅନୁଷ୍ଠାନ ସୁଦୃଢ଼ ହେବାରେ ଲାଗିଛି ଏହା ଆଶ୍ୱାସନାର ବିଷୟ ଅଟେ । କିନ୍ତୁ ଆମର ସାମାଜିକ ମନସ୍ତତ୍ତ୍ୱ ଭିତରେ ଗଣତାନ୍ତ୍ରିକ ଆଚରଣ କିପରି ଅଧିକ ପ୍ରତିଫଳିତ ହେବ ସେଥିପାଇଁ ପ୍ରୟାସ ଆବଶ୍ୟକ । କାରଣ ଗଣତାନ୍ତ୍ରିକ ମୂଲ୍ୟବୋଧ ସାମାଜିକ ଜୀବନଧାରାରେ ଅଧିକରୁ ଅଧିକ ପ୍ରତିଫଳିତ ହେଲେ ଆମର ଦୃଷ୍ଟିଭଙ୍ଗୀରେ ମୌଳିକ ପରିବର୍ତ୍ତନ ହେବ । ଏକ ସାମାଜିକ କ୍ରାନ୍ତି ଦ୍ୱାରା ରାଜନୈତିକ ବ୍ୟବସ୍ଥାଟି ଅଧିକ ସୁଦୃଢ଼ ହୋଇପାରିବ । ସାମାଜିକ କ୍ରାନ୍ତି ପ୍ରତି ଉଦାସୀନ ରହି ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସୁଦୃଢ଼ କରିବା ସମ୍ଭବ ହେବ ନାହିଁ ।

ସୁଖର କଥା ଆମ ଦେଶର ସମ୍ବିଧାନ ପ୍ରଗତିଶୀଳ ମୂଲ୍ୟବୋଧକୁ ଗ୍ରହଣ କରି ଏକ ଜନମଙ୍ଗଳକାରୀ ରାଷ୍ଟ୍ରର ରୂପାୟନକୁ ସ୍ୱୀକୃତ ଲକ୍ଷ୍ୟ ଭାବରେ ଗ୍ରହଣ କରିଛି । ଦେଶରେ ପ୍ରବର୍ତ୍ତିତ ସମ୍ବିଧାନରେ ପ୍ରତ୍ୟେକ ନାଗରିକକୁ ସାମାଜିକ ନ୍ୟାୟ, ସମତା ଓ ବ୍ୟକ୍ତି ସ୍ୱତନ୍ତ୍ରତାର ପ୍ରତିଶ୍ରୁତି ଦିଆଯାଇଛି । ଦେଶର ସମସ୍ତ ନାଗରିକଙ୍କ ପାଇଁ ସୁସ୍ଥ ଜୀବନ, ଅବସର ଓ ସମାନ ସୁଯୋଗର ସମ୍ଭାବନାକୁ ଗ୍ରହଣ କରାଯାଇଛି । ସମାଜର ଦୁର୍ବଳ ଓ ଶୋଷିତ ଜନଗଣଙ୍କୁ ଅନ୍ୟାୟ ଓ ଶୋଷଣରୁ ମୁକ୍ତ କରିବାର ଆଶ୍ୱାସନା ଦିଆଯାଇଛି । ଆର୍ଥିକ ଶୋଷଣକୁ ପ୍ରତିରୋଧ କରାଯିବା ସହିତ ବସ୍ତୁଗତ ଉପାଦାନ ଗୁଡ଼ିକର ନିୟନ୍ତ୍ରଣ ଓ ସମବଣ୍ଟନ ପାଇଁ ସମ୍ବିଧାନରେ କୁହାଯାଇଛି । ଏହା ସହିତ ନାରୀ ପୁରୁଷ ନିର୍ବିଶେଷରେ ସମାନ କାର୍ଯ୍ୟ ପାଇଁ ସମାନ ପାରିଶ୍ରମିକର ପ୍ରତିଶ୍ରୁତି ମଧ୍ୟ ରହିଛି । ସମାଜର ସମସ୍ତ ପିଲାଙ୍କ ପାଇଁ ଅବୈତନିକ ଶିକ୍ଷାର ସୁଯୋଗ ପାଇଁ ମଧ୍ୟ ପ୍ରତିଶ୍ରୁତି ରହିଛି । ସେହିପରି ଅସ୍ପୃଶ୍ୟତା ପରି ସାମାଜିକ କଳଙ୍କଗୁଡ଼ିକୁ ଦୂର କରିବା ପାଇଁ ଏହାର ସମର୍ଥନକୁ ଏକ ଦଣ୍ଡନୀୟ ଅପରାଧ ଭାବରେ ନିଆଯାଇଛି । ମୋଟ ଉପରେ କହିଲେ ଜନହିତୈଷୀ ଭାବନାକୁ ସମ୍ବିଧାନରେ ପ୍ରତିଫଳିତ

କରାଯାଇଛି । ଏକ ସଭ୍ୟ ରାଷ୍ଟ୍ର ଯେଉଁ ସବୁ ମୂଲ୍ୟଚୟ ପ୍ରତି ଅଙ୍ଗୀକାରବଦ୍ଧ ରହିବା ଆବଶ୍ୟକ ସେସବୁ ଅନେକାଂଶରେ ଆମର ଜାତୀୟ ଲକ୍ଷ୍ୟ ଭାବେ ସମ୍ବିଧାନରେ ଅନ୍ତର୍ଭୁକ୍ତ ହୋଇ ରହିଛି ।

ଏତଦ୍ ବ୍ୟତୀତ ଦେଶର ସାବାଳକ ବ୍ୟକ୍ତି ଭୋଟ ଅଧିକାରଦ୍ୱାରା ନିଜର ପ୍ରତିନିଧି, ବିଧାୟକ ଓ ସାଂସଦମାନଙ୍କୁ ନିର୍ବାଚିତ କରିବାର ସୁଯୋଗ ରହିଛି । ରାଜନୈତିକ ଗଣତନ୍ତ୍ର ପୃଷ୍ଠଭୂମିରେ ଦେଶରେ ସଂସଦୀୟ ଗଣତନ୍ତ୍ରର ପ୍ରଚଳନ ରହିଛି ତାହା ଅନେକାଂଶରେ ଉତ୍ତରଦାୟୀ ହୋଇ ରହିବା ମନେ ହେଉ ନାହିଁ । ବିଧାନସଭା ବା ସଂସଦର ନିର୍ବାଚିତ ପ୍ରତିନିଧିଗଣ ଅନେକ ସମୟରେ ଦଳର ସ୍ୱାର୍ଥକୁ ଜାତୀୟ ସ୍ୱାର୍ଥଠାରୁ ଅଧିକ ଗୁରୁତର ମନେ କରୁଛନ୍ତି । ଦେଶର ଜନ ସମୂହର ଉନ୍ନତି ଓ ସମ୍ବିଧାନରେ ବ୍ୟକ୍ତ ଲକ୍ଷ୍ୟ ପ୍ରତି ଉତ୍ତରଦାୟୀ ହେବା ପରିବର୍ତ୍ତେ ନିର୍ବାଚିତ ପ୍ରତିନିଧି ଗଣ ଦଳୀୟ ଆନୁଗତ୍ୟ ଓ ବ୍ୟକ୍ତିଗତ ସ୍ୱାର୍ଥକୁ ମୁଖ୍ୟ ସ୍ଥାନ ଦେଉଛନ୍ତି ।

ସାଂପ୍ରତିକ ଦୃଶ୍ୟପଟରେ ଦେଶର ରାଜନୈତିକ ବ୍ୟବସ୍ଥା ସମସ୍ତ ମୂଲ୍ୟବୋଧଠାରୁ ଦୂରେଇ ଯିବା ଗଣତନ୍ତ୍ରର ଏକ ବଡ଼ ବିଫଳତା କହିବାକୁ ହେବ । ସାଧାରଣ ଜୀବନରେ ରହିଥିବା ରାଜନୈତିକ ନେତୃବୃନ୍ଦ ଆଦର୍ଶ ପ୍ରତି ଅଙ୍ଗୀକାର ନ ରହିବା ଓ ନିଜର ସ୍ୱାର୍ଥ ପାଇଁ ରାଜନୈତିକ ଦଳ ସୃଷ୍ଟି କରିଚାଲିବା ଏକ ସାଧାରଣ ଘଟଣା ହୋଇପଡ଼ିଛି । ପ୍ରଚଳିତ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଜନୈତିକ ଦଳର ଉଲ୍ଲେଖନୀୟ ଭୂମିକା ରହିଥିବା ଯୋଗୁଁ ଦଳମାନଙ୍କର ଆଭିମୁଖ୍ୟରେ ଆଦର୍ଶ ଓ ସାମ୍ବିଧାନିକ ଲକ୍ଷ୍ୟ ପ୍ରତି ଅଙ୍ଗୀକାରବଦ୍ଧତା ସର୍ବାଦୌ ରହିବା ଆବଶ୍ୟକ । କିନ୍ତୁ ରାଜନୀତି ସହିତ ସଂପୃକ୍ତ ବ୍ୟକ୍ତି ବିଶେଷ ଆଦର୍ଶ ବା ନୀତିଦ୍ୱାରା ପରିଚାଳିତ ହେବା ପରିବର୍ତ୍ତେ କ୍ଷମତା ଓ ସ୍ୱାର୍ଥକୁ ମୁଖ୍ୟ ସ୍ଥାନ ଦେବା ଫଳରେ ସଂସଦୀୟ ଗଣତନ୍ତ୍ର ଏକ ବିପର୍ଯ୍ୟସ୍ତ ସ୍ତରକୁ ଚାଲି ଆସୁଛି । ବ୍ୟକ୍ତିଗତ ସ୍ତରରେ ମତପାର୍ଥକ୍ୟକୁ ନେଇ ଛତୁ ଫୁଟିଲାପରି ଦଳମାନ ଗଢ଼ି ଉଠୁଛି । କୌଣସି ଆଦର୍ଶ ବା ମହତ୍ତର ଲକ୍ଷ୍ୟ ପରିବର୍ତ୍ତେ ସ୍ୱାର୍ଥ ଓ କ୍ଷମତା ଦଳର ଆଦର୍ଶ ହୋଇ ରହୁଛି ।

ସେହିପରି ଅପରାଧୀକରଣ ଓ ଦୁର୍ନୀତି ରାଜନୈତିକ ଜୀବନଧାରାର ଅଙ୍ଗ ହୋଇ ରହିଛି । ବସ୍ତୁତଃ ଦେଶର ବାସ୍ତବ ଉନ୍ନୟନ କ୍ଷେତ୍ରରେ ସରକାରୀ ଅର୍ଥର ଅପପ୍ରୟୋଗ ଯୋଗୁଁ ପ୍ରଗତି ବାଧାପ୍ରାପ୍ତ ହେଉଛି । ରାଜନୈତିକ ଦୁର୍ନୀତି ଓ ନାନା ସ୍କାମ ଭିତରେ ଦେଶର ଅର୍ଥକୁ ଲୁଣ୍ଠନ କରାଯାଉଛି । ଦେଶର ପ୍ରଶାସନ ଦୁର୍ନୀତିଗ୍ରସ୍ତ ହୋଇ ଜନଗଣଙ୍କର ହିତ ପ୍ରତି ଲକ୍ଷ୍ୟ ଦେଇପାରୁ ନାହିଁ । ପ୍ରଶାସନିକ ସ୍ତରରେ ଦୁର୍ନୀତି ଏପରି ସାଧାରଣ ଘଟଣା ହୋଇପଡ଼ିଛି ଯଦ୍ୱାରା ଦେଶର ସ୍ୱାର୍ଥ ଉପେକ୍ଷିତ ହୋଇ ରହୁଛି । ପ୍ରଶାସନିକ ଦୁର୍ନୀତିକୁ ନିୟନ୍ତ୍ରଣ କରିବା କ୍ଷେତ୍ରରେ ଯେଉଁ ରାଜନୈତିକ ଇଚ୍ଛାଶକ୍ତି ଆବଶ୍ୟକ ତାହା ନାହିଁ । ଏକ ବିଷଚକ୍ର ପରି ବ୍ୟକ୍ତି ଓ ବ୍ୟବସ୍ଥା ଦୁର୍ନୀତିଗ୍ରସ୍ତ ହେବା ଫଳରେ ଗଣତନ୍ତ୍ର ଇପ୍ସିତ ଲକ୍ଷ୍ୟଠାରୁ ଦୂରେଇ ଯିବାକୁ ଲାଗିଛି ।

ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ଏପରି ଏକ ଅବକ୍ଷୟ ସ୍ତରକୁ ଆଗେଇ ଚାଲିଛି ତା'ର ପରିଣାମ ସ୍ୱରୂପ ହିଂସାତ୍ମକ ସଂଘର୍ଷର ବାତାବରଣ ସୃଷ୍ଟି ହେଉଛି । ଯେତେବେଳେ ଆଇନର ଶାସନ ଚାଲେ ନାହିଁ ଓ ଦେଶର ଜନଗଣ ସାଧାରଣ ସୁଯୋଗରୁ ବଞ୍ଚିତ ହୁଅନ୍ତି ସେତେବେଳେ ସେମାନେ ପ୍ରତିକ୍ରିୟାଶୀଳ ହେବା ସ୍ୱାଭାବିକ ହୋଇପଡ଼େ । ଦେଶର ସାଧାରଣ ନାଗରିକ ଯଦି ବ୍ୟବସ୍ଥା ଉପରେ ନିର୍ଭର କରିପାରେ ନାହିଁ ତେବେ ସେ ପ୍ରତିହିଂସାତ୍ମକ ହେବାର ସମ୍ଭାବନା ଥାଏ । ଆଜି ଦେଶରେ ଯେଉଁ ସନ୍ତ୍ରାସବାଦ, ଅପରାଧ, ନକ୍ସାଲବାଦ ଆଦି ମୁଣ୍ଡ ଟେକିଛି ତାହା ଅନେକାଂଶରେ ସାମାଜିକ ବ୍ୟର୍ଥତାର ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏପରିକି ଦଳୀୟ ବ୍ୟବସ୍ଥା ଗଣତନ୍ତ୍ର ପାଇଁ ଯେ ଅନୁକୂଳ ନୁହେଁ ଏହା ମଧ ଦେଶର କେତେକ କ୍ରାନ୍ତିକାରୀ ଚିନ୍ତାନାୟକ ବିଶ୍ୱାସ କରିଛନ୍ତି । ଦଳହୀନ ଗଣତନ୍ତ୍ରର ବିକାଶଦ୍ୱାରା ଜାତୀୟ ଜୀବନରେ ସ୍ୱରାଜର ସ୍ୱପ୍ନ ସାକାର ହୋଇପାରିବ ବୋଲି ଏକ ଭାବନା ଏକଦା ଉଦ୍ରେକ ହୋଇଥିଲା । ବିଶେଷ କରି ଗାନ୍ଧୀଙ୍କର ରଚନାତ୍ମକ କାର୍ଯ୍ୟସୂଚୀ ଓ ସର୍ବୋଦୟ ବିଚାର ପୃଷ୍ଠଭୂମିରେ ଗାନ୍ଧୀ ଯୁଗର ବିଶିଷ୍ଟ ଚିନ୍ତାନାୟକ ବିନୋବା ଓ ଜୟପ୍ରକାଶ ଏ ଦିଗରେ କେତେକ ବୈପ୍ଲବିକ ସିଦ୍ଧାନ୍ତର ଉପସ୍ଥାପନା କରିଥିଲେ । ବିନୋବା ଏକ ଅଣରାଜନୈତିକ କାର୍ଯ୍ୟସୂଚୀ ମାଧ୍ୟମରେ ଭୂଦାନ ଆନ୍ଦୋଳନ ଆରମ୍ଭ କରିଥିଲେ । ଜୟପ୍ରକାଶ ସଂପୂର୍ଣ୍ଣ କ୍ରାନ୍ତି ଭାବନାର ପ୍ରସାର କରି ଦେଶର ରାଜନୈତିକ ଦୃଶ୍ୟପଟକୁ ମୂଲ୍ୟବୋଧ ଭିତ୍ତିକ ପରିବର୍ତ୍ତନ ଦିଗରେ ମୋଡ଼ ଦେବାକୁ ପ୍ରୟାସ କରିଥିଲେ । ଦଳବିହୀନ ଗଣତନ୍ତ୍ର ପ୍ରକଳ୍ପର ସୁଦୂର ରୂପାୟନ ପରିପ୍ରେକ୍ଷୀରେ ଏହିସବୁ କାର୍ଯ୍ୟସୂଚୀ ଗ୍ରହଣ କରାଯାଇଥିଲା । କିନ୍ତୁ ସାଂପ୍ରତିକ ଜୀବନର ଜଟିଳତା, ସାମାଜିକ ସମ୍ବନ୍ଧର ବ୍ୟାପକତା ଓ ଉତ୍ତରାଧିକାରୀ ନେତୃତ୍ୱର ଅଭାବରେ ଏହାକୁ ସାକାର କରିବାକୁ ଅଗ୍ରଗତି ହେଲା ନାହିଁ । ଏକଦା ଜାତୀୟ ଜୀବନରେ ଆଲୋଡ଼ନ ଆଣିଥିବା ଏସବୁ କ୍ରାନ୍ତିକାରୀ ଭାବନା ଜାତୀୟ ଦୃଶ୍ୟପଟରୁ ଆଜି ବିଲୁପ୍ତ ହୋଇଗଲା ପରି ମନେହୁଏ ।

ଏହିପରି ନାନା ଜଟିଳ ଘଟଣା ପ୍ରବାହ ଦେଶର ଗଣତନ୍ତ୍ରକୁ ଆହ୍ୱାନର ସମ୍ମୁଖୀନ କରାଇଛି । ଅବଶ୍ୟ ଏକ ରାଷ୍ଟ୍ରର ଦୀର୍ଘ ଯାତ୍ରା ପଥରେ କେତୋଟି ଦଶନ୍ଧି ଅତି ବଡ଼ ସମୟ ନୁହେଁ । ତଥାପି ଆଗାମୀ ଦିନରେ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା କେଉଁ ରୂପରେଖ ନେବ ତାହା ଚିନ୍ତାର ବିଷୟ । ଭାରତବର୍ଷ ପରି ଏକ ବିଶାଳ ଜନବହୁଳ ରାଷ୍ଟ୍ରର ସମସ୍ତ ନାଗରିକ କିପରି ଉନ୍ନତ ଜୀବନର ଅଧିକାରୀ ହୋଇପାରିବେ, ଏକ ଶୋଷଣହୀନ ଓ ବୈଷମ୍ୟହୀନ ସମାଜର ବିକାଶ କରାଇବେ ଓ ଏକ ଉନ୍ନତ ରାଜନୈତିକ ସଂସ୍କୃତିର ଅଧିକାରୀ ହେବେ ତାହା ଦେଶର ବୁଦ୍ଧିଜୀବୀମାନେ ବିଚାର କରିବା ଆବଶ୍ୟକ ।

■■

# ଜାତୀୟ ସଂହତି : ଏକ ଦୃଷ୍ଟିପାତ

ସ୍ୱାଧୀନତା ପ୍ରାପ୍ତିର ଚାରି ଦଶନ୍ଧି ପରେ ଜାତୀୟ ସଂହତି ନେଇ ଆଶଙ୍କା ପ୍ରକାଶ ପାଇବା ଆମ ରାଷ୍ଟ୍ର ପାଇଁ ଏକ ବିଡ଼ମ୍ବନା କହିବାକୁ ହେବ । ଆମ ଜାତୀୟ ଜୀବନରେ ଘଟି ଯାଉଥିବା ସାଂପ୍ରତିକ ଘଟଣାବଳୀ ଓ ଗତ କିଛି ବର୍ଷ ଧରି ଦେଶର କେତେକ ଅଞ୍ଚଳରେ ମୁଣ୍ଡ ଟେକିଥିବା ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ପରିପ୍ରେକ୍ଷୀରେ ଜାତୀୟ ସଂହତି ପ୍ରଶ୍ନଟି ଆଜି ଗୁରୁତ୍ୱପୂର୍ଣ୍ଣ ମନେ ହୁଏ । ସାଂସ୍କୃତିକ ଓ ସାମାଜିକ ସଂହତି ଥିବା ଅଥଚ ରାଜନୈତିକ ଘଟଣା ପ୍ରବାହ ମଧ୍ୟରେ ବିଚ୍ଛିନ୍ନ ହୋଇଥିବା ସାର୍ବଭୌମ ରାଷ୍ଟ୍ର ସମୂହ ସଂପ୍ରତି ମିଶିଯାଇ ସେମାନଙ୍କର ରାଜନୈତିକ ସଂହତି ସ୍ଥାପନ କରୁଥିବାବେଳେ ଦୀର୍ଘଦିନର ପରାଧୀନତା ପରେ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ ହୋଇଥିବା ଆମ ଦେଶ ପୁନଶ୍ଚ ବିଚ୍ଛିନ୍ନତାବାଦୀ ଆନ୍ଦୋଳନର ସମ୍ମୁଖୀନ ହେବା ଚିନ୍ତାର ବିଷୟ । ଆମର ଜାତୀୟ ଜୀବନରେ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ, ସାଂପ୍ରଦାୟିକ ବିଦ୍ୱେଷ ଓ ଜନଗଣଙ୍କ ଭିତରେ ପରସ୍ପର ପ୍ରତି ଅବିଶ୍ୱାସ ଯେଉଁପରି ଭାବେ ବୃଦ୍ଧି ପାଉଛି ତାହା ଆମ ରାଷ୍ଟ୍ର ପାଇଁ ଯେ ଶୁଭଙ୍କର ନୁହେଁ ଏହା ନିଃସନ୍ଦେହ ଭାବେ କୁହାଯାଇପାରେ । ଏହି ପୃଷ୍ଠଭୂମିରେ ଜାତୀୟ ସଂହତି ଉପରେ ଯତ୍‌କିଞ୍ଚିତ୍ ଦୃଷ୍ଟିପାତ କରିବା ସଂଶିତ ପ୍ରବନ୍ଧର ଉଦ୍ଦେଶ୍ୟ ।

ସଂହତି ପ୍ରଶ୍ନକୁ ସାମାଜିକ ବା ରାଜନୈତିକ ଏପରି ଦୁଇଟି ଦୃଷ୍ଟିରୁ ପର୍ଯ୍ୟାଲୋଚନା କରାଯାଇପାରେ । ସାମାଜିକ ସଂହତି ଓ ରାଜନୈତିକ ସଂହତି ପ୍ରତ୍ୟେକଟି ଅନ୍ୟଟିର ଅନୁପସ୍ଥିତିରେ ରହିବା ବା ବିକାଶ ଲାଭ କରିବା ସମ୍ଭବପର ହେଉଥିବାରୁ ସେମାନଙ୍କର ପ୍ରତ୍ୟୟ ପରସ୍ପରଠାରୁ ଭିନ୍ନ ଅଟେ । ସାମାଜିକ ଜୀବନରେ ବହୁ ଭିନ୍ନତା ଥାଇ ଏକ ସୁସଂହତ ରାଷ୍ଟ୍ରର ପରିକଳ୍ପନା କରାଯାଇପାରେ ଓ ଐତିହାସିକ ଦୃଷ୍ଟିରୁ ବିଚାର କଲେ ଅନେକ ସାର୍ବଭୌମ ରାଷ୍ଟ୍ରରେ ଭାଷା, ଧର୍ମ ଆଦିର ବହୁ ଭିନ୍ନତା ସତ୍ତ୍ୱେ ରାଜନୈତିକ ଐକ୍ୟ ରହିଥାଏ । ସେହିପରି ସାମାଜିକ ଓ ସାଂସ୍କୃତିକ ସଂହତି ଥିବା ଓ ଏକ ଭୌଗୋଳିକ ଆୟତନ ଭିତରେ ରହିଥିବା ଦେଶର ରାଜନୈତିକ ସଂହତି ନ ଥାଇପାରେ । ସୁତରାଂ ରାଜନୈତିକ ସଂହତି ରାଷ୍ଟ୍ର, ସାର୍ବଭୌମ ପ୍ରତ୍ୟୟ ସହିତ ସଂଶ୍ଳିଷ୍ଟ ହେବାବେଳେ ସାମାଜିକ

ସଂହତି ଧର୍ମ, ସଂସ୍କୃତି ଓ ଭାଷା ଇତ୍ୟାଦି ସହିତ ସମ୍ବନ୍ଧିତ ଥିବା ମନେହୁଏ । ଆମର ଜାତୀୟ ସଂହତି ପ୍ରଶ୍ନ ଉପରେ ଆଲୋଚନା କରିବା ବେଳେ ରାଜନୈତିକ ଓ ସାମାଜିକ ଏହି ଦୁଇଟି ମାନଦଣ୍ଡରୁ ଏହା ବିଚାର କରାଯାଇପାରେ ।

ଭାରତ ବର୍ଷ ଏକ ବହୁ ପ୍ରାଚୀନ ଦେଶ ହେଲେବି ଆମର ରାଜନୈତିକ ସଂହତି ଆଦୌ ପ୍ରାଚୀନ ନୁହେଁ । ସ୍ୱାଧୀନତା ପ୍ରାପ୍ତି ସହ ଭାରତବର୍ଷର ଯେଉଁ ରାଜନୈତିକ ଚିତ୍ରଟି ଆଜି ରହିଛି ତାହା ଅତୀତରେ ଏପରି ନ ଥିବା ଏକ ଐତିହାସିକ ସତ୍ୟ ଅଟେ । ଏହି ବିଶାଳ ଦେଶଟି ବହୁ ସମୟରେ ନାନା ଭାଗରେ ବିଭକ୍ତ ହୋଇ ଭିନ ଭିନ୍ନ ଶାସକ ଗୋଷ୍ଠୀଦ୍ୱାରା ଶାସିତ ହୋଇଛି । ଅବଶ୍ୟ ଅତୀତରେ କେହି କେହି ପ୍ରତାପଶାଳୀ ଶାସକ ବା ରାଜବଂଶ ଏହାକୁ ଏକ ରାଜନୈତିକ ଶାସନ ସୂତ୍ରରେ ଆବଦ୍ଧ କରାଇଛନ୍ତି, ହେଲେ ତାହା ଖୁବ୍ କ୍ଷଣସ୍ଥାୟୀ ହୋଇଛି । ପରନ୍ତୁ ଇଂରେଜମାନେ ଏ ଦେଶର ଶାସନଭାର ନେବାପରେ ଉନବିଂଶ ଶତାବ୍ଦୀରେ ଅଜ୍ଞାତସାରରେ ଏହି ଭୂଖଣ୍ଡକୁ ଗୋଟିଏ ସୂତ୍ରରେ ବାନ୍ଧି ଏହାକୁ ଏକ ଶାସନାଧୀନ କରିଛନ୍ତି । ଅର୍ଥାତ୍ ଭାରତବର୍ଷ ଇଂରେଜ ଶାସନାଧୀନ ହେବା ପରେ ଯେଉଁ ରାଜନୈତିକ ପୁନର୍ବିନ୍ୟାସ ଆରମ୍ଭ ହେଲା ତା'ଦ୍ୱାରା ପରେ ଜାତୀୟତାବୋଧ ଓ ରାଷ୍ଟ୍ରୀୟ ଭାବନା ସୃଷ୍ଟି ହୋଇଛି । ପରିଣାମତଃ ପରବର୍ତ୍ତୀ ପର୍ଯ୍ୟାୟରେ ରାଷ୍ଟ୍ରୀୟ ଚେତନାର ବିକାଶ ସହ ଜାତୀୟ ଆନ୍ଦୋଳନ ଓ ଏକ ଦକ୍ଷ ନେତୃତ୍ୱ ସୃଷ୍ଟି ହେବାରୁ ଭାରତବର୍ଷ ଏକ ସାର୍ବଭୌମ ସାଧାରଣତନ୍ତ୍ରରେ ପରିଣତ ହେବା ସମ୍ଭବ ହେଲା ।

ଅବଶ୍ୟ ରାଜନୈତିକ ଓ ସାମାଜିକ ସଂହତି ଦୁଇଟି ଭିନ୍ନ ପ୍ରତ୍ୟୟ ହୋଇଥିଲେ ବି ଉଭୟର ସମନ୍ୱୟରେ ଜାତୀୟ ସଂହତି ବିକାଶ ଲାଭ କରିଥାଏ, ଅଥଚ ଗୋଟିକର ଅଭାବରେ ଅନ୍ୟଟି ବିପନ୍ନ ହେବାର ଆଶଙ୍କା ଥାଏ ଓ ପରିଣାମତଃ ଜାତୀୟ ସଂହତି ପ୍ରତି ବିପଦ ସୃଷ୍ଟି କରିଥାଏ । ସାମାଜିକ ସଂହତି ରାଜନୈତିକ ସଂହତି ପାଇଁ ଯେଉଁପରି ଆବଶ୍ୟକ ହୋଇଥାଏ ସେହିପରି ରାଜନୈତିକ ସ୍ଥିରତା ସାମାଜିକ ସଂହତି ପାଇଁ ଅନୁକୂଳ ପରିବେଶ ଯୋଗାଇଥାଏ । ପ୍ରତ୍ୟେକ ଅନ୍ୟକୁ ସମୃଦ୍ଧ କରିଥାଏ ଓ ଉଭୟର ସୁସଂହତ ସମନ୍ୱୟ ଦ୍ୱାରା ଜାତୀୟ ସଂହତି ସୁଦୃଢ଼ ହୋଇଥାଏ ।

ଏହା ସହିତ ଜାତୀୟ ସଂହତି ପ୍ରଶ୍ନଟି ଐତିହାସିକ ପୃଷ୍ଠଭୂମିରୁ ମଧ୍ୟ ବିଚାର୍ଯ୍ୟ । କାରଣ ଐତିହାସିକ ଘଟଣା ପ୍ରବାହ ଜାତୀୟ ଚେତନାର ବିକାଶ କ୍ଷେତ୍ରରେ ଅଭିନିବେଶ ଯୋଗାଇଥାଏ । କିନ୍ତୁ ଐତିହାସିକ ଘଟଣାବଳୀ ଆମ ଦେଶର ସଂହତି କ୍ଷେତ୍ରରେ ଏକ ନୈରାଶ୍ୟଜନକ ଚିତ୍ର ପ୍ରଦାନ କରିଥାଏ । ଅବଶ୍ୟ ବହୁ ଧର୍ମ, ଭାଷା ଓ ଜାତିଗତ ପାର୍ଥକ୍ୟ ଭିତରେ ଦେଶର ଜନଗଣ ସହାବସ୍ଥାନ କରି ଆସିଛନ୍ତି ଓ ଏକ ସାଂସ୍କୃତିକ ଚେତନାର ବିକାଶ ଘଟାଇଛନ୍ତି । ଭିନ୍ନତା ଭିତରେ ଐକ୍ୟ ଆମ ସଂସ୍କୃତିର ଏକ ବୈଶିଷ୍ଟ୍ୟ ଭାବରେ ସ୍ୱୀକୃତ ହୋଇଛି । ଆମ ଦେଶରେ ବିକାଶ ଲାଭ କରିଥିବା ଉଚ୍ଚ ଦାର୍ଶନିକ ପରମ୍ପରା

ଏଥିପାଇଁ ଯଥେଷ୍ଟ ସହାୟକ ହୋଇଛି । ଆମର ଉଚ୍ଚାଙ୍ଗ ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ଯେଉଁ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଓ ନୈତିକ ମୂଲ୍ୟଚୟ ଉପରେ ଆଧାରିତ ମାନବବାଦ ବିକାଶ ଲାଭ କରିଛି ତାହା ଭିନ୍ନତା ଭିତରେ କେତେକ ଐକ୍ୟ ସୃଷ୍ଟି କରିପାରିଛି । ତଥାପି ସାମାଜିକ ଓ ରାଜନୈତିକ ଘଟଣା ପ୍ରବାହ ଐକ୍ୟ ପରିବର୍ତ୍ତେ ଆମର ଭିନ୍ନତାକୁ ଅଧିକ ପ୍ରକାଶ କରିଛି ଏହାକୁ ଅସ୍ୱୀକାର କରିହେବ ନାହିଁ ।

ଆର୍ଯ୍ୟମାନେ ଭାରତର ମୂଳ ଅଧିବାସୀ ନୁଅନ୍ତୁ ବା ଏଠାକୁ ଦେଶାନ୍ତର ଗମନ କରି ଆସିଥାନ୍ତୁ ସେମାନଙ୍କର ଆର୍ଯ୍ୟେତର ଅଧିବାସୀମାନଙ୍କ ସହିତ ସଂଘର୍ଷ ଏକ ସୁବିଦିତ ଘଟଣା ଅଟେ । ଯୁଗ ଯୁଗ ଧରି ଆର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ଭିତରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ପରେ ଉଭୟ ପରସ୍ପରର ସଂସ୍କୃତି ଓ ଜୀବନ ପ୍ରବାହକୁ ପ୍ରଭାବିତ କରିଛନ୍ତି ଏବଂ ଏଠାର ଅଧିବାସୀ ହୋଇ ଜୀବନ ଯାପନ କରିଛନ୍ତି । ଆର୍ଯ୍ୟମାନଙ୍କର ମୂଳ ପ୍ରାମାଣିକ ଗ୍ରନ୍ଥ ଋଗ୍‌ବେଦରେ କେତେକ ପଦ୍‌କ୍ତିରୁ ଆର୍ଯ୍ୟ ଓ ଅଣଆର୍ଯ୍ୟମାନଙ୍କର ସଂଘର୍ଷ ସ୍ପଷ୍ଟ ହୋଇଥାଏ । ଆର୍ଯ୍ୟମାନେ ଭାରତର ଗ୍ରାମୀଣ ଓ କୃଷି ସଭ୍ୟତାକୁ ଗ୍ରହଣ କରି ସ୍ଥାୟୀ ଭାବରେ ବସବାସ କରିବା ପରେ ଆସ୍ତେ ଆସ୍ତେ ପରସ୍ପର ବିରୋଧୀ ମଧ୍ୟ ହୋଇଛନ୍ତି । ବୈଦେଶିକ ଆକ୍ରମଣରୁ ସେମାନଙ୍କ ଭିତରେ ସଂହତିର ଅଭାବ ସ୍ପଷ୍ଟ ମନେହୁଏ । କାରଣ ଆଲେକ୍‌ଜାଣ୍ଡରଙ୍କ ଆକ୍ରମଣ ବା ମଧ୍ୟ ଯୁଗରେ ମାମୁଦ ବା ମହମ୍ମଦ ଘୋରୀଙ୍କ ଆକ୍ରମଣ ସମୟରେ ରାଜନ୍ୟକୁଳ ସମବେତ ଭାବେ ସେମାନଙ୍କର ବିରୋଧ ନ କରି ବରଂ ସେମାନଙ୍କର ଆକ୍ରମଣ ପାଇଁ ପରୋକ୍ଷରେ ସାହାଯ୍ୟ କରିଛନ୍ତି । ଅତୀତରେ ବୈଦେଶିକ ଆକ୍ରମଣ ସମୟରେ ଭାରତର ରାଜନ୍ୟକୁଳ ତାହାର ସଂଘବଦ୍ଧ ଓ ସମ୍ମିଳିତ ବିରୋଧ କରିଥିବା ଜଣାଯାଏ ନାହିଁ; ବରଂ ସେମାନଙ୍କ ଭିତରେ ଅନ୍ତର୍ବିବାଦ, ସଂଘର୍ଷ ଓ ପରସ୍ପର ପ୍ରତି ଅସୂୟାଭାବ ବୈଦେଶିକ ଆକ୍ରମଣ ପାଇଁ ସହାୟକ ହୋଇଛି । ଏପରିକି ପରସ୍ପର ପ୍ରତି ଅସୂୟା ଓ ପ୍ରତିହିଂସାମୂଳକ ମନୋଭାବ ଯୋଗୁଁ ନିଜେ ନ ପାରିଲେ ଗୋଟିଏ ପକ୍ଷ ବୈଦେଶିକମାନଙ୍କ ସହାୟତାରେ ଅନ୍ୟ ପକ୍ଷକୁ ନଷ୍ଟ କରିଛି । ବିଦେଶୀ ଆକ୍ରମଣକାରୀମାନେ ଏହାର ସୁଯୋଗ ନେଇ କୌଶଳତାର ସହ ଉଭୟ ପକ୍ଷକୁ ନଷ୍ଟ କରି ନିଜର ଶାସନ ପ୍ରତିଷ୍ଠା କରିଛନ୍ତି । ଏହିପରି ଆମ ଦେଶର ପ୍ରାଚୀନ ଇତିହାସ ଆମର ରାଜନୈତିକ ଅସଂହତି ଓ ସଂଘର୍ଷର ବହୁ ମର୍ମସ୍ପର୍ଶୀ ଚିତ୍ର ପ୍ରଦାନ କରିଥାଏ ।

ଭାରତୀୟମାନେ ଅତୀତରେ ବାରମ୍ବାର ପରାଜିତ ହୋଇଥିଲେ ସୁଦ୍ଧା ସମ୍ମିଳିତ ଭାବେ ବିଦେଶୀମାନଙ୍କୁ ପ୍ରତିରୋଧ କରିବାରେ ସମର୍ଥ ହୋଇନାହାନ୍ତି । ସେମାନେ ଦେଶର ନିରାପତ୍ତା ପାଇଁ ବିଶେଷ ଧ୍ୟାନ ଦେଇ ନାହାନ୍ତି କିମ୍ବା ଏହା ମଧ୍ୟ ହୋଇପାରେ ସେମାନଙ୍କର ପ୍ରତିରକ୍ଷା ବ୍ୟବସ୍ଥା ବିଦେଶୀ ଆକ୍ରମଣକାରୀଙ୍କର ସମକକ୍ଷ ହୋଇନାହିଁ । ମୋଟ ଉପରେ କହିବାକୁ ଗଲେ ଭାରତୀୟଙ୍କର ଦୁର୍ବଳ ପ୍ରତିରକ୍ଷା ବ୍ୟବସ୍ଥା ଓ ପରସ୍ପର

ମଧ୍ୟରେ ଅନ୍ତର୍ବିବାଦ ଏଠାରେ ବିଦେଶୀ ଶାସନ ପାଇଁ ପଥ ପରିଷ୍କାର କରିଛି ।

ଯେଉଁ ସବୁ କାରଣ ସମୂହ ଆମର ଦୁର୍ବଳ ପ୍ରତିରକ୍ଷା ପାଇଁ ଦାୟୀ ହୋଇଛି ସେ କ୍ଷେତ୍ରରେ ଆମର ଧର୍ମଗତ ବିଶ୍ୱାସ ଓ କୁସଂସ୍କାର ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଆମ ଦେଶରେ ପ୍ରଚଳିତ କେତେକ ଶାସ୍ତ୍ରରେ ଦୂରର ରାଜା ମିତ୍ର ଓ ପାଖର ରାଜା ଶତ୍ରୁ ବୋଲି ବର୍ଣ୍ଣନା କରାଯାଇଛି । ସମ୍ଭବତଃ ଏହି ପ୍ରକାରର ଏକ ମାନସିକ ବିଚାର ଦ୍ୱାରା ପ୍ରଭାବିତ ହୋଇ ସେତେବେଳର ଶାସକବର୍ଗ ନିଜ ନିଜ ଭିତରେ ବିବାଦକୁ ଦୂର କରିବାକୁ ବିଦେଶୀମାନଙ୍କୁ ନିମନ୍ତ୍ରଣ କରିଛନ୍ତି ବା ନିଜ ଉପରେ ଆକ୍ରମଣ ନ ହେବା ପର୍ଯ୍ୟନ୍ତ ଅନ୍ୟ ଉପରେ ଆକ୍ରମଣ ସମୟରେ ଉଦାସୀନ ରହିଛନ୍ତି । ସେହିପରି ଧର୍ମଗତ ବିଶ୍ୱାସର ବଶବର୍ତ୍ତୀ ହୋଇ କ୍ଷତ୍ରିୟମାନଙ୍କ ଛଡ଼ା ଅନ୍ୟମାନେ ଦେଶର ପ୍ରତିରକ୍ଷା ବ୍ୟବସ୍ଥାରେ ସଂଶ୍ଳିଷ୍ଟ ରହିନାହାନ୍ତି । କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଲୋକମାନେ ସୈନ୍ୟ ବିଭାଗରେ ଯୋଗ ଦେଉଥିବାରୁ ଓ ଅନ୍ୟମାନେ ଏହା ପ୍ରତି ଉଦାସୀନ ରହୁଥିବାରୁ ଦେଶରେ ସୁଦୃଢ଼ ପ୍ରତିରକ୍ଷା ବ୍ୟବସ୍ଥା ପ୍ରତିଷ୍ଠିତ ହୋଇପାରି ନାହିଁ ।

ଏହା ସହିତ ସାମାଜିକ ସଂହତି ପ୍ରତିଷ୍ଠା ଦିଗରେ ଆମ ଦେଶର ଜାତି ପ୍ରଥା ସର୍ବଦା ପ୍ରତିବନ୍ଧକ ହୋଇଛି । ଯୁଗ ଯୁଗ ଧରି ଏହା ଭାରତୀୟ ସମାଜରେ ତିଷ୍ଠି ରହିବା ହେତୁ ଜାତି ଜାତି ଭିତରେ ସାମାଜିକ ଗତିଶୀଳତା ସଙ୍କୁଚିତ ହୋଇ ରହିଛି । ଜାତିପ୍ରଥାର କଠୋର ନିୟମ ସମାଜରେ ଯେତିକି ସୁଦୃଢ଼ ହୋଇଛି ସାମାଜିକ ଅସଂହତି ଓ କ୍ଷୟଶୀଳତା ସେତିକି ବୃଦ୍ଧି ପାଇଛି । ଏହି ପ୍ରଥା ଜନ୍ମଗତ ବୈଷମ୍ୟକୁ ସ୍ୱୀକାର କରିବା ସହିତ ସାମାଜିକ ନ୍ୟାୟକୁ ସର୍ବଦା ଉପେକ୍ଷା କରିଆସିଛି । ଜାତି ଜାତି ଭିତରେ ଜନ୍ମଗତ ବୈଷମ୍ୟ ଓ ଅସ୍ପୃଶ୍ୟତାକୁ ଗ୍ରହଣ କରିବା ସହିତ ସାମାଜିକ ନ୍ୟାୟ ପ୍ରତି ଉଦାସୀନ ରହିବା ଯୋଗୁଁ ସାମାଜିକ ସଂହତି ସୁଦୃଢ଼ ହୋଇନାହିଁ ଓ ପରିଣାମତଃ ରାଜନୈତିକ ସଂହତି ବିପନ୍ନ ହୋଇଛି । ଅନେକ ସଂସ୍କାରବାଦୀ ଆନ୍ଦୋଳନ ସତ୍ତ୍ୱେ "ଜାତି ପ୍ରଥା ଓ ଅସ୍ପୃଶ୍ୟତା ଶାସ୍ତ୍ରୀୟ ବିଧି ଉପରେ ପର୍ଯ୍ୟବସିତ ଓ ଏହାର ଉଲ୍ଲଙ୍ଘନ ଅନୈତିକ ଓ ଏକ ସାମାଜିକ ଅପରାଧ" ଦେଶରେ ଜନଗଣ ଏହି ପ୍ରକାର ଏକ ଭାବନାକୁ ମାନସିକ ସ୍ତରରେ ଗ୍ରହଣ କରିଛନ୍ତି ।

ଜାତିପ୍ରଥା ସଦୃଶ ଶାସ୍ତ୍ର ଓ ପୁରାଣ ଉପରେ ଅହେତୁକ ବିଶ୍ୱାସ ତଥା ଭାଗ୍ୟବାଦ ଦେଶର କ୍ଷୟଶୀଳ ସାମାଜିକ ବ୍ୟବସ୍ଥା ପାଇଁ ବି ଦାୟୀ ହୋଇଛି । ସଂହିତା ଓ ପୁରାଣ ମାନଙ୍କରେ ବର୍ଣ୍ଣିତ ସାମାଜିକ ନିୟମଚୟ ପ୍ରଗତିଶୀଳ ଜୀବନ ଦୃଷ୍ଟିର ଯେତେ ପରିପନ୍ଥୀ ହେଲେ ବି ଅଲଙ୍ଘନୀୟ ବୋଲି ସମାଜରେ ଯୁଗ ଯୁଗ ଧରି ବିଶ୍ୱାସ କରାଯାଇଛି । ସେହିପରି ବ୍ୟକ୍ତି ବା ଜାତୀୟ ଜୀବନର ଘଟଣା ପ୍ରବାହ ପୂର୍ବ ନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରିବା ଫଳରେ ସାମାଜିକ ପରିବର୍ତ୍ତନ ପାଇଁ ସେପରି ସାମାଜିକ କ୍ରାନ୍ତି ସୃଷ୍ଟି ହୋଇନାହିଁ । ଅବଶ୍ୟ କେତେକ ସଂସ୍କାରକ ସାମାଜିକ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି, ତଥାପି

ହିନ୍ଦୁ ସମାଜରେ ମୌଳିକ ପରିବର୍ତ୍ତନ ସଂଘଟିତ ହୋଇନାହିଁ ଓ ଏହା ଅପରିବର୍ତ୍ତିତ ରହିଛି । ହିନ୍ଦୁ ଧର୍ମର ଦାର୍ଶନିକ ଦିଗଟି ସହିତ ହିନ୍ଦୁ ସାମାଜିକ ମୂଲ୍ୟଚୟର ସମ୍ବନ୍ଧ ରହିନାହିଁ । ଦାର୍ଶନିକ ଅନ୍ୱେଷା ଓ ଅନୁଶୀଳନ କତିପୟ ବ୍ୟକ୍ତି ବିଶେଷଙ୍କ ପାଖରେ ସୀମିତ ରହିବା ବେଳେ ସାମାଜିକ ନିୟମଚୟକୁ ପୂଜକ ଶ୍ରେଣୀ ସର୍ବଦା ପ୍ରଭାବିତ କରିଆସିଛନ୍ତି । ପରିଣାମତଃ ହିନ୍ଦୁ ସମାଜର ଜାତିପ୍ରଥା, ସାମନ୍ତବାଦ ଓ ସର୍ବୋପରି ଏହାର ଅନମନୀୟତା ଆମର ସାମାଜିକ ଅସଂହତି ଓ ସାଂସ୍କୃତିକ ଅପକର୍ଷତା ପାଇଁ ପଥ ପରିଷ୍କାର କରିଛି ।

ବସ୍ତୁତଃ ରାଜନୈତିକ ଓ ସାମାଜିକ ଅସଂହତି ଭିତରେ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ମୂଳଦୁଆ ପଡ଼ିଛି । ଊନବିଂଶ ଶତାବ୍ଦୀରେ ଇଂରେଜମାନେ ଏହି ଭୂଖଣ୍ଡକୁ ଏକ ଶାସନାଧୀନ କରି ଅଜ୍ଞାତସାରରେ ଏହାକୁ ଗୋଟିଏ ସୂତ୍ରରେ ଆବଦ୍ଧ କରିଛନ୍ତି । ଆସ୍ତେ ଆସ୍ତେ ଦେଶରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ହୋଇଛି ଓ ୟୁରୋପୀୟ ଚିନ୍ତା ମାନସଦ୍ୱାରା ଭାରତୀୟ ଶିକ୍ଷିତ ବ୍ୟକ୍ତି ବିଶେଷ ପ୍ରଭାବିତ ହୋଇଛନ୍ତି । ଶିକ୍ଷାର ପ୍ରସାର ସହିତ କେତେକ ସଂସ୍କାରବାଦୀ ମନୀଷୀଙ୍କର ଆବିର୍ଭାବ ଦେଶରେ ଏକ ନୂଆ ଜୀବନ ପ୍ରବାହ ସୃଷ୍ଟି କରିଛି । ୟୁରୋପୀୟ ଚିନ୍ତା ମାନସରୁ ସୃଷ୍ଟ ମୁକ୍ତ ସମାଜ ବ୍ୟବସ୍ଥା, ଗଣତନ୍ତ୍ର, ଧର୍ମନିରପେକ୍ଷତା ଓ ବ୍ୟକ୍ତି ସ୍ୱାଧୀନତା ମୂଲ୍ୟଚୟ ଭାରତର ଶିକ୍ଷିତ ସମାଜକୁ ପ୍ରଭାବିତ କରିବାଦ୍ୱାରା ପ୍ରଗତିଶୀଳ ମୂଲ୍ୟବୋଧର ବିକାଶ ସହିତ ଏକ ରାଷ୍ଟ୍ରୀୟ ଚେତନା ଭାରତରେ ସୃଷ୍ଟି ହୋଇଛି । ଦେଶର ଜନଗଣ ନିଜ ଭିତରର ସମସ୍ତ ଅସଂହତିକୁ ଭୁଲିଯାଇ ଯେତେବେଳେ ନିଜ ମାତୃଭୂମିର ସ୍ୱାଧୀନତା ପାଇଁ ଏକ ଜାତୀୟ ଆନ୍ଦୋଳନ ଗାନ୍ଧୀଜୀଙ୍କ ନେତୃତ୍ୱରେ ଗଢ଼ି ତୋଳିଛନ୍ତି ତା'ର ଅବଶ୍ୟମ୍ଭାବୀ ପରିଣାମ ସ୍ୱରୂପ ଆମ ଦେଶ ସ୍ୱାଧୀନ ହୋଇଛି ଓ ଏକ ସାର୍ବଭୌମ ସାଧାରଣତନ୍ତ୍ର ଭାବେ ସମଗ୍ର ବିଶ୍ୱରେ ପରିଚିତ ହୋଇଛି । ସ୍ୱାଧୀନତା ଲାଭ ପରେ ଏକ ସାମ୍ବିଧାନିକ ବ୍ୟବସ୍ଥା ଦ୍ୱାରା ଗଣତନ୍ତ୍ର, ଧର୍ମନିରପେକ୍ଷତା ଓ ସମାଜବାଦକୁ ଆମ ରାଷ୍ଟ୍ରୀୟ ବ୍ୟବସ୍ଥାର ମୌଳିକ ଆଦର୍ଶଚୟ ଭାବରେ ଗ୍ରହଣ କରାଯାଇଛି । ଏହା ସହିତ ଜାତିପ୍ରଥା, ଅସ୍ପୃଶ୍ୟତା ଇତ୍ୟାଦି ସାମାଜିକ କୁସଂସ୍କାରଗୁଡ଼ିକୁ ଆଇନ ଦୃଷ୍ଟିରୁ ବାରଣ କରାଯାଇଛି । ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ଅର୍ଥନୈତିକ ସମତା ଓ ମାନବିକ ମୂଲ୍ୟବୋଧର ବିକାଶକୁ ଆମ ରାଷ୍ଟ୍ରର ଆଭିମୁଖ୍ୟ ଭାବରେ ଗ୍ରହଣ କରାଯାଇଛି । ବସ୍ତୁତଃ ଜାତିଗତ, ଧର୍ମଗତ, ଭାଷାଗତ ଓ ସାଂସ୍କୃତିକ ଔପଚାରିକତାର ଭିନ୍ନତା ସତ୍ତ୍ୱେ ଆମର ସମ୍ବିଧାନ ଏକ ସୁସଂହତ, ସମନ୍ୱିତ ଓ ସମ୍ମିଳିତ ରାଷ୍ଟ୍ରୀୟ ଭାବନାର ବିକାଶକୁ ଗୁରୁତ୍ୱ ଦେଇଛି । ଅର୍ଥାତ୍ ସାମାଜିକ ଓ ରାଜନୈତିକ ଉଭୟ ଦିଗରୁ ଦେଶରେ ଜାତୀୟ ସଂହତିର ଅଭିବୃଦ୍ଧି ହିଁ ଆମ ସାଧାରଣତନ୍ତ୍ରର ଆଦର୍ଶ ହୋଇ ରହିଛି ।

ଉଲ୍ଲିଖିତ ମୂଲ୍ୟଚୟକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଥିଲେ ବି ବାସ୍ତବ

ପକ୍ଷେ ଏହି ଆଦର୍ଶଗୁଡ଼ିକ ଆଶାନୁରୂପେ ସ୍ୱୀକୃତ ହୋଇନାହିଁ । ଆମର ସାମାଜିକ ବ୍ୟବସ୍ଥା ଅତୀତର ଅନମନୀୟତାକୁ ପରିହାର କରିଥିଲେ ସୁଦ୍ଧା ସାମନ୍ତବାଦୀ ମନୋଭାବ ଓ ଜାତିପ୍ରଥା ପରି ବ୍ୟବସ୍ଥା ଗୁଡ଼ିକୁ ପରିହାର କରିପାରି ନାହିଁ । ସାମାଜିକ ନ୍ୟାୟ ସାମ୍ବିଧାନିକ ବ୍ୟବସ୍ଥା ଭିତରେ ହିଁ ରହିଛି, କିନ୍ତୁ ବାସ୍ତବ ପକ୍ଷେ ସମାଜରେ ପ୍ରତିଷ୍ଠିତ ହୋଇନାହିଁ । ଅର୍ଥନୈତିକ ସମତା ହାସଲ କରିବାକୁ ଆମ ରାଷ୍ଟ୍ରକୁ ଆହୁରି ଅନେକ କିଛି କରିବାକୁ ଅଛି । ନିରକ୍ଷରତା, ଦାରିଦ୍ର୍ୟ, ସାମାଜିକ ଅନ୍ୟାୟ, ଅର୍ଥନୈତିକ ଶୋଷଣ, ନାନାବିଧ ବୈଷମ୍ୟ ଓ ସର୍ବୋପରି ପ୍ରଶାସନିକ ଦୁର୍ନୀତି ସ୍ୱାଧୀନତା ପ୍ରାପ୍ତିର ଏତେ ବର୍ଷ ପରେ ବି ଆମ ରାଷ୍ଟ୍ରର ସବୁଠାରୁ ବଡ଼ ସମସ୍ୟା ହୋଇ ରହିଛି ।

ଯେକୌଣସି ରାଷ୍ଟ୍ର ପରିପ୍ରେକ୍ଷୀରେ ଏହାର ଆକାଙ୍‌କ୍ଷିତ ଆଦର୍ଶଚୟକୁ ବାସ୍ତବରେ ରୂପାୟିତ କରିବା ଦିଗରେ ପ୍ରଥମ ଆବଶ୍ୟକତା ହେଉଛି ଶାନ୍ତିପୂର୍ଣ୍ଣ ସହାବସ୍ଥାନ । ରାଷ୍ଟ୍ରର ଲକ୍ଷ୍ୟ ହାସଲ କ୍ଷେତ୍ରରେ ଜନଗଣଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ପାରସ୍ପରିକ ସହଯୋଗ ଓ ପରସ୍ପର ପ୍ରତି ବିଶ୍ୱାସ ସର୍ବପ୍ରଥମେ ଆବଶ୍ୟକ ହୋଇଥାଏ । ଦେଶର ଜନଗଣଙ୍କ ଭିତରେ ପରସ୍ପର ପ୍ରତି ବିଶ୍ୱାସ ଓ ସଭ୍ୟ ଦୃଷ୍ଟିଭଙ୍ଗୀର ବିକାଶ ପାଇଁ ଦେଶର ରାଜନୈତିକ ବିଚାରଧାରା ପ୍ରମୁଖ ଭୂମିକା ନେଇଥାଏ । ଦେଶର ରାଜନୈତିକ ନେତୃବୃନ୍ଦ ଯେତିକି ସୁସଂହତ, ବିଚାରଶୀଳ ଓ ଦୂରଦୃଷ୍ଟି ସଂପନ୍ନ ତା'ର ପରିଣାମ ସ୍ୱରୂପ ଦେଶର ରାଜନୈତିକ ସଂସ୍କୃତି ସେତିକି ମାର୍ଜିତ ହେବା ସହିତ ରାଷ୍ଟ୍ରର ଅଭିଳଷିତ ଲକ୍ଷ୍ୟ ହାସଲ ସେତିକି ସମ୍ଭାବନାମୟ । ଅଥଚ ଦେଶର ରାଜନୈତିକ ନେତୃବୃନ୍ଦ ବ୍ୟକ୍ତିସ୍ୱାର୍ଥ ଓ କ୍ଷମତା ହାସଲକୁ ରାଜନୈତିକ କାର୍ଯ୍ୟକଳାପର ପ୍ରଧାନ ଆଭିମୁଖ୍ୟ ଭାବେ ଗ୍ରହଣ କଲେ ରାଷ୍ଟ୍ରର ସଂହତି ବିପନ୍ନ ହେବା ସହିତ ସାମାଜିକ ଅବକ୍ଷୟର ସୂତ୍ରପାତ ହେବା ଅବଶ୍ୟମ୍ଭାବୀ ହୋଇପଡ଼େ ।

ଏହି ପୃଷ୍ଠଭୂମି ଉପରେ ସଂପ୍ରତି ଆମ ଦେଶର ରାଜନୈତିକ ଘଟଣା ପ୍ରବାହ ଯେଉଁସବୁ ସଙ୍କଟ ସୃଷ୍ଟି କରାଇଛି ତାହାର କେତୋଟି ଘଟଣା ଏଠାରେ ବିଚାର୍ଯ୍ୟ । ସଂପ୍ରତି ଦେଶର ବିଭିନ୍ନ ସ୍ଥାନରେ ଯେଉଁ ପ୍ରକାର ସାମ୍ପ୍ରଦାୟିକ ତିକ୍ତତା ସୃଷ୍ଟି ହୋଇଛି ତାହା ଆମର ଶାନ୍ତିପୂର୍ଣ୍ଣ ସହାବସ୍ଥାନକୁ ବିପନ୍ନ କରିବା ସହିତ ସମାଜରେ ଏକ ଅସ୍ୱାଭାବିକ ଉତ୍ତେଜନାର ବାତାବରଣ ସୃଷ୍ଟି କରୁଛି । ଆମ ଦେଶର ରାଜନୈତିକ ସଂଗଠନମାନଙ୍କର "ସଂହତି" ବିଷୟରେ ସ୍ପଷ୍ଟ ଧାରଣା ନ ଥିବାରୁ ବା ଏହାନେଇ ବିତର୍କ କରାଯାଉ ନ ଥିବାରୁ ସେମାନେ ରାଜନୈତିକ ଦୂରଭିସନ୍ଧି ରଖି ବହୁ ସମୟରେ ଜାତିଗତ, ଧର୍ମଗତ, ଭାଷାଗତ ଓ ଆଞ୍ଚଳିକ ଭାବାବେଗ ସୃଷ୍ଟି କରୁଛନ୍ତି । ପରିଣାମତଃ ଏହି ଭାବପ୍ରବଣତା ଏକ ବିଚ୍ଛିନ୍ନତାବାଦୀ ମନୋଭାବକୁ ସମାଜରେ ସୁଦୃଢ଼ କରାଇବା ସହିତ ଆମର ସଂହତିକୁ ଆହ୍ୱାନର ସମ୍ମୁଖୀନ କରାଇଛି । ଏତଦ୍‌ବ୍ୟତୀତ ଆମ ଦେଶର ରାଜନୈତିକ ଦଳସମୂହ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଦଳର ସାଙ୍ଗଠନିକ ବ୍ୟବସ୍ଥାରେ ଗ୍ରହଣ ନ କରି ଏ ପ୍ରକାର ଏକ

ରାଜନୈତିକ ଆଦର୍ଶ ସୃଷ୍ଟି କରୁଛନ୍ତି ଯାହାକି ପ୍ରକାରାନ୍ତରେ ସାମନ୍ତବାଦକୁ ପୁଷ୍ଟ କରୁଛି ଏବଂ ଦେଶର ଗଣତାନ୍ତ୍ରିକ ସଂସ୍କୃତିକୁ ଉନ୍ନତ କରାଉନାହିଁ । ସେହିପରି ଜାତୀୟ ସଂହତିକୁ ସୁଦୃଢ଼ କରି ମାନବିକ ମୂଲ୍ୟବୋଧ ଉପରେ ଆଧାରିତ ରାଷ୍ଟ୍ରୀୟ ଚେତନା ସୃଷ୍ଟି ଦିଗରେ ଆମର ଶିକ୍ଷା ବ୍ୟବସ୍ଥା ସେପରି ଆଶାନୁରୂପ ପଦକ୍ଷେପ ନେଇପାରି ନାହିଁ । ବସ୍ତୁତଃ ଦେଶର ଯୁବଶକ୍ତି ଭିତରେ ଉଚ୍ଚ ଆଦର୍ଶବୋଧ ବା ରାଷ୍ଟ୍ରୀୟ ସଂହତି ନେଇ ସୃଜନଶୀଳ ଦୃଷ୍ଟିଭଙ୍ଗୀର ବିକାଶ ହୋଇପାରୁ ନାହିଁ ।

ଏହା ସହିତ ଆମ ସାଧାରଣତନ୍ତ୍ରର ମୌଳିକ ଆଦର୍ଶ ''ଧର୍ମନିରପେକ୍ଷତା'' ଆଜି ସବୁଠାରୁ ବଡ଼ ଆହ୍ୱାନର ସମ୍ମୁଖୀନ ହୋଇଛି । କାରଣ ସମାଜରେ ଘଟିଯାଉଥିବା ସାଂପ୍ରଦାୟିକ ଦଙ୍ଗା ଓ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ଗଢ଼ି ଉଠୁଥିବା ପାରସ୍ପରିକ ଅବିଶ୍ୱାସ ଓ ବିଦ୍ୱେଷ ଯେ ଆମ ରାଷ୍ଟ୍ରର ପ୍ରଭୂତ କ୍ଷତି ଘଟାଉଛି ଏହା କହିବା ନିଷ୍ପ୍ରୟୋଜନ । ଜନଗଣଙ୍କର ଧର୍ମଗତ ଭାବପ୍ରବଣତାକୁ ରାଜନୈତିକ ଦୂରଭିସନ୍ଧି ପାଇଁ ଶୋଷଣ କରାଯିବା ସହିତ ଏକ ହିନ୍ଦୁ ରାଷ୍ଟ୍ରର ପରିକଳ୍ପନା କରାଯାଉଛି । ସେହିପରି କେତେକ ଖଲିସ୍ଥାନର ସ୍ୱର ଉଠାଇଛନ୍ତି ବା ଧର୍ମଗତ କାରଣରୁ ଦେଶରୁ ବିଚ୍ଛିନ୍ନ ହେବାକୁ ଯୋଜନା କରୁଛନ୍ତି । କିନ୍ତୁ ବଡ଼ ବ୍ୟଙ୍ଗପୂର୍ଣ୍ଣ ହେଲେ ମଧ୍ୟ ଇତିହାସରୁ ଏହା ସ୍ପଷ୍ଟ ଯେ ଯେଉଁ ସମାଜରେ ଧର୍ମର ପ୍ରଭାବ ଯେତିକି ଅଧିକ ରହିଛି, ସେହି ସମାଜ ପ୍ରଗତିଶୀଳ ଆଦର୍ଶ ଓ ସାର୍ବଜନୀନ ମୂଲ୍ୟବୋଧଠାରୁ ସେତିକି ଅପସରି ଯାଇଛି । ଏପରିକି ସଙ୍ଗଠିତ ଧର୍ମକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରିଥିବା ଦେଶମାନଙ୍କରେ ରାଜନୈତିକ ଅସ୍ଥିରତା ଲାଗି ରହିଛି । ଧର୍ମଭିତ୍ତିକ ରାଷ୍ଟ୍ରରେ ଗଣତନ୍ତ୍ର ପରିବର୍ତ୍ତେ ଏକଛତ୍ରବାଦ ପ୍ରତିଷ୍ଠା ହେଉଛି ଓ ସମାନ ଧର୍ମ ଥିବା ଧର୍ମକେନ୍ଦ୍ରିକ ରାଷ୍ଟ୍ରମାନଙ୍କ ମଧ୍ୟରେ ସଂଘର୍ଷ ଲାଗି ରହୁଛି । ସଙ୍ଗଠିତ ଧର୍ମକ୍ଷେତ୍ରରେ ଏହା ବିଫଳ ହେବାବେଳେ ଏକ ଅସଙ୍ଗଠିତ, ପରସ୍ପର ବିରୋଧୀ ଭାବଧାରା ଓ ବହୁ ଗୋଷ୍ଠୀରେ ବିଭକ୍ତ ହିନ୍ଦୁଧର୍ମକୁ ରାଷ୍ଟ୍ରୀୟ ଲକ୍ଷ୍ୟଭାବରେ ଗ୍ରହଣ କରିବା ଆମ ସାଧାରଣତନ୍ତ୍ର ପାଇଁ ଏକ ଅବାସ୍ତବ ପରିକଳ୍ପନା କହିବାକୁ ହେବ । ଧର୍ମନିରପେକ୍ଷତା ଓ ସାର୍ବଜନୀନ ମୂଲ୍ୟଚୟ ଯେକୌଣସି ଉନ୍ନତ ରାଷ୍ଟ୍ରର ଧ୍ୟେୟ ହୋଇଥିବା ବେଳେ ଧର୍ମନିରପେକ୍ଷତାକୁ ପରିହାର କରି ଏକ ଧର୍ମକେନ୍ଦ୍ରିକ ରାଷ୍ଟ୍ରର ପରିକଳ୍ପନା ସମାଜର ପଶ୍ଚାତ୍‌ଗତି ସଦୃଶ ହେବ ।

ଏହା ସହିତ ସାଂପ୍ରତିକ ଘଟଣାବଳୀ ସମାଜରେ ସାଂପ୍ରଦାୟିକ ବିଦ୍ୱେଷ ସୃଷ୍ଟି କରିବାରେ ଲାଗିଛି । ହିନ୍ଦୁମାନେ ଦେଶର ଜନସଂଖ୍ୟାର ଅଶୀ ଭାଗରୁ ଊର୍ଦ୍ଧ୍ୱ ହୋଇଥିଲେ ବି ଆମର ରାଜନୈତିକ ବ୍ୟକ୍ତିବିଶେଷ ହିନ୍ଦୁମାନଙ୍କ ଭିତରେ ଏକ ସଂଖ୍ୟାଲଘୁ ମନ୍ୟତା ସୃଷ୍ଟି କରୁଛନ୍ତି । ସ୍ୱାଧୀନ ଭାରତରେ ହିନ୍ଦୁମାନଙ୍କୁ ଯଥାର୍ଥ ମର୍ଯ୍ୟାଦା ଦିଆଯାଉ ନାହିଁ, ସେମାନେ ତାଙ୍କ ଧର୍ମବିଶ୍ୱାସକୁ ବିକାଶ କରାଇବାର ଅବକାଶ ପାଉନାହାନ୍ତି, ସେମାନଙ୍କ ଅପେକ୍ଷା ସଂଖ୍ୟାଲଘୁ ଶ୍ରେଣୀର ଲୋକମାନେ ଅଧିକ ସୁବିଧା ସୁଯୋଗ ଉପଭୋଗ କରୁଛନ୍ତି,

ସରକାର ସେମାନଙ୍କୁ ତୋଷଣ କରିବାରେ ଲାଗିଛନ୍ତି ଓ ହିନ୍ଦୁମାନେ ସବୁଠାରୁ ଅଧିକ ଦେଶପ୍ରେମୀ ଅଥଚ ଅନ୍ୟମାନଙ୍କର ଜାତୀୟତାବୋଧ ସନ୍ଦେହଜନକ ଇତ୍ୟାଦି ବିଚାର ରାଜନୈତିକ ଦୂରଭିସନ୍ଧି ରଖି ସମାଜରେ ସଂଚାର କରାଯାଉଛି । ସେହିପରି ସଂଖ୍ୟାଲଘୁ ଶ୍ରେଣୀର ଲୋକମାନେ ଏ ଦେଶରେ ନିରାପଦ ନୁହନ୍ତି, ସେମାନଙ୍କର ଧର୍ମଗତ ବିଶ୍ୱାସ ଓ ଉପାସନା ପୀଠକୁ ଧ୍ୱଂସ କରାଯିବାର ଯୋଜନା କରାଯାଉଛି ଓ ହିନ୍ଦୁଧର୍ମର ଦଳିତ ଶ୍ରେଣୀ ଅନେକ ଆର୍ଥିକ ପ୍ରୋତ୍ସାହନ ପାଉଥିବା ବେଳେ ସଂଖ୍ୟାଲଘୁ ସମ୍ପ୍ରଦାୟ ମଧ୍ୟରେ ଆର୍ଥିକ ଦୁଃସ୍ଥତା ଭୋଗ କରୁଥିବା ଲୋକମାନେ ଆର୍ଥିକ ସୁବିଧା ସୁଯୋଗରୁ ବଞ୍ଚିତ ହେଉଛନ୍ତି ଇତ୍ୟାଦି ବିଶ୍ୱାସକୁ ସଂଖ୍ୟାଲଘୁ ସଂପ୍ରଦାୟ ଭିତରେ ପ୍ରସାର କରାଯାଉଛି । ଫଳରେ ସଂପ୍ରଦାୟମାନଙ୍କ ମଧ୍ୟରେ ଅବିଶ୍ୱାସ ଓ ବିଦ୍ୱେଷର ବାତାବରଣ ସୃଷ୍ଟି ହେବାରେ ଲାଗିଛି । ଏହି ପ୍ରକାରର ବିଶ୍ୱାସ ଓ ଭାବନାର ସଂକ୍ରମଣ ଦେଶ ପାଇଁ ଯେପରି କ୍ଷତିକାରକ, ରାଷ୍ଟ୍ରୀୟ ଏକତା ପାଇଁ ମଧ୍ୟ ସେହିପରି ଭୀତିପ୍ରଦ । ଯଦିବି ଏ ପ୍ରକାର ଭାବନା ଭିତରେ କେଉଁଠି କିଛି ସତ୍ୟତା ରହିଛି ତଥାପି ତାହା ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ଭାବରେ ଜନଗଣଙ୍କ ଭିତରେ ପ୍ରସାର କରାଯାଇ ଏକ ବିଦ୍ୱେଷ ମୂଳକ ଭାବାବେଗ ସୃଷ୍ଟି କରାଯାଉଛି ।

ଯୁଗ ଯୁଗ ଧରି ଭାରତୀୟ ସମାଜ ବହୁ ଧର୍ମ, ଭାଷା ଓ ଜାତି ଭିତରେ ତିଷ୍ଠି ରହିଛି ଏବଂ ବହୁ ଉତ୍‌ଥାନ ପତନ ମଧ୍ୟ ଦେଇ ଭିନ୍ନତା ମଧ୍ୟରେ ଏକ ସମନ୍ୱିତ ସଂସ୍କୃତିର ବିକାଶ କରାଇଛି । ଏହି ଦୃଷ୍ଟିଭଙ୍ଗୀ ଆମର ସମ୍ବିଧାନରେ ପ୍ରତିଫଳିତ ହୋଇଛି ଓ କୌଣସି ସଂପ୍ରଦାୟ ବିଶେଷ କରି ଏକ ସଂଖ୍ୟାଗରିଷ୍ଠ ସଂପ୍ରଦାୟକୁ ତୋଷଣ କରାଯିବାର ପ୍ରଶ୍ନ ହିଁ ଉଠୁ ନାହିଁ । ଏପରିକି ଆମ ଦେଶ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ହୋଇଥିଲେ ବି ଦେଶର ବିଭିନ୍ନ ପ୍ରାନ୍ତରେ ହେଉଥିବା ନାନା ପ୍ରକାର ଧର୍ମୀୟ ସମ୍ମେଳନ ଓ ଉତ୍ସବକୁ ବାରଣ କରାଯାଇ ନାହିଁ, ବରଂ ପ୍ରୋତ୍ସାହନ ଦିଆଯାଇଛି । ସେହିପରି ଯେକୌଣସି ବ୍ୟକ୍ତିକୁ ନିଜର ଧର୍ମବିଶ୍ୱାସ ଓ ଉପାସନା ପାଇଁ ପୂର୍ଣ୍ଣ ଅଧିକାର ଦିଆଯାଇଛି । ସରକାରୀ ନିୟମ ଭିତରେ ଯେଉଁଠି ବି ସଂଖ୍ୟାଲଘୁ ଶ୍ରେଣୀକୁ ସନ୍ତୁଷ୍ଟ କରିବାକୁ ଆଇନର ପରିବର୍ତ୍ତନ କରାଯାଇଛି ତାହା ସେମାନଙ୍କର ସାମାଜିକ ବା ଆର୍ଥିକ ଉନ୍ନତି ପରିବର୍ତ୍ତେ କେବଳ ମୌଳବାଦକୁ ପ୍ରଶ୍ରୟ ଦେଇଛି । ସ୍ୱାଧୀନତା ଆନ୍ଦୋଳନ ପରିପ୍ରେକ୍ଷୀରେ ଦେଶରେ ଯେଉଁ ରାଷ୍ଟ୍ରୀୟ ଭାବନା ଓ ଦେଶାତ୍ମବୋଧ ସୃଷ୍ଟି ହୋଇଥିଲା ସେଥିରେ ଜାତି, ଧର୍ମ ନିର୍ବିଶେଷରେ ସବୁ ଶ୍ରେଣୀର ଲୋକମାନେ ସମ୍ମିଳିତ ହୋଇଥିଲେ । ସଂଖ୍ୟାଲଘୁ ଶ୍ରେଣୀର ଯେଉଁ କୃଷକ, ଶ୍ରମଜୀବୀ ଓ କାରିଗରମାନେ ଶହ ଶହ ବର୍ଷ ଧରି ପୁରୁଷାନୁକ୍ରମେ ଜାତୀୟ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଛନ୍ତି ଓ ନିଜର ଲହୁ ଲୁହ ଦ୍ୱାରା ଏ ଦେଶର ଜୀବନ ପ୍ରବାହକୁ ସମୃଦ୍ଧ କରିଛନ୍ତି ସେମାନଙ୍କର ଦେଶପ୍ରୀତିକୁ ରାଜନୈତିକ ବ୍ୟକ୍ତିମାନେ ସନ୍ଦେହ ଦୃଷ୍ଟିରେ ଦେଖିବା ସମୀଚୀନ ମନେହୁଏ ନାହିଁ । ସେହିପରି ଆମ ଦେଶରେ ବହୁ ଧର୍ମ ବିଶ୍ୱାସ ଓ ବିଚାରଧାରାର ବ୍ୟକ୍ତି ଯୁଗ ଯୁଗ ଧରି

ଶାନ୍ତିପୂର୍ଣ୍ଣ ଭାବରେ ସହାବସ୍ଥାନ କରି ଆସିଛନ୍ତି ଓ ଆମର ଜାତୀୟ ଜୀବନକୁ ତଥା ସଂସ୍କୃତିକୁ ପ୍ରଭାବିତ କରିଛନ୍ତି । ସୁତରାଂ ସଂଖ୍ୟାଲଘୁ ଶ୍ରେଣୀର ଲୋକମାନେ ଏଠାରେ ନିରାପଦରେ ରହିପାରିବେ ନାହିଁ ଏହା ଭାବିବାର ଅବକାଶ ନାହିଁ । ସେହିପରି ଯେ କୌଣସି ବ୍ୟକ୍ତି ନିଜର ଧର୍ମଗତ ବିଶ୍ୱାସ ବା ଉପାସନା ପାଇଁ କୌଣସି ସାମାଜିକ ସୁଯୋଗରୁ ବଞ୍ଚିତ ନୁହେଁ । ସୁତରାଂ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ବିଦ୍ୱେଷର ବାତାବରଣ ଯେ ରାଜନୈତିକ ଦୂରଭିସନ୍ଧିରୁ ସୃଷ୍ଟ ଏହା କୁହାଯାଇପାରେ ।

ଏହା ସତ୍ୟ ଯେ ଆମର ସାମାଜିକ ଜୀବନରେ ଅନେକ ବୈଷମ୍ୟ ରହିବା ସହିତ ଆମ ଦେଶରେ ଅନେକ ଜାତୀୟ ସମସ୍ୟା ରହିଛି । ସେହିପରି ଉତ୍କଟ ଦାରିଦ୍ର୍ୟ, ଅନ୍ୟାୟ, ନିରକ୍ଷରତା ପରି ବ୍ୟାଧିଗୁଡ଼ିକ ଆମ ଜାତୀୟ ଜୀବନକୁ କଳୁଷିତ କରି ରଖିଛି । କିନ୍ତୁ ଦେଶର ଏହି ବାସ୍ତବ ସମସ୍ୟା ପ୍ରତି ଜନଗଣଙ୍କର ଦୃଷ୍ଟି ଆକର୍ଷଣ ନ କରି ଆମର ରାଜନୈତିକ ବ୍ୟକ୍ତିବିଶେଷ ଯେଉଁ ଜାତିଗତ ଓ ସାଂପ୍ରଦାୟିକ ବିଦ୍ୱେଷର ବାତାବରଣ ସୃଷ୍ଟି କରି ବିଚ୍ଛିନ୍ନତାବାଦକୁ ପ୍ରକାରାନ୍ତରେ ସାହାଯ୍ୟ କରୁଛନ୍ତି ତାହା ଦେଶ ଓ ଜାତି ପାଇଁ ଯେ ହିତକର ନୁହେଁ ଏହା ବିଚାର କରିବା ଆବଶ୍ୟକ । ଦେଶର ଜନଗଣ ଯଦି ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତିଙ୍କ ଦୂରଭିସନ୍ଧିର ଶିକାର ହୁଅନ୍ତି ତେବେ ଆମ ଦେଶକୁ ଯେ ଭବିଷ୍ୟତରେ ଅନେକ ମୂଲ୍ୟ ଦେବାକୁ ହେବ ଏହା ନିଃସନ୍ଦେହରେ କୁହାଯାଇପାରେ । ସୁତରାଂ ଏହି ପରିପ୍ରେକ୍ଷୀରେ ଆମ ସାଧାରଣତନ୍ତ୍ରର ଅତ୍ୟୁଚ୍ଚ ମୂଲ୍ୟଗୁଡ଼ିକ ରକ୍ଷାକରିବା ସହିତ ଜାତୀୟ ସମସ୍ୟାଗୁଡ଼ିକର ଶାନ୍ତିପୂର୍ଣ୍ଣ ସମାଧାନ ବାହାର କରିବା ଦେଶ ପାଇଁ ବଡ଼ ଆହ୍ୱାନ କହିବାକୁ ହେବ । ସେ କ୍ଷେତ୍ରରେ ଜନଗଣଙ୍କ ଭିତରେ ବିଦ୍ୱେଷ ପରିବର୍ତ୍ତେ ସହଯୋଗ ଏକାନ୍ତ କାମ୍ୟ । ଏହାଦ୍ୱାରା ଜାତୀୟ ସଂହତି ସୁଦୃଢ଼ ହେବା ସହିତ ସାମାଜିକ ଜୀବନ ଉନ୍ନତ ହୋଇପାରିବ । ଦେଶର ଗଣମାଧ୍ୟମ, ଶିକ୍ଷାବ୍ୟବସ୍ଥା, ରାଜନୈତିକ ସଂଗଠନ ଓ ସାଂସ୍କୃତିକ ଅନୁଷ୍ଠାନ ଜନଗଣଙ୍କ ଭିତରୁ ସକଳ ବିଦ୍ୱେଷକୁ ଦୂର କରିବା ସହିତ ସକଳ ପ୍ରକାର ମୌଳିକତାବାଦ ଓ ବିଚ୍ଛିନ୍ନତାବାଦକୁ ପ୍ରତିହତ କରିବାକୁ ଉଦ୍ୟମ କରିବା ଆବଶ୍ୟକ । ସକଳ ସ୍ତରରୁ ଉଦ୍ୟମ କରାନଗଲେ ଓ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ଅବ୍ୟାହତ ରହିଲେ ଏହା ଆମର ଜାତୀୟ ସଂହତିକୁ ବିପନ୍ନ କରିବ । ଜାତୀୟ ସଂହତି ବିପନ୍ନ ହେଲେ ସ୍ୱାଧୀନତା ପରେ ଗଣତନ୍ତ୍ରର ଯେଉଁ ଧାରାଟି, ତାହା ଯେତେ ଦୁର୍ବଳ ହେଉନା କାହିଁକି, ଦେଶରେ ଅବ୍ୟାହତ ରହିଛି ତାହା ବିପନ୍ନ ହେବ । ଏହା ସହିତ ପରସ୍ପର ପ୍ରତି ଅବିଶ୍ୱାସ ଜନିତ ଏକ ମନସ୍ତାତ୍ତ୍ୱିକ ବାତାବରଣ ସମାଜରେ ବିକାଶ ଲାଭ କଲେ ତାହା ସାମାଜିକ ଅପକର୍ଷତାର ସୂତ୍ରପାତ କରାଇବା ସହିତ ଜାତୀୟ ଜୀବନକୁ ବିପର୍ଯ୍ୟୟର ସମ୍ମୁଖୀନ କରାଇବ ।

■■

# ଜାତି ଓ ଚତୁର୍ବର୍ଣ୍ଣ : ଏକ ଦୃଷ୍ଟିପାତ

ଭାରତୀୟ ହିନ୍ଦୁ ସମାଜକୁ ଯେଉଁ ଏକକ ସାମାଜିକ ପ୍ରଥାଟି ଯୁଗ ଯୁଗ ଧରି ବିଭାଜିତ ଓ କଳୁଷିତ କରି ରଖିଛି ତାହା ହେଉଛି ଜାତିପ୍ରଥା । ଗୋଟିଏ ସମାଜରେ ବାସ କରୁଥିବା ଲୋକମାନଙ୍କ ମଧ୍ୟରେ ଜନ୍ମଗତ ବୈଷମ୍ୟ ସୃଷ୍ଟି କରିବାରେ ଜାତି ପ୍ରଥା ଏକ ମୁଖ୍ୟ ଭୂମିକା ନେଇଛି । ଏହା ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ବର୍ଗୀକୃତ ବୈଷମ୍ୟ ଓ ଅସମତାକୁ ଗ୍ରହଣ କରିବା ସହିତ ଜନ୍ମରୁ ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ସ୍ଥାନ ନିରୂପଣ କରି ଦେଇଥାଏ । ଏହି ବ୍ୟବସ୍ଥା ଭାରତୀୟ ଜନଜୀବନ ଓ ତାହାର ଅନ୍ତର୍ଚେତନାକୁ ଯୁଗ ଯୁଗ ଧରି ପ୍ରଭାବିତ କରିଆସିଛି । ଭାରତୀୟ ସମାଜର ଅଗ୍ରଗତି ଓ ବିକାଶର ଅଧ୍ୟୟନ ଜାତି ପ୍ରଥାକୁ ବାଦ ଦେଇ କରାଯାଇ ନ ପାରେ । ଏହା ଜନଗଣଙ୍କର ମନସ୍ତତ୍ତ୍ୱ ଭିତରେ ଏକ ବଳିଷ୍ଠ ସ୍ଥାନ ନେଇ ଆସିଛି ।

ଜାତି ପ୍ରଥା ହିନ୍ଦୁ ସମାଜ ସହିତ ଅଙ୍ଗାଙ୍ଗୀ ଭାବରେ ସଂଶ୍ଳିଷ୍ଟ ଓ ଏହି ପ୍ରଥାର ସଠିକ ଐତିହାସିକ ସମୟ ନିରୂପଣ କରିବା କଷ୍ଟକର । ଏପରିକି ବୁଦ୍ଧଦେବଙ୍କ ପୂର୍ବରୁ ଏହି ପ୍ରଥା ରହିଥିବା ଜଣାଯାଏ । ସୁତରାଂ ଗତ ତିନି ହଜାର ବର୍ଷ ଧରି ଏହି ବ୍ୟବସ୍ଥାଟି ଭାରତୀୟ ଜନଜୀବନ ସହିତ ସଂଶ୍ଳିଷ୍ଟ ରହିଆସିଛି । ଭାରତବର୍ଷରେ ଜାତିର ସଂଖ୍ୟା ସଠିକ ଭାବେ ନିରୂପଣ କରିବା ବି କଠିନ ମନେହୁଏ । ତଥାପି ଜାତିର ସଂଖ୍ୟା ଚାରି ହଜାରରୁ ଊର୍ଦ୍ଧ୍ୱ ହେବ ବୋଲି କେତେକ ପରିସଂଖ୍ୟାନରୁ ଜଣାଯାଏ । ପୁନଶ୍ଚ ଗୋଟିଏ ଗୋଟିଏ ଜାତି ବହୁବିଧ ଉପଜାତିରେ ମଧ୍ୟ ବିଭକ୍ତ । ପ୍ରତ୍ୟେକଟି ଉପଜାତି ନିଜର ସ୍ୱତନ୍ତ୍ରତା ରକ୍ଷା କରିବାରେ ଆଗ୍ରହୀ । ଏହା ସହିତ ଜାତି ବା ଉପଜାତି ଲୋକମାନଙ୍କର ସଂଖ୍ୟା ମଧ୍ୟ ଭିନ୍ନ ଭିନ୍ନ । ଗୋଟିଏ ଗୋଟିଏ ଜାତି ବା ଉପଜାତି ଲୋକଙ୍କର ସଂଖ୍ୟା ଲକ୍ଷାଧିକ ବେଳେ ଅନ୍ୟ କେତେକଙ୍କର ସଂଖ୍ୟା ସୀମିତ ପରିବାର ମଧ୍ୟରେ ସୀମାବଦ୍ଧ ।

ଜାତିର ଯଥାର୍ଥ ସଂଜ୍ଞା ନିରୂପଣ କରିବା ସହଜସାଧ୍ୟ ନ ହେଲେ ବି ଏହାର କେତେକ ସାଧାରଣ ଲକ୍ଷଣ ନିର୍ଣ୍ଣୟ କରିବା ଆୟାସସାଧ୍ୟ ନୁହେଁ । ଯେକୌଣସି ଜାତିର ସଭ୍ୟ ସଂପୂର୍ଣ୍ଣ ଭାବରେ ପୁରୁଷାନୁକ୍ରମିକ ଓ ପ୍ରତ୍ୟେକ ବ୍ୟକ୍ତି ନିଜର ବାପା, ମା'ଙ୍କର ଜାତିରେ ପରିଚିତ ।

କୌଣସି ବ୍ୟକ୍ତି ସାମାଜିକ ବାସନ୍ଦ ହୋଇ ଜାତିରୁ ବହିଷ୍କୃତ ନ ହେଲେ ତା'ର ଜାତି ତା'ର ଜନ୍ମରୁ ସବୁଦିନ ପାଇଁ ନିର୍ଦ୍ଧାରିତ ହୋଇଥାଏ । ବ୍ୟକ୍ତି ତା'ର ଜାତିରେ ବିବାହ କରିବାକୁ ବାଧ ଓ ଭାରତୀୟ ସମାଜରେ ଯୁଗ ଯୁଗ ଧରି ଏହି ସାମାଜିକ ବ୍ୟବସ୍ଥାଟି ପ୍ରଚଳିତ । ସ୍ଥଳ ବିଶେଷରେ ଏହାର ବ୍ୟତିକ୍ରମ ହୁଏତ ଦେଖାଯାଏ, କିନ୍ତୁ ତାହା ଅତି ନଗଣ୍ୟ । ବରଂ ହିନ୍ଦୁ ସମାଜରେ ଗତ ଏକ ଶହ ବର୍ଷ ଧରି ସୃଷ୍ଟି ହୋଇଥିବା କେତେକ ସଂସ୍କାରବାଦୀ ଆନ୍ଦୋଳନ ଓ ସ୍ୱାଧୀନୋତ୍ତର ସମାଜରେ ସାମାଜିକ ପରିବର୍ତ୍ତନ ଯୋଗୁଁ ଏହା ବର୍ତ୍ତମାନ ସମ୍ଭବପର ବୋଲି ଚିନ୍ତା କରାଯାଇ ପାରୁଛି । କିନ୍ତୁ ଶହ ଶହ ବର୍ଷ ଧରି ବୈବାହିକ ସଂପର୍କ ଜାତି ଜାତି ଭିତରେ ସୀମିତ ରହି ଆସିଛି ଓ ଯେଉଁମାନେ ପରିସ୍ଥିତି ଭିତରେ ଅନ୍ୟ ଜାତିରେ ବିବାହ କରିଛନ୍ତି ସେମାନେ ନାନା ସାମାଜିକ ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି । ଏଣୁ ବୈବାହିକ ସଂପର୍କ ସଂପୂର୍ଣ୍ଣ ଭାବେ ଜାତିଭିତ୍ତିକ ହୋଇ ରହିଆସିଛି । ଗୋଟିଏ ଜାତିର ଅନ୍ୟ ଜାତି ଲୋକଙ୍କ ସହିତ ସମ୍ପର୍କ ବି ବହୁ ଭାବରେ ସୀମାବଦ୍ଧ ରହି ଆସିଛି । ଅର୍ଥନୈତିକ ବା ବୃତ୍ତିଗତ ନିର୍ଭରଶୀଳତାକୁ ବାଦ ଦେଲେ ପ୍ରତ୍ୟେକ ଜାତିର ଲୋକମାନେ ଅନ୍ୟ ଜାତି ସହିତ ସାମାଜିକ ସଂପର୍କକୁ ସୀମିତ ରଖି ଆସିଛନ୍ତି । ସ୍ୱାଧୀନ ଭାରତରେ ସହରମାନଙ୍କର ଅଭ୍ୟୁଦୟ, ଗମନାଗମନର ପ୍ରଭୂତ ବିକାଶ, କର୍ମସଂସ୍ଥାନ ନିରୂପଣ କରିବାରେ ଗତିଶୀଳତା ଓ କ୍ରମବର୍ଦ୍ଧିଷ୍ଣୁ ପାରସ୍ପରିକ ନିର୍ଭରଶୀଳତା ଯୋଗୁଁ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଆଜି ଅନେକ ପରିବର୍ତ୍ତନ ଆସିପାରିଛି । କିନ୍ତୁ ଶହେ ବର୍ଷ ତଳେ ଅତୀତର ସମାଜରେ ଜାତିମାନଙ୍କର ସାମାଜିକ ସଂପର୍କ ଅତି ସୀମିତ ଓ ସଙ୍କୁଚିତ ହୋଇ ରହିଥିଲା । ଏପରିକି ବିଭିନ୍ନ ଜାତିର ଲୋକମାନେ ସାମାଜିକ ଉତ୍ସବରେ ଏକତ୍ର ହେବା, ଏକତ୍ର ଭୋଜନ କରିବା ବା ପରସ୍ପରର ରୋଷେଇ ଖାଦ୍ୟ ଖାଇବା ଓ ଏପରିକି ପରସ୍ପରକୁ ସ୍ପର୍ଶ କରିବା ବି ଅତି ସୀମିତ ରହିଥିଲା । ଏହା ସହିତ ପ୍ରତ୍ୟେକ ଜାତିର ଏକ ନିର୍ଦ୍ଦିଷ୍ଟ ବୃତ୍ତିଗତ ପେଷା ରହିଥିଲା ଓ ଏକ ନିର୍ଦ୍ଦିଷ୍ଟ କର୍ମସଂସ୍ଥାନ ଭିତରେ ଗୋଟିଏ ଜାତି ସମାଜରେ ପରିଚିତ ହେଉଥିଲା । ଜାତିମାନେ ପରସ୍ପର ସହିତ ସଂପର୍କ କ୍ଷେତ୍ରରେ ପରସ୍ପରଠୁ ଉଚ୍ଚ ନୀଚ ବୋଲି ପରିଚିତ ହେଉଥିଲେ ଓ ବିଭିନ୍ନ ଅଞ୍ଚଳରେ ଜାତି ଜାତିମାନଙ୍କ ମଧ୍ୟରେ ବିଦ୍ୱେଷ ରହିଥିଲା । ସ୍ୱାଧୀନତାର ଏକ ଶତାବ୍ଦୀ ପୂର୍ବରୁ ଜାତିଭିତ୍ତିକ ସମାଜ ହିଁ ଭାରତୀୟ ଜନ ଜୀବନର ପ୍ରଧାନ ବିଭବ ହୋଇ ରହିଥିଲା । ଅର୍ଥାତ୍ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ଜାତି କେନ୍ଦ୍ରିକ ରୁଦ୍ଧ ସାମାଜିକ ବ୍ୟବସ୍ଥା ଭାରତବର୍ଷରେ ରହି ଆସିଥିଲା । ସ୍ୱାଧୀନତା ଆନ୍ଦୋଳନର ଉନ୍ମେଷ ସହିତ ଜାତିଗତ ରୁଦ୍ଧ ବ୍ୟବସ୍ଥାରେ ସାମାନ୍ୟ ପରିବର୍ତ୍ତନ ଆସିଲା । ପରବର୍ତ୍ତୀ ପର୍ଯ୍ୟାୟରେ କେତେକ ସଂସ୍କାରବାଦୀ ଆନ୍ଦୋଳନ, ରାଜନୈତିକ ସ୍ୱାଧୀନତା ପାଇଁ ଜାତୀୟ ଜାଗରଣ ସମୟରେ ସୃଷ୍ଟ ଦେଶାତ୍ମବୋଧ, ସ୍ୱାଧୀନ ଭାରତରେ ସାମ୍ବିଧାନିକ ବ୍ୟବସ୍ଥା ଦ୍ୱାରା ସମସ୍ତଙ୍କୁ ସମାନ ନାଗରିକ ମର୍ଯ୍ୟାଦା ପ୍ରଦାନ, ପରିବର୍ତ୍ତିତ ଅର୍ଥନୈତିକ ପରିସ୍ଥିତି ଯୋଗୁଁ ସାମାଜିକ

ଗତିଶୀଳତା ବୃଦ୍ଧି, ସାର୍ବଜନୀନ ଶିକ୍ଷାର ପ୍ରସାର ଓ ଗଣମାଧ୍ୟମର ବହୁଳ ବ୍ୟବହାର ଦ୍ୱାରା ଏକ ନୂତନ ସାମାଜିକ ପ୍ରବାହ ସୃଷ୍ଟି ହେଲା । ଏହାଦ୍ୱାରା ଜାତିଗତ ଅନମନୀୟ ବ୍ୟବସ୍ଥାରେ ପରିବର୍ତ୍ତନର ସୂତ୍ରପାତ ହେଲା । ତଥାପି ଭାରତୀୟ ଜନଜୀବନର ମାନସିକତାକୁ ଏହି ଜାତିଗତ ବ୍ୟବସ୍ଥା ଏପରି ଭେଦିକରି ରହିଛି ଯଦ୍ୱାରା ଆମେ ଏଥିରୁ ମୁକ୍ତ ହେବାକୁ ଚାହୁଁଥିଲେ ବି ଆମର ଅବଚେତନରୁ ଏହାକୁ ଦୂରେଇ ଦେଇ ପାରିନାହୁଁ ।

ଜାତିପ୍ରଥାର ସମସ୍ତ କୁପରିଣାମ ସତ୍ତ୍ୱେ ଏହାର କେତେକ ସୁଫଳକୁ ଅସ୍ୱୀକାର କରାଯାଇ ନ ପାରେ । ପ୍ରତ୍ୟେକ ଜାତିର କେତେକ କୌଳିକ ବୃତ୍ତି ଥିବା ଯୋଗୁଁ ଓ ପୁରୁଷାନୁକ୍ରମେ ସେହି ବୃତ୍ତି ପରିବାରର ନିଜସ୍ୱ ଶୈଳୀ ହୋଇଥିବାରୁ ଜାତିମାନଙ୍କର ଉପାର୍ଜନ ସାମର୍ଥ୍ୟ ନଷ୍ଟ ହୋଇନାହିଁ । ବରଂ ପୁରୁଷାନୁକ୍ରମେ ଏକ ନିର୍ଦ୍ଦିଷ୍ଟ ବୃତ୍ତି ଅଧିକାଂଶ ଜାତିର ରହିବାଦ୍ୱାରା ସେଥିରେ କେତେକ ଉତ୍କର୍ଷତା ଆସିପାରିଛି । ବୃତ୍ତିଗତ ଉତ୍କର୍ଷତା ସାଙ୍ଗକୁ ସାମାଜିକ ସ୍ଥିରତା, ତାହା ଯେତେ ସଙ୍କୁଚିତ ଅର୍ଥରେ ହେଉନା କାହିଁକି, ମଧ୍ୟ ସୃଷ୍ଟି ହୋଇଛି । ଭାରତବର୍ଷର ଗ୍ରାମୀଣ ସଭ୍ୟତାର ବିକାଶ ଦିଗରେ ଏହା ବି କେତେକାଂଶରେ ସହାୟକ ହୋଇଛି ।

ଜାତିପ୍ରଥାର କିଞ୍ଚିତ ସୁଫଳ ସତ୍ତ୍ୱେ ଭାରତୀୟ ସମାଜର ସକଳ ଅଧଃପତନ ପଶ୍ଚାତରେ ଏହି ବ୍ୟବସ୍ଥାଟି ମୁଖ୍ୟ ଭୂମିକା ନେଇଆସିଛି । ସମାଜର ଲୋକମାନଙ୍କୁ ସାନ ବଡ଼ ଭେଦରେ ଅସଂଖ୍ୟ ଗୋଷ୍ଠୀରେ ବିଭକ୍ତ କରିବା ଦ୍ୱାରା ସାମାଜିକ ଓ ରାଷ୍ଟ୍ରୀୟ ସଂହତି ବହୁଭାବରେ ବାଧାପ୍ରାପ୍ତ ହୋଇଛି । ଜନ୍ମରୁ ବ୍ୟକ୍ତିମାନଙ୍କୁ ଉଚ୍ଚନୀଚ କ୍ରମେ ବିଭକ୍ତ କରିବାଦ୍ୱାରା ଜନଗଣ ଏକ ଦୂଷିତ ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ଶିକାର ହୋଇଛନ୍ତି । ସମସ୍ତ ନାଗରିକଙ୍କୁ ସମାନ ଅଧିକାର ଦିଆଯିବା ପ୍ରତ୍ୟେକ ସଭ୍ୟ ଓ ପ୍ରଗତିଶୀଳ ରାଷ୍ଟ୍ରର ଲକ୍ଷ୍ୟ ହେବା ବେଳେ ଆମର ସାମାଜିକ ଜୀବନ ଏହି ଆଦର୍ଶକୁ ଗ୍ରହଣ କରିପାରି ନାହିଁ । ବ୍ୟକ୍ତି ସମ୍ମାନବୋଧ, ସମାନ ନାଗରିକ ଅଧିକାର, ସାମାଜିକ ନ୍ୟାୟ ଓ ପ୍ରତ୍ୟେକ ବ୍ୟକ୍ତିର ସ୍ୱତଃସ୍ଫୂର୍ତ୍ତ ବିକାଶର ସମ୍ଭାବନା ଏକ ସୁସ୍ଥ ସମାଜର ଶ୍ରେୟ ହୋଇଥିବା ବେଳେ ଭାରତୀୟ ସମାଜ ଏହି ଆଦର୍ଶକୁ ଉପେକ୍ଷା କରିଆସିଛି । ସୁତରାଂ ଏକ ଜନରାଜ୍ୟ ଗଠନ ପାଇଁ ଆମର ସାମାଜିକ ପୃଷ୍ଠଭୂମି ପ୍ରତିକୂଳ ହୋଇଛି । ଅର୍ଥାତ୍ ସ୍ୱାଧୀନୋତ୍ତର ଭାରତବର୍ଷରେ ସାମ୍ବିଧାନିକ ବ୍ୟବସ୍ଥା ଦ୍ୱାରା ଏକ ଆଦର୍ଶ ଜନରାଜ୍ୟ ଗଠନକୁ ଆଭିମୁଖ୍ୟ ଭାବରେ ଗ୍ରହଣ କରାଯାଉଥିଲେ ବି ଯୁଗ ଯୁଗ ଧରି ଆମର ଜାତିଭିତ୍ତିକ ସାମାଜିକ ବ୍ୟବସ୍ଥା ଏହି ଆଦର୍ଶର ସଫଳ ରୂପାୟନ ଦିଗରେ ଅଭିନିବେଶ ଯୋଗାଇ ପାରିନାହିଁ ।

ଏହା ସହିତ ଜାତିଗତ ଚେତନା କିପରି ଅପସାଂସ୍କୃତିକ ମୂଲ୍ୟଚୟକୁ ସାମାଜିକ ସ୍ୱୀକୃତି ପ୍ରଦାନ କରିଛି ତା'ର କେତୋଟି ଘଟଣା ଏଠାରେ ଆଲୋଚନା କରାଯାଇପାରେ । ଜାତିଆଣ ମନୋଭାବ ଦ୍ୱାରା ପରିଚାଳିତ ହେବାଦ୍ୱାରା ସମାଜରେ କେତେକ କର୍ମକୁ ହୀନ

ଦୃଷ୍ଟିରେ ଦେଖାଯାଉଛି । କାରଣ କେତେକ ତଥାକଥିତ ଦଳିତ ଜାତିର ଲୋକମାନେ ଯେଉଁ ବୃତ୍ତିକୁ ଗ୍ରହଣ କରିଥାନ୍ତି ସେହି ବୃତ୍ତି ଏକ ନିମ୍ନ କାର୍ଯ୍ୟ ବୋଲି ଗ୍ରହଣ କରାଯାଏ । ପରିଣାମତଃ ଶ୍ରମର ମର୍ଯ୍ୟାଦା ଆମ ସମାଜରେ ନାହିଁ । ଏପରିକି ଭିକ୍ଷା ବୃତ୍ତିଦ୍ୱାରା ନିଜର ଆବଶ୍ୟକତାକୁ ପୂରଣ କରିବା ଏକ ସମ୍ମାନ ଜନକ କାର୍ଯ୍ୟ ବୋଲି ସ୍ଥଳ ବିଶେଷରେ ଗ୍ରହଣ କରାଯାଏ ଅଥଚ ଉଚ୍ଚ ଜାତିର ବ୍ୟକ୍ତି ଏକ ନିମ୍ନ ବୃତ୍ତିକୁ ଗ୍ରହଣ କରିବା ଅସମ୍ମାନ ଜନକ ମନେ କରନ୍ତି । ସେହିପରି ସାମାଜିକ ଜୀବନରେ ନୈତିକ ଆଚରଣ ଓ ବ୍ୟକ୍ତି ପ୍ରତି ସମ୍ମାନବୋଧ ଅପେକ୍ଷା ଧର୍ମୀୟ ଔପଚାରିକତା ଓ ହେତୁହୀନ ପରମ୍ପରାକୁ ଅଧିକ ଗୁରୁତ୍ୱ ଦିଆଯାଏ । ଜାତିଭେଦକୁ ସୃଷ୍ଟ ପୂର୍ବନିର୍ଦ୍ଦିଷ୍ଟବାଦ ଓ ତା'ର ଆନୁଷଙ୍ଗିକ ବିଶ୍ୱାସ ସକଳ ଆମର ସାମାଜିକ ମୂଲ୍ୟବୋଧକୁ ଅତ୍ୟନ୍ତ ପ୍ରଭାବିତ କରି ରଖିବା ଦେଖାଯାଏ । ଏତଦ୍‌ବ୍ୟତୀତ ଜାତିପ୍ରଥା ହିନ୍ଦୁମାନଙ୍କ ଭିତରେ ଏକ ଭାବାପନ୍ନ ସାମାଜିକ କାର୍ଯ୍ୟଧାରା ଓ ସମ୍ମିଳିତ ଚେତନାର ବିକାଶ ପାଇଁ ପ୍ରତିବନ୍ଧକ ହୋଇଛି । ସାଂପ୍ରଦାୟିକ ବିଦ୍ୱେଷ ପରିପ୍ରେକ୍ଷୀରେ ହୁଏତ ହିନ୍ଦୁ ଏକତାର ସ୍ୱର ଉଠାଯାଉଛି କିନ୍ତୁ ବାସ୍ତବତଃ ହିନ୍ଦୁ ସମାଜରେ ଯୁଗ ଯୁଗ ଧରି ଜାତିପ୍ରଥା ଯୋଗୁଁ ଏକ ସମ୍ମିଳିତ ଆଦର୍ଶ ଓ ସମନ୍ୱୟ ସୃଷ୍ଟି ହୋଇନାହିଁ । ପରିଣାମ ସ୍ୱରୂପ ଶହ ଶହ ବର୍ଷ ଧରି ଆମର ସ୍ୱାଧୀନତା ବିପନ୍ନ ହୋଇଛି ଓ ଆମ ଜାତିଗତ ଅସୂୟା ଓ ସଂଘର୍ଷର ସୁଯୋଗ ଅନ୍ୟମାନେ ନେଇଛନ୍ତି ।

ଜାତିଗତ ବ୍ୟବସ୍ଥାର ଏହି ଅନ୍ତର୍ନିହିତ କୁପରିଣାମ ଯୋଗୁଁ ବିଭିନ୍ନ ସମୟରେ ଏହା ବିରୁଦ୍ଧରେ ସ୍ୱର ଉଠିଛି । ଏପରିକି ଜାତିଗତ ବ୍ୟବସ୍ଥା ଯେତିକି ପ୍ରାଚୀନ ଏହାର ବିରୋଧ ମଧ୍ୟ ସେତିକି ପୁରାତନ । ଯେଉଁ ବ୍ୟକ୍ତି ବା ସଂସ୍କାରବାଦୀ ଆନ୍ଦୋଳନ ସମୂହ ଏହାର ବିରୋଧ କରିଛନ୍ତି ସେମାନଙ୍କ ଭିତରେ ମହାବୀର, ବୁଦ୍ଧ, ଶିଖଧର୍ମ, ଭକ୍ତି ଆନ୍ଦୋଳନ, ବ୍ରାହ୍ମ ସମାଜ, ଆର୍ଯ୍ୟସମାଜ, ରାମକୃଷ୍ଣ ମିଶନ, ଥିଓସଫିକାଲ ସୋସାଇଟି, ଆମ୍ବେଦକର ଓ ଗାନ୍ଧୀ ପ୍ରମୁଖ ଅଟନ୍ତି । ବିଭିନ୍ନ ସମୟରେ ଏହି ସବୁ ବ୍ୟକ୍ତି ବା ଆନ୍ଦୋଳନ 'ଜନ୍ମରୁ ଜାତି' ଏହି ପ୍ରଥାର ବିରୋଧ କରି ହିନ୍ଦୁଧର୍ମରେ ସଂସ୍କାର ଆଣିବାକୁ ପ୍ରୟାସ କରିଛନ୍ତି । ସେମାନଙ୍କର ଆନ୍ଦୋଳନ ଓ ବିଚାରଧାରାର ପ୍ରଭାବରେ ଏହି ଅନମନୀୟ ସାମାଜିକ ବ୍ୟବସ୍ଥା କେତେକାଂଶରେ କୋହଳ ହୋଇଥିଲେ ସୁଦ୍ଧା ସଂପୂର୍ଣ୍ଣ ଭାବେ ମୂଳୋତ୍ପାଟନ ହୋଇନାହିଁ । ବରଂ ସ୍ୱାଧୀନ ଭାରତରେ ଗାନ୍ଧୀ ଯେଉଁ ଚେତନା ସୃଷ୍ଟି କରିଥିଲେ ତା'ର ପରିଣାମରେ ଓ ପରିବର୍ତ୍ତିତ ସାମାଜିକ ପରିସ୍ଥିତିରେ ଆଜି ଏହି ବ୍ୟବସ୍ଥା ଅନେକାଂଶରେ କୋହଳ ହୋଇଛି । ଅବଶ୍ୟ ସ୍ୱାଧୀନ ଭାରତରେ ରାଜନୈତିକ ଅସାଧୁତା ଯୋଗୁଁ ସମୟରେ ଜାତିଗତ ଭାବାବେଗକୁ ଉଦ୍ରେକ କରାଯାଇ ସାଧାରଣ ଜନତାଙ୍କ ଭିତରେ ପୁଣି ଏହି ଭାବନାକୁ ସଂକ୍ରମିତ କରାଯାଉଛି । ତଥାପି ପୁରାତନ ସମାଜର ରୁଦ୍ଧ ବ୍ୟବସ୍ଥା ସାଂପ୍ରତିକ ସମାଜରେ ଅନେକ ପରିବର୍ତ୍ତିତ ହେବାରେ ଲାଗିଛି ଯଦିବା ଆମର ସାମାଜିକ ଜୀବନରେ ଏହାର ପ୍ରଭାବ ସୁସ୍ପଷ୍ଟ ହୋଇ ରହିଛି । ବିଶେଷତଃ ଆଦର୍ଶଗତ ଦୃଷ୍ଟିରୁ ଅନେକ ବ୍ୟକ୍ତି ଜାତିପ୍ରଥାକୁ ଗ୍ରହଣ

କରୁନଥିଲେ ବି ବୈବାହିକ ସମ୍ବନ୍ଧ କ୍ଷେତ୍ରରେ ଏହି ବ୍ୟବସ୍ଥାଟି ମୁଖ୍ୟସ୍ଥାନ ନେଉଛି ଓ ସମାଜର ପ୍ରାୟ ନବେ ଭାଗରୁ ଊର୍ଦ୍ଧ୍ୱ ବିବାହ ଜାତିଗତ ଆଦର୍ଶରେ ସମାହିତ ହେଉଛି । କାରଣ ଏହା ପଶ୍ଚାତରେ କେତେକ ସାଧାରଣ ବିଶ୍ୱାସ ଜନଗଣଙ୍କ ମନସ୍ତତ୍ତ୍ୱକୁ ପ୍ରଭାବିତ କରି ରଖିଛି ଓ ସାମାଜିକ ପ୍ରଭାବ ଥିବା ବ୍ୟକ୍ତି ବିଶେଷ ଏହି ପ୍ରଥାର ଔଚିତ୍ୟକୁ ଏବେବି ସମର୍ଥନ କରୁଛନ୍ତି ।

ଜାତିଗତ ବ୍ୟବସ୍ଥାକୁ ସମର୍ଥନ କରୁଥିବା ବ୍ୟକ୍ତି ବିଶେଷ ଯୁକ୍ତି କରିଥାନ୍ତି ଯେ ଏହି ବ୍ୟବସ୍ଥା ଶ୍ରମବିଭାଜନ ନିୟମ ଉପରେ ଆଧାରିତ ଓ ସମାଜର ବିକାଶ ଦିଗରେ ସହାୟକ । ଏହା ଯୁକ୍ତି କରାଯାଏ ଯେ ପ୍ରତ୍ୟେକ ସମାଜରେ ବୃତ୍ତିଗତ ଓ ଶ୍ରମଜନିତ ବିଭାଜନ ରହିଆସିଛି ଓ ଆମର ଜାତିଗତ ବ୍ୟବସ୍ଥା ଶ୍ରମ ବିଭାଜନର ଏକ ଅନ୍ୟନାମ କହିଲେ ଅତ୍ୟୁକ୍ତି ହେବନାହିଁ । ଅବଶ୍ୟ ପ୍ରତ୍ୟେକ ସମାଜରେ ଶ୍ରମ ବିଭାଜନ ନିୟମ ରହିବା ଅତ୍ୟନ୍ତ ସ୍ୱାଭାବିକ ଓ ବିଶେଷକରି ଆଧୁନିକ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ଦ୍ୱାରା ଗଢ଼ି ଉଠୁଥିବା ଶିଳ୍ପୋଦ୍ୟୋଗ କ୍ଷେତ୍ରରେ ଏହା ଏକ ଅବଶ୍ୟମ୍ଭାବୀ ଆବଶ୍ୟକତା । କିନ୍ତୁ ''ଶ୍ରମ ବିଭାଜନ'' ଓ ''ଶ୍ରମିକ ବିଭାଜନ'' ପରସ୍ପରଠାରୁ ଭିନ୍ନ । ଶ୍ରମ ବିଭାଜନ ଏକ ଅର୍ଥନୈତିକ ଓ ବୈଜ୍ଞାନିକ ପ୍ରକ୍ରିୟା ହୋଇଥିବା ବେଳେ ଶ୍ରମିକମାନଙ୍କର ଜନ୍ମଗତ ସାମାଜିକ ବିଭାଜନ ଏକ କୃତ୍ରିମ ଓ ଅନୈତିକ ବ୍ୟବସ୍ଥା ଅଟେ । ସୁତରାଂ ଜାତିଗତ ବ୍ୟବସ୍ଥା ଏକ ପ୍ରାକୃତିକ ଓ ଅବଶ୍ୟମ୍ଭାବୀ ପ୍ରକ୍ରିୟା ନୁହେଁ ।

ଜାତିପ୍ରଥାକୁ ନୀତିଗତ ସମର୍ଥନ କରୁଥିବା ବ୍ୟକ୍ତିଗଣ ସମୟରେ ଏକ କୁସଂସ୍କାରପୂର୍ଣ୍ଣ ବିଶ୍ୱାସଦ୍ୱାରା ପରିଚାଳିତ ହୋଇଥାନ୍ତି । ନିଜ ଜାତି ଓ ରକ୍ତର ଶୁଦ୍ଧତାକୁ ରକ୍ଷା କରିବା ପାଇଁ ସେମାନେ ଜାତିଗତ ବିବାହକୁ ସମର୍ଥନ କରିଥାନ୍ତି । କିନ୍ତୁ ଜାତିଗତ ବିଭେଦ କୌଣସି ବଂଶ ବା ଶ୍ରେଣୀଗତ (racial) ବିଭାଜନକୁ ନ ବୁଝାଇ ଏକ ସାମାଜିକ ବିଭାଜନକୁ ବୁଝାଇଥାଏ । ନୃତାତ୍ତ୍ୱିକ ଅଧ୍ୟୟନଦ୍ୱାରା ଏହା ପ୍ରମାଣିତ ଯେ ପୃଥିବୀରେ କୌଣସି ଶୁଦ୍ଧବଂଶ କେଉଁଠାରେ ନାହିଁ । ଏହା ସହିତ ଜାତିଗତ ବିଚ୍ଛିନ୍ନତା ଭାରତୀୟ ହିନ୍ଦୁ ସମାଜର ଏକ ପ୍ରପଞ୍ଚପୂର୍ଣ୍ଣ ବ୍ୟବସ୍ଥା ହୋଇଥିବାରୁ ଏହା କୌଣସି ବଂଶ ବା ଶ୍ରେଣୀ ଭିତ୍ତିକ ବିଭାଜନ ନିୟମ ଉପରେ ପର୍ଯ୍ୟବସିତ ନ ହୋଇ ବରଂ ଏକ ଶ୍ରେଣୀର ଯେ ସାମାଜିକ ବିଭାଜନ ଏହା କହିବା ଅଧିକ ଯୁକ୍ତି ସଙ୍ଗତ । ସହଜାତ ସାମାଜିକ ତାରତମ୍ୟ ଓ ବିଚ୍ଛିନ୍ନତା ଯେକୌଣସି ମାନଦଣ୍ଡରେ ଯେ ଏକ ଅନୈତିକ ବ୍ୟବସ୍ଥା ଏହା କହିବା ସମ୍ଭବତଃ ଅତ୍ୟୁକ୍ତି ହେବ ନାହିଁ ।

ବସ୍ତୁତଃ ସାମାଜିକ ନ୍ୟାୟକୁ ଉପେକ୍ଷା କରି ଜାତିଗତ ବ୍ୟବସ୍ଥାଟି ସମାଜର ପ୍ରଭୂତ କ୍ଷତିସାଧନ କରୁଥିବାରୁ ଏହି ଅନୈତିକ ବ୍ୟବସ୍ଥା ବିରୁଦ୍ଧରେ ବୁଦ୍ଧଙ୍କ ଠାରୁ ଆରମ୍ଭ କରି ଗାନ୍ଧୀଙ୍କ ପର୍ଯ୍ୟନ୍ତ ବହୁ ମନୀଷୀ ସଂଘବଦ୍ଧ ଉଦ୍ୟମ କରିଛନ୍ତି । କିନ୍ତୁ ଏହା ପରିତାପର ବିଷୟ ଯେ ଆମ ଦେଶରେ ସଂସ୍କାରବାଦୀ ମନୀଷୀଗଣଙ୍କୁ ସମ୍ମାନ କରାଯାଇଛି କିନ୍ତୁ ସେମାନଙ୍କର ଜୀବନାଦର୍ଶ ଓ ବାଣୀକୁ ଗ୍ରହଣ କରାଯାଇ ନାହିଁ । ସୁତରାଂ ଦେଶରେ ଅନେକ ସଂସ୍କାରବାଦୀ ଆନ୍ଦୋଳନ ସତ୍ତ୍ୱେ ଜାତିଗତ ବ୍ୟବସ୍ଥାର ସମୂଳ ପରିବର୍ତ୍ତନ ହୋଇନାହିଁ ।

ଏହାର ପରିବର୍ତ୍ତନ ନ ହେବାର ପଶ୍ଚାତରେ ଯେଉଁ କେତେକ ମୁଖ୍ୟ କାରଣ ରହିଛି ତା' ଭିତରେ ଆମର ଧର୍ମୀୟ ଭାବନା ଓ ମନସ୍ତତ୍ତ୍ୱ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ । କାରଣ ଆମର ଜାତିଭିତ୍ତିକ ସାମାଜିକ ବ୍ୟବସ୍ଥାଟି ଶାସ୍ତ୍ରାନୁମୋଦିତ ଓ ଏକ ଆର୍ଷନିୟମ ବୋଲି ଗ୍ରହଣ କରାଯାଏ । ଏହାକୁ ଆପ୍ତବାଣୀର ମର୍ଯ୍ୟାଦା ଦିଆଯାଉଥିବାରୁ ଏହି ବ୍ୟବସ୍ଥାଟିର ପବିତ୍ରତା ନେଇ ଏକ ସାଧାରଣ ମନସ୍ତତ୍ତ୍ୱ ସମାଜରେ ଯୁଗ ଯୁଗ ଧରି ରହି ଆସିଥିବା ଦେଖାଯାଏ । ସୁତରାଂ ଏହାର ଅପକାରିତା ସତ୍ତ୍ୱେ ଏହା ପଛରେ ରହିଥିବା ଶାସ୍ତ୍ରୀୟ ଅନୁମୋଦନ ଏହାକୁ ତିଷ୍ଠି ରଖିବାରେ ଯଥେଷ୍ଟ ସହାୟକ ହୋଇଛି ।

ଜାତିଗତ ବ୍ୟବସ୍ଥା ଶାସ୍ତ୍ର ବର୍ଣ୍ଣିତ ବର୍ଣ୍ଣ ବ୍ୟବସ୍ଥାର ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ । ସମାଜର ସକଳ ବ୍ୟକ୍ତି ବିଶେଷ ଚାରୋଟି ବର୍ଣ୍ଣରେ ବିଭକ୍ତ ଓ ଏହି ବର୍ଣ୍ଣ ବ୍ୟବସ୍ଥା ଦିବ୍ୟ ନିୟମ ଉପରେ ଆଧାରିତ ବୋଲି ଶାସ୍ତ୍ରରେ ଅନେକ ସ୍ଥାନରେ କୁହାଯାଇଛି । ବର୍ଣ୍ଣ ବ୍ୟବସ୍ଥାର ମୌଳିକ ନିର୍ଯ୍ୟାସ ହେଉଛି ପ୍ରତ୍ୟେକ ବ୍ୟକ୍ତି ତା'ର ଗୁଣ ଓ ସ୍ୱଭାବ ନେଇ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ର ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ ହେବା ବିଧେୟ । ଏହା ପୁରୁଷାନୁକ୍ରମିକ ନ ହୋଇ ବ୍ୟକ୍ତିର ଗୁଣ ଓ ପ୍ରବୃତ୍ତି ଜନିତ ବୋଲି କୁହାଯାଏ । ଜ୍ଞାନ ଓ ଆଧାତ୍ମିକ କର୍ମରେ ପ୍ରବୃତ୍ତ ସମାଜର ନୀତି ନିୟାମକ ଶ୍ରେଣୀ ବ୍ରାହ୍ମଣ, ସମାଜର ଶାସନ ଓ ନିରାପତ୍ତାର ଦାୟିତ୍ୱ ନେଇଥିବା ଶ୍ରେଣୀ କ୍ଷତ୍ରିୟ, ଅର୍ଥ ଉପାର୍ଜନ ପାଇଁ ବ୍ୟବସାୟରେ ପ୍ରବୃତ୍ତ ଥିବା ବ୍ୟକ୍ତି ବୈଶ୍ୟ ଓ ଏହି ତିନିଶ୍ରେଣୀ ବ୍ୟତୀତ ଉପାର୍ଜନ କରୁଥିବା କୃଷକ, କାରିଗର, ଶ୍ରମିକ ଓ ଅନ୍ୟ ସମସ୍ତେ ଶୂଦ୍ର ଶ୍ରେଣୀର ପର୍ଯ୍ୟାୟଭୁକ୍ତ । ସୁତରାଂ ପ୍ରତ୍ୟେକ ଶ୍ରେଣୀର ସାମାଜିକ କର୍ତ୍ତବ୍ୟ ସୁନିର୍ଦ୍ଦିଷ୍ଟ ଓ ସୁବ୍ୟବସ୍ଥିତ । କିନ୍ତୁ ଏହି ବର୍ଣ୍ଣ ବ୍ୟବସ୍ଥା, ଯାହାକୁ ଜାତିଗତ ବ୍ୟବସ୍ଥାର ମୂଳ ଉତ୍ସ ବୋଲି ନିଆଯାଇ ପାରେ, ଯେତେ ଶାସ୍ତ୍ରାନୁମୋଦିତ ହେଲେ ବି ତ୍ରୁଟିପୂର୍ଣ୍ଣ ଆଦର୍ଶ ଉପରେ ଆଧାରିତ ଥିବା ମନେହୁଏ । ପ୍ରତ୍ୟେକ ବ୍ୟକ୍ତି ଭିତରେ ନାନାବିଧ ସମ୍ଭାବନା ରହିଥିବା ପରିପ୍ରେକ୍ଷୀରେ ବ୍ୟକ୍ତିର ଯଥାର୍ଥ ସ୍ୱରୂପ ନିରୂପଣ କରି ତାକୁ ଏକ ବର୍ଣ୍ଣରେ ବର୍ଗୀକରଣ କରିବା ଅସମ୍ଭବ ଅଟେ । କାରଣ ବ୍ୟକ୍ତିମାନଙ୍କର ସ୍ୱଭାବ ଏପରି ବିବିଧ ଯେ ସମସ୍ତ ସ୍ୱଭାବ ଓ ପ୍ରବୃତ୍ତିକୁ ମାତ୍ର ଚାରୋଟି ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରିବା ଯେପରି ଅସମ୍ଭବ ସେହିପରି ଅବାସ୍ତବ । ଯଦିବି ଯୁକ୍ତି ଦୃଷ୍ଟିରୁ ଗ୍ରହଣ କରାଯାଏ ଯେ ମାନବିକ ପ୍ରବୃତ୍ତିକୁ ଚାରୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରିବ ତଥାପି ଜଣେ ବ୍ୟକ୍ତି ଭିତରେ ଯେ ଏକାଧିକ ପ୍ରବୃତ୍ତି ରହିପାରିବ ନାହିଁ ତାହା କୁହାଯାଇ ପାରିବ ନାହିଁ । ବରଂ ପ୍ରତ୍ୟେକ ବ୍ୟକ୍ତିର କିଛି ନା କିଛି ସ୍ୱାତନ୍ତ୍ର୍ୟତା ଥିବା ବସ୍ତୁନିଷ୍ଠ ଭାବେ ସତ୍ୟ ଅଟେ । ସୁତରାଂ ଶାସ୍ତ୍ରସ୍ୱୀକୃତ ବର୍ଣ୍ଣ ବ୍ୟବସ୍ଥା ଯେ ତ୍ରୁଟିଶୂନ୍ୟ ନୁହଁ ଏହା କୁହାଯାଇପାରେ । କହିବା ବାହୁଲ୍ୟ ଏହି ବ୍ୟବସ୍ଥାର ଅନ୍ତର୍ନିହିତ ଦୁର୍ବଳତା ଯୋଗୁଁ ଏହି ଚତୁର୍ବର୍ଣ୍ଣ ସମୟାନୁକ୍ରମେ ଚାରି ହଜାରରୁ ଉର୍ଦ୍ଧ୍ୱ ଜାତିରେ ପରିଣତ ହୋଇଗଲା ।

ଏତଦ୍‌ବ୍ୟତୀତ ଯଦିବି ଯୁକ୍ତି ଦୃଷ୍ଟିରୁ ଚତୁର୍ବର୍ଣ୍ଣ ବ୍ୟବସ୍ଥା ପଶ୍ଚାତରେ ଥିବା ଆଦର୍ଶକୁ

ସତ୍ୟ ବୋଲି ଗ୍ରହଣ କରାଯାଏ ତଥାପି ମଧ ଏହାର ସଫଳ ରୂପାୟନ ପାଇଁ ସର୍ବଦା ଏକ ଦୃଢ଼ ଜାଗରୁକ ବ୍ୟବସ୍ଥା ଦରକାର ହୁଏ । ସମାଜରେ ମହତ୍ତର ସ୍ଥିତି ପାଇଁ ଅଭିଳାଷ ବ୍ୟକ୍ତିର ସ୍ୱାଭାବିକ ଆକାଂକ୍ଷା ହୋଇଥିବାରୁ ବ୍ୟକ୍ତି ସ୍ୱଭାବର ଯଥାର୍ଥ ମୂଲ୍ୟାୟନ କରି ତାକୁ ତା'ର ସମୁଚିତ ବର୍ଣ୍ଣ ଭିତରେ ଆବଦ୍ଧ କରି ରଖିବା ପାଇଁ ଯେଉଁ ଜାଗରୁକ ଓ ଦଣ୍ଡ ବ୍ୟବସ୍ଥାର ଆବଶ୍ୟକ ପଡେ ତାହାର ସଫଳ ରୂପାୟନ ଅସମ୍ଭବ ମନେହୁଏ । କାରଣ ଜଣେ ବ୍ୟକ୍ତିର ସ୍ୱଭାବକୁ ଯଦିବି ନିର୍ଦ୍ଦିଷ୍ଟ ଭାବରେ ସ୍ଥିରୀକୃତ କରାଯାଏ ତଥାପି ଅନ୍ୟ ଏକ ସ୍ଥିତି ପାଇଁ ତା'ର ଅଭୀପ୍‌ସା ଓ ପ୍ରୟାସକୁ ଅସ୍ୱୀକାର କରି ଏଥିପାଇଁ ଦଣ୍ଡ ବ୍ୟବସ୍ଥା କରିବା ଅମାନବିକ ମନେହୁଏ । ଶମ୍ବୁକ ଶୂଦ୍ରର ଆଧ୍ୟାତ୍ମିକ ସାଧନାପାଇଁ ତାକୁ ମୃତ୍ୟୁଦଣ୍ଡ ପ୍ରଦାନ କରିବା (ଯାହା ରାମାୟଣରେ ବର୍ଣ୍ଣିତ ଅଛି) ବ୍ୟକ୍ତି ସ୍ୱାଧୀନତାର ପରିପନ୍ଥୀ ଓ ଅନୈତିକ ବୋଲି କୁହାଯାଇପାରେ । ଅର୍ଥାତ୍ ଏହି ବ୍ୟବସ୍ଥାର ଉଲ୍ଲଙ୍ଘନ କ୍ଷେତ୍ରରେ ଦଣ୍ଡ ବ୍ୟବସ୍ଥା ସ୍ଥଳ ବିଶେଷରେ ଅହେତୁକ ଏବଂ ବ୍ୟକ୍ତିର ସ୍ୱାଧୀନ ମନୋଭାବ ଓ ମର୍ଯ୍ୟାଦାର ଯେ ପ୍ରତିକୂଳ ଏହା ମନେହୁଏ ।

କେବଳ ବ୍ୟବହାରିକ ଦୃଷ୍ଟିକୋଣରୁ ବର୍ଣ୍ଣବ୍ୟବସ୍ଥାର ରୂପାୟନ ଯେ ଅସମ୍ଭବ ତା' ନୁହେଁ ବାସ୍ତବ ପକ୍ଷେ ଏହି ବ୍ୟବସ୍ଥାର ସୈଦ୍ଧାନ୍ତିକ ଭିତ୍ତି ଯଥେଷ୍ଟ ସୁଦୃଢ଼ ନୁହେଁ । ଏହି ବ୍ୟବସ୍ଥାରେ ଜଣେ ନାରୀଙ୍କର ବର୍ଣ୍ଣ କିପରି ନିରୂପଣ କରାଯିବ ? ଯଦି ଧରିନିଆଯାଏ ଯେ ଜଣେ ମହିଳାଙ୍କର ବର୍ଣ୍ଣ ତାଙ୍କର ପିତା-ମାତା ବା ସ୍ୱାମୀଙ୍କର ବର୍ଣ୍ଣ ଦ୍ୱାରା ନିୟନ୍ତ୍ରିତ ହେବ ତେବେ ବର୍ଣ୍ଣ ବ୍ୟବସ୍ଥା ଯେ ଯଥାର୍ଥ ନୁହେଁ ଏହା କହିବା ନିଷ୍ପ୍ରୟୋଜନ । କାରଣ ସେପରି ହେଲେ ଏହା କେବଳ ପୁରୁଷମାନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ଓ ସାର୍ବଜନୀନ ନୁହେଁ । ନାରୀମାନଙ୍କର ନିଜସ୍ୱ ସ୍ୱଭାବ ବା ପ୍ରତିଭା ଦ୍ୱାରା ଯଦି ସେମାନଙ୍କର ବର୍ଣ୍ଣ ନିରୂପଣ କରାଯିବା ଆବଶ୍ୟକ ତେବେ ନାରୀମାନଙ୍କୁ ବି ପୂଜକ ଓ ରକ୍ଷକର ସ୍ଥାନ ଦିଆଯିବା ଦରକାର ଯାହାକି ଅନେକ ସମୟରେ ଅବାସ୍ତବ ମନେହୁଏ । ବର୍ଣ୍ଣବ୍ୟବସ୍ଥାର ସଫଳ ରୂପାୟନ କ୍ଷେତ୍ରରେ ଏହି ବିରୋଧାଭାସ ଥିବାରୁ ଏହାର ତାତ୍ତ୍ୱିକ ଭିତ୍ତି ଯେ ସୁଦୃଢ଼ ନୁହେଁ ଏହା କୁହାଯାଇପାରେ ।

ବର୍ଣ୍ଣ ବ୍ୟବସ୍ଥାର ଏହି ସବୁ ମୌଳିକ ତ୍ରୁଟି ଯୋଗୁଁ କାଳକ୍ରମେ ଏହା ଏକ ରୁଢ଼ିବାଦରେ ପରିଣତ ହୋଇ ବ୍ୟକ୍ତି ମର୍ଯ୍ୟାଦାର ପରିପନ୍ଥୀ ହୋଇଥିବା ଜଣାଯାଏ । ବର୍ଣ୍ଣ ବ୍ୟବସ୍ଥାରେ ତଳେ ରହିଥିବା ଶୂଦ୍ରମାନଙ୍କୁ ସମୟାନୁକ୍ରମେ ମାନବିକ ଅଧିକାରରୁ ବଞ୍ଚିତ କରାଗଲା । ଜ୍ଞାନ ଆହରଣ, ଶାସନ କାର୍ଯ୍ୟ ଓ ବ୍ୟବସାୟ ଜନିତ ଧନଲାଭ ସେମାନଙ୍କର ସାମାଜିକ ଦାୟିତ୍ୱ ହୋଇନଥିବାରୁ ସେମାନଙ୍କୁ ନୀତିଗତ ଭାବରେ ଏଥିରୁ ବାରଣ କରାଗଲା । ପରିଣାମତଃ ସେମାନେ ନିଜର ନୈତିକ, ରାଜନୈତିକ ଓ ମାନସିକ ସାମର୍ଥ୍ୟର ବିକାଶ ଘଟାଇବା ଦିଗରେ ଅସମର୍ଥ ହୋଇପଡ଼ିଲେ ଓ ସାମାଜିକ ଅନ୍ୟାୟ ବିରୁଦ୍ଧରେ କେବେବି ବିପ୍ଳବ କରିପାରିଲେ

ନାହିଁ । ସୁତରାଂ ଯୁଗ ଯୁଗ ଧରି ଶୂଦ୍ରମାନେ ନ୍ୟୂନ ହୋଇ ରହିବା ସହିତ ଅନ୍ୟମାନଙ୍କର ଅଧୀନ ହୋଇ ରହିଲେ ।

ବର୍ଣ୍ଣ ବ୍ୟବସ୍ଥାରୁ ଉତ୍ପନ୍ନ ଜାତିପ୍ରଥା ସାମାଜିକ ଜୀବନରେ ଦୃଢ଼ ହୋଇଯିବା ଦ୍ୱାରା ସମାଜର ନୈତିକ ଶୃଙ୍ଖଳା ଜାତିଭିତ୍ତିକ ହୋଇଗଲା । ବ୍ୟକ୍ତିର ସାମାଜିକ କର୍ତ୍ତବ୍ୟବୋଧ ଜାତି ଭିତରେ ସୀମିତ ରହିବା ଦ୍ୱାରା ସାର୍ବଜନୀନ ନୈତିକ ମୂଲ୍ୟବୋଧ ପ୍ରତି ସାମାଜିକ ଉଦାସୀନତା ଦେଖାଦେଲା । ଏହା ଫଳରେ ସାମାଜିକ ଅବକ୍ଷୟ ଜାତୀୟ ଜୀବନକୁ ଆସ୍ତେ ଆସ୍ତେ ବିପର୍ଯ୍ୟସ୍ତ କଲା ।

ଯୁଗ ଯୁଗ ଧରି ଜାତିଗତ ଅନୈତିକ ବ୍ୟବସ୍ଥାଟି ସାମାଜିକ ଶୃଙ୍ଖଳାର ଭିତ୍ତି ହୋଇ ରହିବା ଫଳରେ ଏହି ବ୍ୟବସ୍ଥାର ପବିତ୍ରତା ନେଇ ଭାବନା ଜନମାନସରେ ସୁଦୃଢ଼ ହୋଇଗଲା । ଏହି ମନସ୍ତାତ୍ତ୍ୱିକ ଭିତ୍ତିକୁ ଅଧିକ ସୁଦୃଢ଼ କରିବାରେ ଧର୍ମୀୟ ସ୍ୱୀକୃତି ବି ଅଭିନିବେଶ ଯୋଗାଇଲା । ପରିଣାମତଃ ଜାତି ବ୍ୟବସ୍ଥା ହିନ୍ଦୁ ସମାଜରେ ଏକ ସାର୍ବଜନୀନ ଅନୁଷ୍ଠାନରେ ପରିଣତ ହୋଇଗଲା ଓ ଏହାର ପବିତ୍ରତାକୁ ରକ୍ଷା କରିବା ଏକ କର୍ତ୍ତବ୍ୟ ବୋଲି ସାମାଜିକ ସ୍ୱୀକୃତି ଲାଭ କଲା । ଅବଶ୍ୟ ଯୁଗ ଯୁଗ ଧରି ଏହି ନିଷ୍ଠୁର ସାମାଜିକ ବ୍ୟବସ୍ଥାକୁ ଧରି ରଖିଥିବା ବ୍ୟକ୍ତିବିଶେଷ ଯେ ସମ୍ବେଦନଶୀଳ ନୁହନ୍ତି ବା ଦରଦହୀନ ଏହା କୁହାଯାଇ ନ ପାରେ । ବରଂ ଏକ ନିର୍ଦ୍ଦିଷ୍ଟ ଧର୍ମଧାରଣାର ବଶବର୍ତ୍ତୀ ହୋଇ ରହିବା ଦ୍ୱାରା ସେମାନେ ସମଗ୍ର ବିଷୟଟି ପ୍ରତି ସ୍ପର୍ଶକାତରହୀନ ହୋଇପଡ଼ିଲେ । ମୋଟ ଉପରେ ସାମାଜିକ ଅନ୍ୟାୟ ପ୍ରତି ଏହି ସ୍ପର୍ଶକାତରହୀନ ଦୃଷ୍ଟିକୋଣଟିର ବିକାଶ ଦିଗରେ ଧର୍ମୀୟ ବିଶ୍ୱାସ ସବୁଙ୍କର ଯଥେଷ୍ଟ ପ୍ରଭାବ ରହିଲା ।

ଉପସଂହାରରେ ଏହା କୁହାଯାଇପାରେ ଯେ ଧର୍ମୋପଦେଶ ସବୁକୁ ବିନା ବିଶ୍ଳେଷଣରେ ଗ୍ରହଣ କରାଯିବାଦ୍ୱାରା ସାମାଜିକ ଅବକ୍ଷୟ ଆସିଥାଏ । ଯେଉଁ ସମାଜରେ ହେତୁବାଦ, ମାନବତାବାଦ ଓ ବିଚାରଶୀଳ ଦୃଷ୍ଟିଭଙ୍ଗୀର ପ୍ରାଧାନ୍ୟ ତୁଳନାରେ ଧର୍ମଶାସ୍ତ୍ରର ପବିତ୍ରତା ଅଧିକ ଗ୍ରହଣଯୋଗ୍ୟ ହୁଏ ତାହା କ୍ଷୟଶୀଳ ହୋଇପଡ଼େ । କାରଣ ବହୁ ପ୍ରାଚୀନ ସମୟର ସାମାଜିକ ଅବସ୍ଥା ପୃଷ୍ଠଭୂମିରେ ଯେଉଁସବୁ ନୀତି ନିୟମ ବର୍ଣ୍ଣିତ ହୋଇଥିଲା ସେ ସବୁ ଯେ ସବୁ ସମୟ ଓ ପରିସ୍ଥିତି ପାଇଁ ପ୍ରଯୁଜ୍ୟ ଏହା ଭାବିବା ଯଥାର୍ଥ ନୁହେଁ । ମଣିଷର ମାନସିକ ସ୍ତର ଅତୀତରେ ଯାହା ଥିଲା ତାକୁ ଆଧାର କରି କେତେକ ଶାସ୍ତ୍ର, ପୁରାଣ ରଚିତ ହୋଇଥିଲା । ସେଥିରେ ବ୍ୟକ୍ତ ନୀତିବୋଧ, ସାମାଜିକ ସମ୍ବନ୍ଧ ଇତ୍ୟାଦି ଯେ ଚିରସ୍ଥାୟୀ ଏହା ଭାବିବା ଏକ ସୁସ୍ଥ ଦୃଷ୍ଟିଭଙ୍ଗୀ ନୁହେଁ । ବିଶେଷତଃ ଜାତିପ୍ରଥା ପରି ଏକ ସାମାଜିକ ବିଧାନ ଯେ ଏକ ନୀତିହୀନ ଓ ବ୍ୟକ୍ତି ମର୍ଯ୍ୟାଦାବିରୋଧୀ ବ୍ୟବସ୍ଥା ଏହା ଅନସ୍ୱୀକାର୍ଯ୍ୟ ।

■■

# ଆମ୍ବେଦକରଙ୍କ ଦୃଷ୍ଟିରେ ଜାତିପ୍ରଥା ଓ ସାମାଜିକ ନ୍ୟାୟ

ବାବା ସାହେବ ଡକ୍ଟର ଭୀମରାଓ ଆମ୍ବେଦକର ହିନ୍ଦୁ ସାମାଜିକ ବ୍ୟବସ୍ଥାର ଥିଲେ ଜଣେ ସାଲିସହୀନ ସମାଲୋଚକ । ତାଙ୍କ ସମସାମୟିକ ସମାଜରେ ସେ ଦଳିତମାନଙ୍କ ପ୍ରତି ଯେଉଁ ଅମାନବିକ ବ୍ୟବହାର ଓ କଟକଣା ଦେଖିଥିଲେ ସେଥିରେ ଗଭୀର ମର୍ମାହତ ହୋଇ ଦଳିତମାନଙ୍କର ସାମାଜିକ ଅଧିକାର ପାଇଁ ଜୀବନବ୍ୟାପୀ ପ୍ରୟାସ କରିଥିଲେ । ରାଜନୈତିକ ପରାଧୀନତା ଓ ସାମାଜିକ ଦାସତ୍ୱ ଭିତରେ ସେ ସାମାଜିକ ଦାସତ୍ୱକୁ ଅଧିକ ମାରାତ୍ମକ ମନେ କରୁଥିଲେ । ରାଜନୈତିକ ସ୍ୱାଧୀନତା ପାଇଁ ଜନଗଣଙ୍କୁ ସଙ୍ଗଠିତ କରିବା ଯେତେ ସହଜ ଥିଲା, ସାମାଜିକ ଦାସତ୍ୱ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ତା'ଠାରୁ ଥିଲା ଅଧିକ କଷ୍ଟକର । ଯୁଗ ଯୁଗ ଧରି ଭାରତୀୟ ସମାଜରେ ଜାତିପ୍ରଥା ସୁଦୃଢ଼ ହୋଇ ରହିଥିଲା ଓ ସମାଜର ଦଳିତ ଶ୍ରେଣୀ ମାନବିକ ଅଧିକାରରୁ ବଞ୍ଚିତ ହୋଇ ରହିଥିଲେ । ବିଭିନ୍ନ ରାଜ୍ୟର ସାମାଜିକ ଇତିହାସରୁ ଦଳିତମାନଙ୍କ ପ୍ରତି ହୋଇ ଆସିଥିବା ଅକଥନୀୟ ଅତ୍ୟାଚାରର ଯେଉଁ ଚିତ୍ର ଦେଖିବାକୁ ମିଳେ ତାହା ଆମ୍ବେଦକରଙ୍କୁ ଗଭୀର ମର୍ମାହତ କରିଥିଲା । ସେତେବେଳେ ଦଳିତମାନେ ସବର୍ଣ୍ଣମାନଙ୍କ ରାସ୍ତାରେ ଚାଲିବାର ଅଧିକାର ପାଉନଥିଲେ । ସାଧାରଣ କୂଅ, ପୋଖରୀର ଜଳ ବ୍ୟବହାର କରିବା କ୍ଷେତ୍ରରେ ସେମାନଙ୍କ ପ୍ରତି କଟକଣା ଥିଲା । ସରକାରୀ ପରିଚାଳିତ ବିଦ୍ୟାଳୟରେ ଦଳିତ ପିଲାମାନଙ୍କୁ ପଢ଼ାଇବା ପାଇଁ ସାମାଜିକ ପ୍ରତିବନ୍ଧକ ଥିଲା । ଏପରିକି ଆମ୍ବେଦକର ସରକାରୀ ତଥ୍ୟ ଓ ସମ୍ବାଦପତ୍ର ବିବରଣୀରୁ ମହାରାଷ୍ଟ୍ରର କେତେକ ଘଟଣା ତାଙ୍କର ପ୍ରସିଦ୍ଧ କୃତି ''ଜାତିପ୍ରଥାର ବିଲୋପ'' (Annihilation of Caste) ପୁସ୍ତକରେ ଉଲ୍ଲେଖ କରିଛନ୍ତି । ଏହି ବିବରଣୀ ଅନୁଯାୟୀ ଦଳିତମାନେ ରଙ୍ଗୀନ ପୋଷାକ ପିନ୍ଧିବା, ହରିଜନ ସ୍ତ୍ରୀଲୋକମାନେ ପିତଳ ଗରାରେ ପାଣି ନେବା, ଅଳଙ୍କାର ପିନ୍ଧିବା ଓ ଏପରିକି ସାମାଜିକ ଭୋଜି ଭାତରେ ଘିଅ ଖାଇବା ସବର୍ଣ୍ଣମାନଙ୍କ ମର୍ଯ୍ୟାଦା ପ୍ରତି ଅସମ୍ମାନ ଜନକ ବୋଲି

ସବର୍ଣ୍ଣମାନେ ମନେ କରୁଥିଲେ । ସୁତରାଂ ହରିଜନମାନେ କେଉଁଠି ସେପରି କଲେ ସବର୍ଣ୍ଣମାନେ ସମ୍ମିଳିତ ହୋଇ ସେମାନଙ୍କର ଉପରେ ଆକ୍ରମଣ କରି ସେମାନଙ୍କୁ ନିର୍ଯ୍ୟାତିତ କରୁଥିଲେ । ମୋଟ ଉପରେ ସବର୍ଣ୍ଣମାନେ ଦଳିତମାନଙ୍କ ଉପରେ ଯାବତୀୟ କଟକଣା ଜାରିକରି ସେମାନଙ୍କୁ ସର୍ବନିମ୍ନ ଅଧିକାରରୁ ବଞ୍ଚିତ କରି ରଖିଥିଲେ । ଏହି ସାମାଜିକ ସ୍ଥିତିରେ ବାବାସାହେବଙ୍କ ପରି ଜଣେ ଉଚ୍ଚ ଶିକ୍ଷାପ୍ରାପ୍ତ ଓ ସଚେତନ ବ୍ୟକ୍ତି ଗଭୀର ମର୍ମାହତ ହେବା ସ୍ୱାଭାବିକ ଥିଲା ।

ଆମ୍ବେଦକରଙ୍କ ପୂର୍ବରୁ ଭାରତୀୟ ସମାଜରେ ଅବଶ୍ୟ କେତେକ ସଂସ୍କାରବାଦୀ ଆନ୍ଦୋଳନ ହୋଇଥିଲା ଓ ସେହି ସବୁ ଆନ୍ଦୋଳନ ଯୋଗୁଁ କେତେକ ଅଞ୍ଚଳରେ ସାମାନ୍ୟ କିଛି ପରିବର୍ତ୍ତନର ଆଭାସ ମିଳିଥିଲା । କିନ୍ତୁ ଅଧିକାଂଶ ସଂସ୍କାର ପ୍ରୟାସୀ ଆନ୍ଦୋଳନ ମୁଖ୍ୟତଃ ସମାଜର କୁସଂସ୍କାର ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା ଓ ଦଳିତମାନଙ୍କର ନାଗରିକ ଅଧିକାର ଓ ମର୍ଯ୍ୟାଦା ପାଇଁ ସଂପୂର୍ଣ୍ଣ ଅଭିପ୍ରେତ ନ ଥିଲା । ବିଶେଷ କରି ବିଧବା ବିବାହ ନେଇ କଟକଣା, ସତୀଦାହ ପ୍ରଥା, ବାଲ୍ୟ ବିବାହ ପରି କେତେକ କୁତ୍ସିତ ବ୍ୟବସ୍ଥା ବିରୁଦ୍ଧରେ କେତେକ ସଂସ୍କାର ଆନ୍ଦୋଳନ ହୋଇଥିଲା । ସେହିପରି ହିନ୍ଦୁ ସମାଜରେ ନାରୀମାନଙ୍କ ପ୍ରତି ହୋଇ ଆସିଥିବା ଅକଥନୀୟ କଟକଣା ବିରୁଦ୍ଧରେ ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକମାନଙ୍କର ଦୃଷ୍ଟିକୋଣରେ ପରିବର୍ତ୍ତନ ଆସିଥିଲା । ଭକ୍ତି ଆନ୍ଦୋଳନ, ବ୍ରାହ୍ମ ସମାଜ, ଆର୍ଯ୍ୟ ସମାଜ ଇତ୍ୟାଦି ସମାଜରେ ରହିଥିବା ହୀନ ବ୍ୟବସ୍ଥା ବିରୁଦ୍ଧରେ କିଛି ଜନମତ ସୃଷ୍ଟି କରିଥିଲେ । ଜାତୀୟ କଂଗ୍ରେସର ଜନ୍ମ ସହିତ "ସାମାଜିକ ସମ୍ମିଳନୀ" ନାମରେ ସୃଷ୍ଟି ହୋଇଥିବା ଅନୁଷ୍ଠାନ ସାମାଜିକ କ୍ରାନ୍ତି ପାଇଁ ପ୍ରୟାସୀ ଥିଲେ ବି କଂଗ୍ରେସର ରକ୍ଷଣଶୀଳ ହିନ୍ଦୁମାନଙ୍କର ବିରୋଧର ସମ୍ମୁଖୀନ ହୋଇ ନ ପାରି ଏହା ମଉଳି ଯାଇଥିଲା ଜାତିପ୍ରଥା ବିରୁଦ୍ଧରେ ଏକ ଜାତୀୟ ଆନ୍ଦୋଳନ କେବେ ହେଲେ ସୃଷ୍ଟି ହୋଇପାରି ନ ଥିଲା ।

ହିନ୍ଦୁ ସମାଜ ଯୁଗ ଯୁଗ ଧରି ବିଭିନ୍ନ ଜାତିରେ ବିଭକ୍ତ ହୋଇ ରହିବା, ସମାଜରେ ସମସ୍ତ ବିବାହ ଜାତି ଭିତରେ ସଂପନ୍ନ ହେବା, ଆନ୍ତର୍ଜାତି ଭୋଜନ ବା ଗାଡ଼ି ମଟରରେ ଯାତ୍ରା ଅପବିତ୍ର ବୋଲି ଧରାଯିବା ଇତ୍ୟାଦି ବ୍ୟବସ୍ଥା ଦ୍ୱାରା ହିନ୍ଦୁ ସମାଜ ଏକ ରୁଦ୍ଧ ବ୍ୟବସ୍ଥାରେ ପରିଣତ ହୋଇ ଯାଇଥିଲା । ହିନ୍ଦୁ ସମାଜରେ କୌଣସି ସାମୂହିକ ଭାବନା ନ ଥିଲା ଓ ନୈତିକତା କେବଳ ଜାତିଭିତ୍ତିକ ହୋଇ ରହିଥିଲା । ଜଣେ ବ୍ୟକ୍ତିର ସାମାଜିକ ପରିଚୟ ବା ଭୂମିକା ତା'ର ଜାତି ଅନୁଯାୟୀ ହିଁ ସ୍ଥିରୀକୃତ ହେଉଥିଲା । ଜାତି ଜାତି ଭିତରେ ଘୃଣା ଓ ବିଦ୍ୱେଷର ବାତାବରଣ ଥିଲା । ଜାତି ଏକ ପବିତ୍ର ଅନୁଷ୍ଠାନରେ ପରିଣତ ହୋଇଥିଲା । ପ୍ରତ୍ୟେକ ଜାତି ନିଜର ଗୋଷ୍ଠୀଟି ଭିତରେ ଆବଦ୍ଧ ରହିଥିଲା ଓ ଜାତି ବାହାରେ ଏହାର ସମ୍ପର୍କ ଅତ୍ୟନ୍ତ ସୀମିତ ଥିଲା । ଉଚ୍ଚ ଜାତିର ଲୋକଙ୍କ ସାମାଜିକ ଚଳଣି,

ବ୍ୟବହାର ଓ ପୋଷାକ ପରିଧାନ ଇତ୍ୟାଦିକୁ ଅନୁକରଣ କରିବା ତଳ ଜାତିର ଲୋକଙ୍କ ପାଇଁ ସାମାଜିକ ସମ୍ମାନର ପ୍ରଶ୍ନ ଥିଲା । କିନ୍ତୁ ପରିତାପର ବିଷୟ ଯେ ଏହାକୁ ମଧ ଉଚ୍ଚ ଜାତିର ଲୋକମାନେ ବରଦାସ୍ତ କରୁନଥିଲେ । ସେମାନଙ୍କ ଚଳଣି, ରୁଚି ଓ ଅନ୍ୟାନ୍ୟ ପରମ୍ପରାକୁ ଅନ୍ୟମାନେ ଅନୁକରଣ ନ କରିବା ପାଇଁ ଶାସକମାନଙ୍କର ସହାୟତାରେ କିମ୍ବା ଆଇନର ଆଶ୍ରୟ ନେଇ ତାହା ବନ୍ଦ କରିବାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସୁତରାଂ ଜାତିଗୁଡ଼ିକ ଭିତରେ କୌଣସି ଆଦାନ ପ୍ରଦାନ ବା ସାଂସ୍କୃତିକ ବିନିମୟ ନ ଥିଲା । ପ୍ରତ୍ୟେକଟି ଜାତି ନିଜର ଖୁଆଡ଼ଟି ଭିତରେ ସୀମାବଦ୍ଧ ହୋଇ ରହିଥିଲା । ଜାତିଗତ ମାନଦଣ୍ଡରେ ନିଜ ଜାତିଠାରୁ ତଳେ ଥିବା ଅନ୍ୟ ଜାତିମାନଙ୍କୁ ତୁଳନା କରି ଜାତିର ଲୋକମାନେ ସନ୍ତୋଷ ଲାଭ କରୁଥିଲେ ଓ ଜାତିଆଣ ମାନସିକତା ଭିତରେ ସମସ୍ତେ ନିବୁଜ ହୋଇ ରହିଥିଲେ । ଏତଦ୍‌ବ୍ୟତୀତ ଏହି ରୁଦ୍ଧ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ କାହାର ସାହସ ନ ଥିଲା, କାରଣ ସାମାଜିକ ବାସନ୍ଦ ରକ୍ଷଣଶୀଳ ଲୋକଙ୍କ ହାତରେ ଏକ ଶକ୍ତିଶାଳୀ ଅସ୍ତ୍ର ହୋଇ ରହିଥିଲା । ପ୍ରତ୍ୟେକ ବ୍ୟକ୍ତି ନିଜର ପରିବାର, ଆତ୍ମୀୟ ପରିଜନ ଓ ବନ୍ଧୁବାନ୍ଧବଙ୍କ ସହିତ ମିଳିତ ହୋଇ ରହିବାକୁ ଚାହେଁ ଓ କୌଣସି ସ୍ଥିତିରେ ଏଥିରୁ ବିଚ୍ଛିନ୍ନ ହେବା ତା' ପାଇଁ ପ୍ରୀତିପଦ ନୁହେଁ । ଯଦିଓ କେହି ବ୍ୟକ୍ତି ଜାତିର କଟକଣା ବା ଅନମନୀୟତା ବିରୁଦ୍ଧରେ ପାଦ କାଢୁଥିଲା, ତେବେ ସେହି ବ୍ୟକ୍ତିକୁ ତା'ର ଜାତିର ଲୋକମାନଙ୍କ ଦ୍ୱାରା ସାମାଜିକ ବାସନ୍ଦର ସମ୍ମୁଖୀନ ହେବାକୁ ପଡୁଥିଲା । ଜଣେ ବ୍ୟକ୍ତିକୁ ସାମାଜିକ ସ୍ତରରେ ବାସନ୍ଦ କରିବାଦ୍ୱାରା ତା'ର ଜୀବନ ଦୟନୀୟ ହେଉଥିଲା । ସାମ୍ପ୍ରତିକ ସମୟ ପରି ସେତେବେଳେ ସାମାଜିକ ଗତିଶୀଳତା ନ ଥିଲା ସୁତରାଂ ଜାତିରୁ ବିତାଡ଼ିତ ହେବା ଭୟରେ ପ୍ରତ୍ୟେକ ବ୍ୟକ୍ତି ଜାତିର ନିବିଡ଼ ନିୟମକୁ ଗ୍ରହଣ କରି ବଞ୍ଚିବା ଶ୍ରେୟସ୍କର ଥିଲା ।

ଏହିପରି ଏକ ସାମାଜିକ ସ୍ଥିତିକୁ ସମ୍ମୁଖୀନ ହୋଇଥିବା ବାବାସାହେବ ଏହି ବ୍ୟବସ୍ଥା ବିରୁଦ୍ଧରେ ଜୀବନବ୍ୟାପୀ ସଂଗ୍ରାମ କରିବା ପାଇଁ ଅଣ୍ଟା ଭିଡ଼ିଥିଲେ । ନାନା ଘାତ ପ୍ରତିଘାତ ଭିତରେ ସେ ସାମାଜିକ ଦାସତ୍ୱକୁ ଦୂର କରିବା ପାଇଁ ସଂକଳ୍ପବଦ୍ଧ ହୋଇଥିଲେ । ଏଥିପାଇଁ ତାଙ୍କର ଶିକ୍ଷା, ପାଶ୍ଚାତ୍ୟ ସମାଜର ମୁକ୍ତ ପରିବେଶ ଜନିତ ଅନୁଭୂତି ଓ ସେଠିକାର ଗଣତାନ୍ତ୍ରିକ ବ୍ୟବସ୍ଥା ତାଙ୍କୁ ଅଭିନିବେଶ ଯୋଗାଉଥିଲା । ଦଳିତମାନଙ୍କର ସାମାଜିକ ଅଧିକାର ପାଇଁ ପ୍ରତ୍ୟକ୍ଷ ଭାବେ ସଂଗ୍ରାମ କରିଥିବା ବାବା ସାହେବ ପ୍ରକାରାନ୍ତରେ ହିନ୍ଦୁ ସମାଜର ଅନମନୀୟ ଜାତି ବ୍ୟବସ୍ଥା ବିରୁଦ୍ଧରେ ସାମାଜିକ ଚେତନା ସୃଷ୍ଟି ଦିଗରେ ସବୁଠାରୁ ଅଧିକ ପ୍ରଭାବଶାଳୀ ଅଟନ୍ତି ।

ଉଭୟ ସୈଦ୍ଧାନ୍ତିକ ଓ ବ୍ୟବହାରିକ ସ୍ତରରେ ସେ ହିନ୍ଦୁ ସମାଜ ବ୍ୟବସ୍ଥାକୁ ପ୍ରତିରୋଧ କରିଥିଲେ । ଜାତିପ୍ରଥାର ଉତ୍ପତ୍ତି, ବିକାଶ ଏବଂ ଜାତିମାନଙ୍କର ଗଠନ

ସମ୍ବନ୍ଧରେ ସେ ଅଧ୍ୟୟନ କରି ଏସବୁର ସାମାଜିକ, ସମାଜ-ତାତ୍ତ୍ୱିକ ଓ ଐତିହାସିକ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ଜାତିପ୍ରଥା ଶ୍ରମ ବିଭାଜନ ନିୟମ ଉପରେ ଆଧାରିତ, ଏହା ରକ୍ତର ଶୁଦ୍ଧତାକୁ ରକ୍ଷା କରିବାକୁ ଉଦ୍ଦିଷ୍ଟ, ଜାତିପ୍ରଥା ଯେଉଁ ବର୍ଣ୍ଣ ବ୍ୟବସ୍ଥାରୁ ଉତ୍ପନ୍ନ ସେହି ବର୍ଣ୍ଣ ବ୍ୟବସ୍ଥା ଏକ ସାର୍ବଜନୀନ ଆଦର୍ଶ, ଭାରତୀୟ ସମାଜର ପ୍ରାଚୀନତା ପରିପ୍ରେକ୍ଷୀରେ ଏହାର ବର୍ଣ୍ଣବ୍ୟବସ୍ଥା ଗ୍ରହଣୀୟ, ଏହା ବେଦ, ଗୀତା ଓ ସଂହିତାରେ ଉଲ୍ଲେଖ ଥିବାରୁ ଏହି ଆଦର୍ଶ ପବିତ୍ର ଇତ୍ୟାଦି ବିଚାରଗୁଡ଼ିକର ତାତ୍ତ୍ୱିକ ପର୍ଯ୍ୟାଲୋଚନା କରି ସେସବୁର ଅସାରତା, ଅଯୌକ୍ତିକତା ଓ ଅନୈତିକତା ଦର୍ଶାଇଛନ୍ତି । ଅନ୍ତତଃ ଜାତିପ୍ରଥା ଓ ଏହାର ମୂଳ ଉତ୍ସ ବର୍ଣ୍ଣ ବ୍ୟବସ୍ଥାକୁ ସେ ଯେପରି ନାନା ଦିଗରୁ ଅଧ୍ୟୟନ କରି ଏହାର ଅବାସ୍ତବ ଓ ଅନିଷ୍ଟକର ପରିଣାମ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି ତାହା ବୈଚାରିକ ସ୍ତରରେ ଏହି ବ୍ୟବସ୍ଥା ବିରୁଦ୍ଧରେ ଏକ ସୈଦ୍ଧାନ୍ତିକ ଭିତ୍ତି ଯୋଗାଇଛି ।

ଏହି ବ୍ୟବସ୍ଥାଟି ଯୁଗ ଯୁଗ ଧରି ଭାରତୀୟ ସମାଜରେ ରହିବା ପଶ୍ଚାତରେ ଏହାର ଧର୍ମୀୟ ସ୍ୱୀକୃତି ଓ ଶାସ୍ତ୍ରୀୟ ଅନୁମୋଦନ ରହି ଆସିଛି । ଏହା ଏପରି ଏକ ମାନସିକତା ସାଧାରଣରେ ସୃଷ୍ଟି କରିଛି ଯଦ୍ୱାରା ଏହି ବ୍ୟବସ୍ଥାଟି ପବିତ୍ର ଓ ଏହାର ଉଲ୍ଲଙ୍ଘନ ଏକ ଅଧର୍ମୀୟ କାର୍ଯ୍ୟ ବୋଲି ବିଶ୍ୱାସ ସୃଷ୍ଟି ହୋଇଛି । ଆମ୍ବେଦକର ଏହି ପରିପ୍ରେକ୍ଷୀରେ ଏହାକୁ ସ୍ୱୀକୃତି ଦେଇଥିବା ଧର୍ମଶାସ୍ତ୍ରକୁ ଆଲୋଚନାକୁ ନେଇ ଏହିସବୁ ଶାସ୍ତ୍ରମାନଙ୍କର ଯୌକ୍ତିକ ଆଧାରର ଅସାରତାକୁ ଦର୍ଶାଇଛନ୍ତି । ଧର୍ମ ନାମରେ ସାମାଜିକ ଅତ୍ୟାଚାର ଓ ଶୋଷଣକୁ ସ୍ଥାୟୀ କରିବା ପାଇଁ କିପରି ଉଦ୍ୟମ ହୋଇଛି ତାହା ଏ ସମ୍ବନ୍ଧରେ ଆଲୋଚନାରେ ସେ ବ୍ୟାଖ୍ୟା କରିଛନ୍ତି । ଧର୍ମପରି ଏକ ସ୍ପର୍ଶକାତର ବିଷୟକୁ ଆଧାର କରି ଓ ଧର୍ମଶାସ୍ତ୍ରକୁ ଦିବ୍ୟ ବିଧାନର ସ୍ୱୀକୃତି ଦେଇ ତାରି ମାଧ୍ୟମରେ ଏହି କୁତ୍ସିତ ସାମାଜିକ ବ୍ୟବସ୍ଥାକୁ ଧରି ରଖିବାକୁ ଯେଉଁ ପ୍ରୟାସ ହୋଇଛି ତାହାର ତାତ୍ତ୍ୱିକ ଓ ବ୍ୟବହାରିକ ଦିଗ ସକଳର ଆଲୋଚନାରୁ ସେ ଏହାର ସାମାଜିକ, ଆର୍ଥିକ, ମନସ୍ତାତ୍ତ୍ୱିକ ଓ ନୈତିକ ପରିଣାମଗୁଡ଼ିକୁ ବିଶ୍ଳେଷଣ କରିଛନ୍ତି । ଅତୀତରେ ଜାତିପ୍ରଥା ବିରୁଦ୍ଧରେ ଯେଉଁ କେତେକ ସଂସ୍କାରକ ସ୍ୱର ଉତ୍ତୋଳନ କରିଛନ୍ତି ସେମାନେ ଏହିସବୁ ଦିଗ ପ୍ରତି ଗୁରୁତ୍ୱ ଆରୋପ କରିନାହାନ୍ତି ବା ଧର୍ମ ଓ ଶାସ୍ତ୍ର ପ୍ରତି କୌଣସି ଅଙ୍ଗୁଳି ନିର୍ଦ୍ଦେଶରୁ ବିରତ ରହିଛନ୍ତି । ଫଳରେ କୌଣସି ସଂସ୍କାର ଆନ୍ଦୋଳନ ଏକ ସାମାଜିକ କ୍ରାନ୍ତି ସୃଷ୍ଟି ଦିଗରେ ସେପରି ବଳିଷ୍ଠ ଆବେଗ ସୃଷ୍ଟି କରିନାହିଁ । ଏତଦ୍‌ବ୍ୟତୀତ କୌଣସି ସାମାଜିକ ବ୍ୟବସ୍ଥାକୁ ବିରୋଧ କଲାବେଳେ ଜଣେ ସଂସ୍କାରକ ଦୁଇଟି ଅସ୍ତ୍ର ସାହାଯ୍ୟରେ ଏହା କରିଥାନ୍ତି । ପ୍ରଚଳିତ ବ୍ୟବସ୍ଥାଟି ଅନୈତିକ ତଥା ଅଯୌକ୍ତିକ ଏହି ଭାବନାକୁ ଆଧାର କରି ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ କ୍ରାନ୍ତିକାରୀ ବ୍ୟକ୍ତି ଚେଷ୍ଟା କରିଥାନ୍ତି । ଜଣେ ସଂସ୍କାରକ ବା କ୍ରାନ୍ତିକାରୀ ବ୍ୟକ୍ତିଙ୍କ ପାଖରେ ନୈତିକତା ଓ ବିଚାରଶୀଳତା ହେଉଛି ସବୁଠାରୁ ବଡ଼ ଶକ୍ତିଶାଳୀ ଅସ୍ତ୍ର ଯାହା ସାହାଯ୍ୟରେ ସେ ସମାଜର

ପ୍ରଚଳିତ ବ୍ୟବସ୍ଥାକୁ ଆକ୍ରମଣ କରିଥାନ୍ତି । ଶାସ୍ତ୍ରରେ ନୈତିକତା ଓ ଯୁକ୍ତିଶୀଳ ଭାବନାକୁ କିପରି ପ୍ରତ୍ୟାଖ୍ୟାନ କରାଯାଇଛି ତାହାର ବହୁ ଦୃଷ୍ଟାନ୍ତ ବାବାସାହେବ ଦର୍ଶାଇଛନ୍ତି । ନୈତିକତା ବା ମାନବିକ ମୂଲ୍ୟବୋଧ ଓ ଯୁକ୍ତିଶୀଳ ବିଚାର ବା ବିବେକକୁ ନ୍ୟୂନ କରାଯାଇ ଜାତି ବ୍ୟବସ୍ଥାକୁ ସମର୍ଥନ କରାଯାଇଥିବାରୁ ବାବାସାହେବ ଶାସ୍ତ୍ରମାନଙ୍କୁ ସମାଲୋଚନା କରିଛନ୍ତି । ଏତଦ୍‌ବ୍ୟତୀତ ସେ ମତ ଦିଅନ୍ତି ଯେ ଧର୍ମ କହିଲେ ଅଧିକାଂଶ ହିନ୍ଦୁ କେତେକ ଆଦେଶ ଓ ନିଷେଧ ଜନିତ ନିୟମକୁ ହିଁ ବୁଝିଥାନ୍ତି । ଧର୍ମକୁ କୌଣସି ମହତ୍ତ୍ୱର ଜୀବନଚର୍ଯ୍ୟା ଭାବରେ ଗ୍ରହଣ ନ କରି ବରଂ କେତେକ ଅନୁଜ୍ଞାକୁ ପାଳନ କରିବା ଭାବନ୍ତି । ହିନ୍ଦୁ ଶାସ୍ତ୍ରକାରମାନେ ମଧ୍ୟ କେତେକ ନିୟମକୁ ଲଦି ଦେଇ ତାହାକୁ ଗ୍ରହଣ କରିବା ଧର୍ମ ବୋଲି ଏକ ମାନସିକତା ସୃଷ୍ଟି କରିଛନ୍ତି । ଏହି ମାନସିକତାର ପରିବର୍ତ୍ତନ ପାଇଁ ବିଚାରଶୀଳ ବା ହେତୁବାଦୀ ଆଭିମୁଖ୍ୟ ଓ ଏକ ମାନବବାଦୀ ଜୀବନ ଦୃଷ୍ଟି ନେଇ ଧର୍ମଶାସ୍ତ୍ର, ପରମ୍ପରା ଓ ସାମାଜିକ ବ୍ୟବସ୍ଥାର ମୂଲ୍ୟାୟନ କରିବାକୁ ସେ ଶ୍ରେୟ ମଣିଛନ୍ତି ।

ସେହିପରି ବ୍ୟବହାରିକ ସ୍ତରରେ ଜାତିପ୍ରଥା ଓ ଜାତିଆଣ ମାନସିକତାକୁ ଦୂର କରିବାକୁ ସେ ଦୁଇଟି ପନ୍ଥାର ବ୍ୟାପକତା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରଥମତଃ ଆନ୍ତର୍ଜାତି ଭୋଜନ ଓ ଆନ୍ତର୍ଜାତି ବିବାହକୁ ଗୁରୁତ୍ୱ ଦେଇ ଜାତିଗତ ମାନସିକତାର ବିଲୋପ ଦିଗରେ ଏହାକୁ ପ୍ରାଥମିକ ପଦକ୍ଷେପ ଭାବରେ ଗ୍ରହଣ କରିବାକୁ ସେ ପ୍ରୟାସ କରିଛନ୍ତି । ସ୍ୱାଧୀନତା ଆନ୍ଦୋଳନ ପୂର୍ବରୁ ଜାତି ଜାତି ଭିତରେ ଏକତ୍ର ଭୋଜନ ଓ ଏପରିକି ସାମାଜିକ ଉତ୍ସବରେ ଏକତ୍ର ଯୋଗଦାନ ସମ୍ଭବ ନ ଥିଲା । ସୁତରାଂ ଏହି ସ୍ଥିତିରେ ଏହି ଦୁଇଟି ପଦକ୍ଷେପକୁ ସେ ପ୍ରାଥମିକତା ଦେଇଥିଲେ । ଗାନ୍ଧୀଜୀ ସ୍ୱାଧୀନତା ଆନ୍ଦୋଳନ ଅବସରରେ ହରିଜନ ସମସ୍ୟା ନେଇ ଏହି ପଦକ୍ଷେପକୁ ତାଙ୍କର ରଚନାତ୍ମକ କାର୍ଯ୍ୟସୂଚୀ ଭିତରେ ଗୁରୁତ୍ୱ ଆରୋପ କରିଥିଲେ । ମହାତ୍ମା ଓ ବାବାସାହେବଙ୍କ ମଧ୍ୟରେ କେତେକ ପ୍ରଶ୍ନ ଉପରେ ମତାନ୍ତର ଥିଲେ ବି ମହାତ୍ମା ଆନ୍ତର୍ଜାତି ବିବାହ, ଯେଉଁଥିରେ ଗୋଟିଏ ପକ୍ଷ ହରିଜନ ହୋଇଥିବ, ଉପରେ ପ୍ରାଧାନ୍ୟ ଦେଇଛନ୍ତି । ସାଂପ୍ରତିକ ସମୟରେ ଶିକ୍ଷା ଓ ଗଣମାଧ୍ୟମର ବହୁଳ ପ୍ରସାର, ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଯୋଗୁଁ ବଂଶାନୁକ୍ରମିକ ବୃତ୍ତିଗତ ବ୍ୟବସ୍ଥାର ବିଲୋପ ଓ ନୂତନ କର୍ମସଂସ୍ଥାନର ପ୍ରଚଳନ, ସାମାଜିକ ଗତିଶୀଳତାରେ ଉଲ୍ଲେଖନୀୟ ପରିବର୍ତ୍ତନ ଓ ପ୍ରଗତିଶୀଳ ବିଚାରାଦର୍ଶ ଏବଂ ସଚେତନତା ବୃଦ୍ଧି ଇତ୍ୟାଦି ସମ୍ଭବ ହୋଇଥିଲେ ବି ସମାଜର ଅଧିକାଂଶ ବିବାହ ଜାତିଗତ ବ୍ୟବସ୍ଥାରେ ସଂପନ୍ନ ହେଉଛି ଓ ଆନ୍ତର୍ଜାତି ବା ଜାତିହୀନ ବିବାହ ସମାଜରେ, ବିଶେଷ କରି ଗ୍ରାମ୍ୟ ଜୀବନଧାରାରେ, ଏବେବି ଏକ ବ୍ୟତିକ୍ରମ ବା ସୁଦୂର ପ୍ରସାରୀ ବାସ୍ତବତା ବୋଲି ଗ୍ରହଣ କରାଯାଉଛି । ଏହି ସ୍ଥିତିରେ ଆଜକୁ ସାତ, ଆଠ ଦଶନ୍ଧି ତଳେ ଜାତିହୀନ ବିବାହ ପାଇଁ ସାମାଜିକ ଚେତନା ସୃଷ୍ଟି କରିବା ଯେ ଏକ ବୈପ୍ଳବିକ ପଦକ୍ଷେପ ଥିଲା ଏହା

କୁହାଯାଇପାରେ । ଜାତୀୟ ସ୍ତରରେ ଗାନ୍ଧୀ ଓ ଆମ୍ବେଦକରଙ୍କ ପରି ବିଭିନ୍ନ ରାଜ୍ୟରେ କେତେକ କ୍ରାନ୍ତିକାରୀ ବ୍ୟକ୍ତି ସାମାଜିକ ଚେତନା ସୃଷ୍ଟି ଦିଗରେ ଜୀବନ ବ୍ୟାପୀ ପ୍ରୟାସ କରିଥିଲେ । ଆନ୍ଧ୍ରରେ ଗୋରା, ତାମିଲନାଡୁରେ ପେରିୟାର, କେରଳରେ ନାରାୟଣ ସ୍ୱାମୀ, ଓଡ଼ିଶାରେ ରମାଦେବୀ ଓ ମାଳତୀ ଦେବୀ ଇତ୍ୟାଦି ଏ କ୍ଷେତ୍ରରେ ଅବିସ୍ମରଣୀୟ ।

ବ୍ୟବହାରିକ ସ୍ତରରେ ଦ୍ୱିତୀୟ ପଦକ୍ଷେପଟି ସମାଜର ପୂଜକ ଶ୍ରେଣୀ ପ୍ରତି ପ୍ରଯୁଜ୍ୟ । ପୁରୋହିତ କାର୍ଯ୍ୟକୁ କେବଳ ବ୍ରାହ୍ମଣମାନଙ୍କର ବଂଶାନୁଗତ ଅଧିକାର ଭାବରେ ଭାରତୀୟ ସମାଜରେ ଗ୍ରହଣ କରାଯାଇଛି । ଆମ୍ବେଦକରଙ୍କ ମତରେ ଏହା ବନ୍ଦ କରାଯାଇ ଏଥିପାଇଁ ନିର୍ଦ୍ଦିଷ୍ଟ ଯୋଗ୍ୟତା ସ୍ଥିର କରାଯିବା ଆବଶ୍ୟକ । କୌଣସି ବ୍ୟକ୍ତି ଏହି ସାମର୍ଥ୍ୟ ବା ଯୋଗ୍ୟତା ହାସଲ କରିପାରିଲେ ସେ ପୂଜକ ଭାବରେ ଧାର୍ମିକ ସଂସ୍କାର କାର୍ଯ୍ୟ କରିପାରିବାକୁ ହକଦାର ହେବା ଦରକାର । କିନ୍ତୁ ହିନ୍ଦୁ ସମାଜ ବ୍ୟବସ୍ଥାରେ ଜଣେ ବ୍ୟକ୍ତି ମାନସିକ ସ୍ତରରେ ନିର୍ବୋଧ ଓ ନୈତିକ ଦୃଷ୍ଟିରୁ ନଷ୍ଟ ସ୍ୱଭାବର ହୋଇ ମଧ୍ୟ ସେ ବ୍ରାହ୍ମଣ ଜାତିରେ ଜନ୍ମ ହୋଇଥିବାରୁ ଯେପରି ଧାର୍ମିକ ସଂସ୍କାର ବା ମନ୍ଦିରରେ ପୂଜକ ହୋଇ ପାରୁଛି ତାହାକୁ ନିୟମଦ୍ୱାରା ବନ୍ଦ କରାଯିବା ଉଚିତ । ଅଧିକନ୍ତୁ ପ୍ରତ୍ୟେକ ପୂଜକ ନିର୍ଦ୍ଦିଷ୍ଟ ଯୋଗ୍ୟତାର ଅଧିକାରୀ ହେବା ସହିତ ନିଜର କାର୍ଯ୍ୟ ପ୍ରତି ଉତ୍ତରଦାୟୀ ରହିବା ଆବଶ୍ୟକ । ଏହି ଅଧିକାର ଜାତି ନିର୍ବିଶେଷରେ ଯୋଗ୍ୟତା ତଥା ନୈତିକ ଆଚରଣ ଉପରେ ପର୍ଯ୍ୟବସିତ ହେବା ଉଚିତ । ଅର୍ଥାତ୍ ପ୍ରତ୍ୟେକ ଜାତିର ବ୍ୟକ୍ତିଙ୍କୁ ପୁରୋହିତ କାର୍ଯ୍ୟ କରିବାର ଅଧିକାର ମିଳିପାରିଲେ ହିନ୍ଦୁସମାଜ ବ୍ୟବସ୍ଥାଟି ଉନ୍ନତ ହେବା ସହିତ ଏହା ଏକ ଗଣତାନ୍ତ୍ରିକ ଭିତ୍ତି ନେଇପାରିବ ।

ଆମ୍ବେଦକର ଜାତି ବ୍ୟବସ୍ଥାକୁ ବିରୋଧ କରିବା ପଶ୍ଚାତରେ ତାଙ୍କର ବ୍ୟକ୍ତିଗତ ଓ ମନସ୍ତାତ୍ତ୍ୱିକ କାରଣ ପ୍ରତି ହୁଏତ କେହି ପ୍ରଶଂସକ ବା ସମାଲୋଚକ ଦୃଷ୍ଟି ଆକର୍ଷଣ କରିପାରନ୍ତି । ସେ ଏକ ଦଳିତ ଶ୍ରେଣୀରେ ଜନ୍ମ ହୋଇଥିଲେ ଓ ତାଙ୍କର ପ୍ରତିଭା ଓ ବୌଦ୍ଧିକ ସାମର୍ଥ୍ୟ ସତ୍ତ୍ୱେ ସାମାଜିକ ତାଡନାର ଶିକାର ହୋଇଥିଲେ । ସୁତରାଂ ସେ ସମାଜର ଏହି ଅମାନୁଷିକ ବ୍ୟବସ୍ଥାକୁ ଦୂର କରିବା ପାଇଁ ସଂକଳ୍ପ ନେଇଥିଲେ । ଏସବୁକୁ ଅସ୍ୱୀକାର କରିହେବ ନାହିଁ । କିନ୍ତୁ ଜାତି ବ୍ୟବସ୍ଥାକୁ ସମାଲୋଚନା କରି ଦଳିତମାନଙ୍କ ଅଧିକାର ପାଇଁ ଜୀବନବ୍ୟାପୀ ସଂଗ୍ରାମ ଭିତରେ ସେ ଗଣତାନ୍ତ୍ରିକ ଜୀବନଧାରା ଓ ସାମାଜିକ ନ୍ୟାୟ ପରି ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ପ୍ରୟାସ କରିଛନ୍ତି । ଏହି ମୂଲ୍ୟଚୟ ଯେକୌଣସି ସଭ୍ୟ ରାଷ୍ଟ୍ରର ଈପ୍‌ସିତ ଲକ୍ଷ୍ୟ ଭାବରେ ସଂପ୍ରତି ଅଧିକରୁ ଅଧିକ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିବାରେ ଲାଗିଛି ।

ଗଣତନ୍ତ୍ରକୁ ସେ କେବଳ ଏକ ରାଜନୈତିକ ଶାସନ ବ୍ୟବସ୍ଥା ଭିତରେ ସୀମିତ ନ ରଖି ଏହାକୁ ଏକ ସଭ୍ୟ ଜୀବନଧାରା ଭାବରେ ଗ୍ରହଣ କରିଛନ୍ତି । ସାମୂହିକ

ଜୀବନଧାରାରେ ପରସ୍ପର ସହ ଭ୍ରାତୃତ୍ୱପୂର୍ଣ୍ଣ ସମ୍ବନ୍ଧ ଓ ଅନ୍ୟର ମର୍ଯ୍ୟାଦାବୋଧ ପ୍ରତି ସମ୍ମାନବୋଧ ହିଁ ତାଙ୍କ ବିଚାରରେ ଗଣତାନ୍ତ୍ରିକ ଆଚରଣ ବା ଜୀବନଦୃଷ୍ଟି । ସମାଜରେ ଏହି ମୂଲ୍ୟବୋଧର ପ୍ରସାର ନ ହେଲେ ବା ସାମାଜିକ ମନସ୍ତତ୍ତ୍ୱରେ ଏହା ପ୍ରତି ଅସ୍ୱୀକୃତି ରହିଥିଲେ ଗଣତନ୍ତ୍ର ଏକ ରାଜନୈତିକ ବ୍ୟବସ୍ଥା ଭାବରେ ସଫଳ ହୋଇପାରିବ ନାହିଁ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ସଫଳତା ସାମାଜିକ ଜୀବନଧାରା ଉପରେ ନିର୍ଭରଶୀଳ । ବିଭିନ୍ନ ଦେଶର ସାମାଜିକ ଓ ରାଜନୈତିକ ଇତିହାସର ଦୃଷ୍ଟାନ୍ତ ଦେଇ ସେ ଏହି ସମ୍ବନ୍ଧକୁ ଦର୍ଶାଇଛନ୍ତି । ଯେଉଁ ଦେଶର ସାମାଜିକ ଜୀବନ ଭିତରେ ଗଣତାନ୍ତ୍ରିକ ଆଚରଣର ପ୍ରୟୋଗ ଯେତେ ଅଧିକ ସେଠାରେ ଗଣତନ୍ତ୍ର ସେତିକି ସଫଳ । ଅନ୍ୟଥା ଗଣତନ୍ତ୍ର ଏକ ଔପଚାରିକ ଆଦର୍ଶ ଭାବରେ ହୁଏତ ସମ୍ବିଧାନର ପୃଷ୍ଠା ମଣ୍ଡନ କରିପାରେ କିନ୍ତୁ ଏହା ସାମାଜିକ ଲକ୍ଷ୍ୟ ହାସଲ କରିପାରିବ ନାହିଁ ବା ନାଗରିକଙ୍କର ଜୀବନରେ ଗୁଣାତ୍ମକ ପରିବର୍ତ୍ତନ ଆଣିପାରିବ ନାହିଁ ।

ଦ୍ୱିତୀୟରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ସଂପ୍ରତି ଯେକୌଣସି ଏକ ଜନମଙ୍ଗଳକାରୀ ରାଷ୍ଟ୍ରର ପ୍ରଧାନ ଲକ୍ଷ୍ୟ । ସମାଜର ସମସ୍ତ ନାଗରିକଙ୍କୁ ସମାନ ସୁବିଧା ଯୋଗାଇଦେବା, ଆଇନ ଦୃଷ୍ଟିରେ ସମସ୍ତ ନାଗରିକଙ୍କର ସମାନ ଅଧିକାର ରହିବା, ଯେକୌଣସି ପ୍ରକାର ଶୋଷଣ ଓ ଅତ୍ୟାଚାରକୁ ପ୍ରତିହତ କରିବା ଓ ସମାଜର ଲୋକମାନଙ୍କ ଭିତରେ ଏକ ଭାତୃତ୍ୱପୂର୍ଣ୍ଣ ପରିବେଶ ସୃଷ୍ଟି କରିବା ହିଁ ସାମାଜିକ ନ୍ୟାୟ ପ୍ରାପ୍ତି ଦିଗରେ କେତେକ ମୌଳିକ ଆଭିମୁଖ୍ୟ ଅଟେ । ମୋଟ ଉପରେ କହିଲେ ସମତା, ସ୍ୱାତନ୍ତ୍ରତା ଓ ଭ୍ରାତୃତ୍ୱ ହିଁ ସାମାଜିକ ନ୍ୟାୟର ମୂଳ ଆଧାର ହୋଇପାରିବ । ଏକ ରାଷ୍ଟ୍ରର ସୁବିଧା, ସୁଯୋଗ ଓ ସଫଳତା ଦ୍ୱାରା ସମସ୍ତ ନାଗରିକ ଉପକୃତ ଓ ଅଂଶୀଦାର ହୋଇପାରିବା ସାମାଜିକ ନ୍ୟାୟ ହାସଲ ଦିଗରେ ଏକ ପ୍ରଧାନ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି ପ୍ରତ୍ୟେକ ବ୍ୟକ୍ତି ନିଜର ସାମର୍ଥ୍ୟକୁ ଉପଯୁକ୍ତ ଭାବରେ ବିକାଶ କରାଇବା ବା ନିଜ ଜୀବନର ଗୁଣାତ୍ମକ ମୂଲ୍ୟ ହାସଲ କରିବାରେ ସ୍ୱାଧୀନତା ପାଇବା ଆବଶ୍ୟକ । ସମାଜ ସେଥିରୁ ବ୍ୟକ୍ତିକୁ ବଞ୍ଚିତ କରିବା କିମ୍ବା ବ୍ୟକ୍ତିକୁ ବୃତ୍ତିଗତ, ସଂପତ୍ତିଗତ ବା ଆତ୍ମରକ୍ଷା ପାଇଁ ଅଧିକାର ନ ଦେବା ସାମାଜିକ ନ୍ୟାୟର ପ୍ରତିକୂଳ ଅଟେ । ସେହିପରି ସମାଜର ପ୍ରତ୍ୟେକ ନାଗରିକଙ୍କୁ ଏକ ମର୍ଯ୍ୟାଦାବାନ ବ୍ୟକ୍ତି ଭାବରେ ସମ୍ମାନ କରିବାର ମାନସିକତା ସାମାଜିକ ଜୀବନ ପ୍ରବାହରେ ସ୍ୱୀକୃତ ହେଉଥିବା ଦରକାର । ''ମୁଁ ସମାଜରେ ଯେଉଁ ସମ୍ମାନର ଅଧିକାରୀ ହେବାକୁ ଆଶା ପୋଷଣ କରୁଛି, ପ୍ରତି ବଦଳରେ ସମାଜର ଅନ୍ୟ ନାଗରିକଙ୍କୁ ମଧ ମୁଁ ସେହିପରି ସମ୍ମାନ ଦେବା ଆବଶ୍ୟକ''– ଏହାହିଁ ହେଉଛି ଭ୍ରାତୃତ୍ୱ ଭାବନାର ପ୍ରତୀକ ।

କିନ୍ତୁ ଜାତିପ୍ରଥା ଏହିସବୁ ମୂଲ୍ୟଚୟର ପରିପନ୍ଥୀ । ଜାତିଭିତ୍ତିକ ସମାଜ ବ୍ୟବସ୍ଥାରେ ଗଣତାନ୍ତ୍ରିକ ଭାବନା ଓ ସାମାଜିକ ନ୍ୟାୟ ଅର୍ଥଶୂନ୍ୟ । ଅବଶ୍ୟ ସାମାଜିକ

ନ୍ୟାୟ ନିରଙ୍କୁଶ ଭାବରେ କୌଣସି ସମାଜରେ ପ୍ରତିଫଳିତ ହେବା ସମ୍ଭବ ନୁହେଁ । ହୁଏତ ଏ କ୍ଷେତ୍ରରେ ରାଷ୍ଟ୍ରମାନଙ୍କ ମଧ୍ୟରେ ପାର୍ଥକ୍ୟ ରହିବା ଅସମ୍ଭବ ନୁହେଁ । ଏପରିକି ସାମାଜିକ ନ୍ୟାୟ ପ୍ରତି ଅଙ୍ଗୀକାର ଥିବା ଏକ ରାଷ୍ଟ୍ରରେ ଶୋଷଣ ରହିପାରେ ଓ ବସ୍ତୁତଃ ପ୍ରତ୍ୟେକ ସମାଜରେ ଶୋଷଣ ଭିନ୍ନ ଭିନ୍ନ ଭାବରେ ଥିବା କେହି ଦର୍ଶାଇ ପାରନ୍ତି । କିନ୍ତୁ ଜାତିପ୍ରଥା ସାମାଜିକ ଶୋଷଣ ସହ ଅନ୍ୟକୁ ଅସହାୟ କରି ରଖିବାକୁ ଉଦ୍ଦିଷ୍ଟ ହୋଇ ରହିଆସିଛି । ଭାରତବର୍ଷରେ କେତେକ ପ୍ରଭାବଶାଳୀ ବ୍ୟକ୍ତି ଏହି ଶୋଷଣ ଓ ଅତ୍ୟାଚାରକୁ ସ୍ଥାୟୀ କରିବାକୁ ଜାତିକୁ ଏକ ଅଲଙ୍ଘନୀୟ ଅନୁଷ୍ଠାନରେ ପରିଣତ କରିଛନ୍ତି । ଆମ୍ବେଦକରଙ୍କ ମତରେ ଯଦିବା ଯୁଗ ଯୁଗ ଧରି ସମସ୍ତେ ଏହି ବ୍ୟବସ୍ଥାର ଗୋଲାମ ହୋଇଛନ୍ତି କିନ୍ତୁ ସବୁ ଗୋଲାମଙ୍କର ସାମାଜିକ ସ୍ତର ସମାନ ହୋଇ ରହିନାହିଁ ।

ଜାତି ବ୍ୟବସ୍ଥାର ପ୍ରତିରୋଧ କରି ଏହାର ବିଲୋପ ପାଇଁ ପରାଧୀନ ଭାରତରେ ଆମ୍ବେଦକର ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲେ ତାହା ଯଥାର୍ଥରେ ଏକ ବୈପ୍ଳବିକ ପଦକ୍ଷେପ ଥିଲା । ଆମ ସମାଜରେ ଗଣତନ୍ତ୍ର ଓ ସାମାଜିକ ନ୍ୟାୟର ଭିତ୍ତିକୁ ସୁଦୃଢ଼ କରିବା ପାଇଁ ଜାତିପ୍ରଥା ଯେ ସର୍ବଶ୍ରେଷ୍ଠ ଅନ୍ତରାୟ ଏହା ଭାରତର ବହୁ ରାଷ୍ଟ୍ରବାଦୀ ଚିନ୍ତାନାୟକ ଅନୁଭବ କରିଛନ୍ତି । କିନ୍ତୁ ଆମ୍ବେଦକରଙ୍କର ଏ କ୍ଷେତ୍ରରେ ବୈଚାରିକ ସ୍ୱଚ୍ଛତା ଓ ସୈଦ୍ଧାନ୍ତିକ ତଥା ବ୍ୟବହାରିକ ମାର୍ଗଦର୍ଶନ ପ୍ରକୃତରେ ପ୍ରଣିଧାନଯୋଗ୍ୟ । ସମସାମୟିକ ଭାରତବର୍ଷରେ ସେ ଯଥାର୍ଥରେ ଥିଲେ ସବୁଠାରୁ ବଡ଼ ବିପ୍ଳବୀ ଓ ସାମାଜିକ କ୍ରାନ୍ତିର ବାର୍ତ୍ତାବହ । ଅର୍ଥାତ୍ ମାନବିକ ମର୍ଯ୍ୟାଦା ଓ ଅଧିକାରର ଜଣେ ଅତନ୍ଦ୍ର ପ୍ରହରୀ ଓ ସମାଜର ସବୁଠାରୁ ଦୁସ୍ଥ ମଣିଷର ତ୍ରାଣକର୍ତ୍ତା ।

■■

# କୁସଂସ୍କାର : ଏକ ଅଧ୍ୟୟନ

କୁସଂସ୍କାର ଜ୍ଞାନର ପରିପନ୍ଥୀ । ଯେଉଁ ସମାଜରେ ଏହା ଯେତିକି ଅଧିକ ସେହି ସମାଜ ସେତିକି ପଛୁଆ । ଅବଶ୍ୟ ଅତ୍ୟନ୍ତ ସଭ୍ୟ ଓ ପ୍ରଗତିଶୀଳ ସମାଜ ଯେ କୁସଂସ୍କାରରୁ ସଂପୂର୍ଣ୍ଣ ମୁକ୍ତ ଏହା କୁହାଯାଇ ପାରିବ ନାହିଁ । ବିଭିନ୍ନ ସମାଜରେ ଭିନ୍ନ ଭିନ୍ନ ଧାରାରେ ଓ ପରିମାଣରେ କୁସଂସ୍କାର ଦୃଷ୍ଟିଗୋଚର ହୋଇଥାଏ । କିନ୍ତୁ ଯେକୌଣସି ସଭ୍ୟ ସମାଜରେ କୁସଂସ୍କାରର ବିଲୋପ ସାଧନ ପାଇଁ ଉଦ୍ୟମ ହେବା ବାଞ୍ଛନୀୟ । କୁସଂସ୍କାର ବିରୁଦ୍ଧରେ ସାମାଜିକ ସଚେତନତା ଯେତିକି ଅଧିକ, ସମାଜ ସେତିକି ପ୍ରଗତିଶୀଳ, ଅଥଚ ଯେଉଁଠାରେ ଏହି ସଚେତନତା କମ୍ ତାହା ଆନୁପାତିକ ଭାବରେ ସେତିକି କ୍ଷୟଶୀଳ । ଏକ ସଭ୍ୟ ସମାଜରେ ଜ୍ଞାନର ବିକାଶ ପାଇଁ ଦେଶର ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ, ବୈଜ୍ଞାନିକ ଗବେଷଣା ପ୍ରତିଷ୍ଠାନ ଇତ୍ୟାଦି ଜରିଆରେ ପ୍ରୟାସ କରାଯାଏ । ବ୍ୟକ୍ତିଗତ ସାଧନା ଓ ସଂଗଠିତ ଉଦ୍ୟମଦ୍ୱାରା ବୌଦ୍ଧିକ ଦିଗନ୍ତ କ୍ରମବର୍ଦ୍ଧିଷ୍ଣୁ ଭାବରେ ପ୍ରସାରିତ ହେବା ଦେଖାଯାଏ । ପରନ୍ତୁ ସାମାଜିକ ପରିବେଶ ଜ୍ଞାନର ବିକାଶ ପରିବର୍ତ୍ତେ ଯଦି ଗଢ଼ିବାଦ, ଅନ୍ଧବିଶ୍ୱାସ, କୁସଂସ୍କାର, ରକ୍ଷଣଶୀଳ ଜନିତ ରୁଦ୍ଧ ମାନସିକତା ଆଦି ବିକାଶ ଦିଗରେ ସହାୟକ ହୁଏ ତେବେ ସମାଜର ଗୁଣାତ୍ମକ ଅଭିବୃଦ୍ଧି ପରିବର୍ତ୍ତେ ପଶ୍ଚାତଗତି ହୋଇଥାଏ । ଯେଉଁ ସମାଜରେ ବିଚାରଶୀଳତା ପରିବର୍ତ୍ତେ କୁସଂସ୍କାର ସାଧାରଣ ଜୀବନ ପ୍ରବାହରେ ଅଧିକ ପ୍ରସାର ଲାଭ କରୁଥାଏ ତାହା କ୍ଷୟଶୀଳ ହୋଇଥାଏ । ପୁନଶ୍ଚ ଅତୀତର ସମାଜରେ କୁସଂସ୍କାର ନିର୍ଦ୍ଦିଷ୍ଟ ପରିସରରେ ସୀମାବଦ୍ଧ ହୋଇ ରହୁଥିବା ବେଳେ ସଂପ୍ରତି ଏହାର ବ୍ୟାପକତା ଦୃଷ୍ଟିଗୋଚର ହୁଏ । ସଂପ୍ରତି ଗଣମାଧ୍ୟମ ଓ ସମ୍ବାଦପତ୍ରର ବହୁଳ ପ୍ରସାର ଯୋଗୁଁ କୁସଂସ୍କାର ଶୀଘ୍ର ବ୍ୟାପକ ହୋଇଥାଏ ।

କିନ୍ତୁ କୁସଂସ୍କାର କହିଲେ କ'ଣ ବୁଝାଏ ? ଏହାର କିଛି ସାଧାରଣ ବା ସାର୍ବିକ ସଂଜ୍ଞା ରହିଛି କି ? କୁସଂସ୍କାର ବା superstitionର ଅର୍ଥ ଅକ୍ସଫୋର୍ଡ ଅଭିଧାନରେ ଦିଆଯାଇଛି,"......credulity regarding the supernatural, irrational fear of the unknown or mysterious, misdirected reverence; a religion

or practice or particular opinion based on such tendencies." ଅର୍ଥାତ୍ କୁସଂସ୍କାର ହେଉଛି ଆଧିଦୈବିକ ଶକ୍ତିର୍ଗ୍ର ଅସଦିଚ୍ଛା ବିଶ୍ୱାସ, ଅଜ୍ଞେୟ ଶକ୍ତି ପାଇଁ ଅହେତୁକ ଭୟ, ମିଥ୍ୟା ବା ରହସ୍ୟମୟ ଭକ୍ତି ଓ ସେହି ଭୟ ଯୋଗୁଁ କରୁଥିବା ଧର୍ମୀୟ ଉପାସନା ଓ କୌଣସି ଆଧାର ନ ଥାଇ ପୋଷଣ କରୁଥିବା କେତେକ ମତ । ସୁତରାଂ କୁସଂସ୍କାରର ଭିତ୍ତି ଅନ୍ଧବିଶ୍ୱାସ, ଭୟ, ଅହେତୁକ ମନୋଭାବ ଓ ଚିନ୍ତାଶୂନ୍ୟତା ଉପରେ ଗଢ଼ି ଉଠିଥାଏ ।

ମଣିଷ ନିଜର ଅନୁଭୂତି, ଶିକ୍ଷା ଓ ଜ୍ଞାନଦ୍ୱାରା ସାମାଜିକ ପରିସ୍ଥିତି ଓ ପ୍ରାକୃତିକ ଘଟଣାବଳୀକୁ ବୁଝିବାରେ ସମର୍ଥ ହୁଏ । କେତେକ ବ୍ୟକ୍ତି କୌତୂହଳୀ ହୋଇ ବିଭିନ୍ନ ବିଷୟ ଜାଣିବାକୁ ଅନୁସନ୍ଧାନରେ ବ୍ରତୀ ହୁଅନ୍ତି । ଜ୍ଞାନର ବିକାଶ ପଛରେ ଅନୁସନ୍ଧିତ୍ସୁ ଓ ଦୁଃସାହସୀ ବ୍ୟକ୍ତିଙ୍କର ଅବଦାନ ଥାଏ । କିନ୍ତୁ କୌତୂହଳ ପ୍ରବଣତାକୁ ପରିହାର କରି ଆଧିଦୈବିକ ଶକ୍ତିରେ ଅହେତୁକ ଭୟ ଓ ବିଶ୍ୱାସ ଯୋଗୁଁ କେତେକ କୁସଂସ୍କାର ଉଦ୍ରେକ ହୋଇଥାଏ । ଯୁକ୍ତିଶୀଳ ଆଧାର ନ ଥାଇ ଅବାନ୍ତର ବିଶ୍ୱାସ ସକଳ ଉପରେ ଆସ୍ଥା ସ୍ଥାପନ କରିବାକୁ ଅନ୍ଧ ବିଶ୍ୱାସ କୁହାଯାଏ । ଅଜ୍ଞତା ଯୋଗୁଁ କେତେକ ଭାବନା ବା ଦୃଷ୍ଟିକୋଣ ପରମ୍ପରାକ୍ରମେ ସମାଜରେ ଚଳି ଆସି ମନସ୍ତାତ୍ତ୍ୱିକ ସ୍ତରରେ ବଦ୍ଧମୂଳ ହୋଇଯାଏ, ଯଦ୍ୱାରା ସେସବୁର ପ୍ରଭାବ ସହଜରେ ସମାଜରୁ ଦୂର ହୋଇପାରେ ନାହିଁ । ସେହିପରି ପ୍ରାଚୀନ ଶାସ୍ତ୍ର, ଧର୍ମଗ୍ରନ୍ଥ ଓ ପୁରାଣ ଇତ୍ୟାଦିରେ ଏପରି କେତେକ ଚମତ୍କାର କାଳ୍ପନିକ ଘଟଣାର ବର୍ଣ୍ଣନା ଦେଖିବାକୁ ମିଳେ ଯାହାକୁ ସାଧାରଣ ବ୍ୟକ୍ତି ବିଶେଷ ସତ୍ୟ ବୋଲି ଗ୍ରହଣ କରିନିଅନ୍ତି । ପୁନଶ୍ଚ ସାମାଜିକ ପ୍ରଭାବ ଥିବା କେତେକ ବ୍ୟକ୍ତିଙ୍କର କୁସଂସ୍କାର ଜନିତ ବିଶ୍ୱାସ ବା ଆଚରଣକୁ ଅନ୍ୟମାନେ ଅନୁକରଣ କରିବାଦ୍ୱାରା କୁସଂସ୍କାର ବ୍ୟାପିଥାଏ । ନିଜକୁ ଅବତାର, ସିଦ୍ଧପୁରୁଷ, ଦିବ୍ୟ ଦୃଷ୍ଟିର୍ର ଅଧିକାରୀ ଆଦି କହି ଓ ଚମତ୍କାରିତା ଦେଖାଇ ଜନଗଣଙ୍କ ଭିତରେ ନାନା ଅହେତୁକ ଭାବନା ସୃଷ୍ଟି କରିଥାନ୍ତି । ନିଜର ପ୍ରତିଷ୍ଠା ପାଇଁ ଯୋଜନାବଦ୍ଧ ଭାବରେ ସମାଜର ପ୍ରଭାବଶାଳୀ ବ୍ୟକ୍ତିଙ୍କ ମାଧ୍ୟମରେ ସେମାନେ ଅନ୍ଧବିଶ୍ୱାସର ପ୍ରସାର କରିଥାନ୍ତି । କେତେକ ସମ୍ବାଦପତ୍ର ଓ ଗଣମାଧ୍ୟମ ଏପରି କେତେକ କୁସଂସ୍କାର ଜନିତ ସମ୍ବାଦ ପ୍ରକାଶ କରନ୍ତି ଯାହା ଅନ୍ଧବିଶ୍ୱାସର ପ୍ରସାର ଦିଗରେ ସାହାଯ୍ୟ କରିଥାଏ । ଏହିପରି ନାନା କାରଣ ମଧ୍ୟଦେଇ ସମାଜରେ କୁସଂସ୍କାର ପ୍ରସାର ଲାଭ କରିଥାଏ ।

କୁସଂସ୍କାରର ପରିସର ବହୁ ବ୍ୟାପକ ମନେହୁଏ । ଏହା ଖାଦ୍ୟ, ପୋଷାକ, ଶୟନ, ଯାତ୍ରା, ବ୍ୟବସାୟ, ବିବାହ, ଗର୍ଭଧାରଣ, ଜନ୍ମ,ମୃତ୍ୟୁ, ରୋଗ, ଚାଷବାସ, ବୃତ୍ତି, ପ୍ରସାଧାନ, ଦାନ ଇତ୍ୟାଦି ନାନା କ୍ଷେତ୍ରରେ ରହିବା ଦେଖାଯାଏ । କେତେକ ବାର ବା ତିଥିରେ ନିର୍ଦ୍ଦିଷ୍ଟ ଖାଦ୍ୟ ନ ଖାଇବା, ନୂଆ ବସ୍ତ୍ର ପରିଧାନ କରିବା ପାଇଁ ତିଥିବାର ଦେଖିବା

ବା ସେଥିରେ ହଳଦି ଲଗାଇବା, ନିର୍ଦ୍ଦିଷ୍ଟ ଦିଗକୁ ମୁଣ୍ଡକରି ଶୋଇବା, ଯାତ୍ରା ସମୟରେ ବେଳ କାଳ ଦେଖି ବାହାରିବା ଓ ନିଶ୍ୱାସ-ପ୍ରଶ୍ୱାସ ଦେଖି ଗୋଡ଼ ବାହାର କରିବା, କେତେକ ବାର ବା ତିଥିରେ ବାଳ ବା ଦାଢ଼ି ଖିଅର ନ ହେବା, ଗୃହ ନିର୍ମାଣ ବା ବିବାହ ଇତ୍ୟାଦି କାର୍ଯ୍ୟ ପାଇଁ ଶୁଭ ଲଗ୍ନ ବାହାର କରିବା, ରୋଗରେ ଆକ୍ରାନ୍ତ ହେଲେ ଗ୍ରହ ଶାନ୍ତି କରିବା, ପରୀକ୍ଷା ବା ସାକ୍ଷାତକାର ପାଇଁ ଗଲାବେଳେ ପୂର୍ଣ୍ଣ କୁମ୍ଭ ଦେଖି ଯିବା ଇତ୍ୟାଦି ଅସଂଖ୍ୟ ଉଦାହରଣ ଦିଆଯାଇପାରେ । ସେହିପରି କେତେକ ଜୀବ ବା ଜନ୍ତୁଙ୍କର ଶବ୍ଦ ବା ଦୃଶ୍ୟକୁ ଶୁଭ ଓ ଅନ୍ୟ କେତେକ ଜୀବଙ୍କୁ ଅଶୁଭ, କେତେକ ସଂଖ୍ୟାକୁ ପବିତ୍ର ଓ ଅନ୍ୟ ସଂଖ୍ୟାକୁ ଅପବିତ୍ର, କେତେକ ବସ୍ତୁକୁ ପୁଣ୍ୟ ବୋଲି ଗ୍ରହଣ କରିବା ଇତ୍ୟାଦି ନାନା ଅହେତୁକ ବିଶ୍ୱାସ ରହିବା ଦେଖାଯାଏ । ଏସବୁ ବିଶ୍ୱାସ ବିଭିନ୍ନ ସାମାଜିକ ପରିବେଶରେ ଥାଏ ଓ ସେଗୁଡ଼ିକ ଧର୍ମ, ସ୍ଥାନ, କାଳ ଭେଦରେ ପୃଥକ ପୃଥକ ହୋଇଥାଏ । କେତେକ କାର୍ଯ୍ୟ– ତାହା ବ୍ୟକ୍ତିଗତ ହେଉ ବା ସାମୂହିକ ହେଉ– ପୁରୁଷାନୁକ୍ରମେ କରାଯାଉଥିଲେ ତାହା ଅବଚେତନ ସ୍ତରରେ ବଦ୍ଧମୂଳ ହୋଇଯାଏ । ପରମ୍ପରା ରକ୍ଷାକରି ତାହାକୁ ଅତୀତର ବିଧି ଅନୁଯାୟୀ କରାଯାଏ ଅଥଚ ସେସବୁର କୌଣସି ଉପଯୋଗିତା ନ ଥାଏ । ଏହିପରି କେତେକ କୁସଂସ୍କାର ପରମ୍ପରା କ୍ରମରେ ସାମାଜିକ ଜୀବନରେ ଚଳି ଆସିଥାଏ ।

ସମାଜରେ ଏପରି କେତେକ କୁସଂସ୍କାର ଦେଖାଯାଏ ଯାହା ବିଜ୍ଞାନର ଭିତ୍ତିକୁ ଆହ୍ୱାନ ଦେଇଥାଏ । ପ୍ରତିଷ୍ଠିତ ପ୍ରାକୃତିକ ନିୟମକୁ ବିରୁଦ୍ଧାଚରଣ କରି ସେହି କୁସଂସ୍କାର ଥାଏ । ଶୂନ୍ୟରୁ ବସ୍ତୁ ସୃଷ୍ଟି ହେବା ସମ୍ଭବ, ପ୍ରାର୍ଥନାଦ୍ୱାରା ବର୍ଷା କରାଯାଇ ପାରିବ, ଯୋଗ ଶକ୍ତିଦ୍ୱାରା ମାଧ୍ୟାକର୍ଷଣ ଶକ୍ତିକୁ ଉଲ୍ଲଙ୍ଘନ କରିହେବ, ଆଧ୍ୟାତ୍ମିକ ଶକ୍ତିଦ୍ୱାରା ଜ୍ୱର ସମ୍ବେଦନ ସାମର୍ଥ୍ୟ ଆସିପାରିବ ଓ ଆଗତ ଭବିଷ୍ୟତ ଏବଂ ଅତୀତ ଦୃଷ୍ଟିଗୋଚର ହେବ, ମନ୍ତ୍ରଦ୍ୱାରା ଶରୀର ଭିତରୁ ବିଷାକ୍ତ ବସ୍ତୁକୁ ନିର୍ଗତ କରିହେବ, ସିଦ୍ଧି ପ୍ରାପ୍ତ ହେଲେ ଜଳ ଉପରେ ଚାଲିହେବ, ଧ୍ୟାନଦ୍ୱାରା ଭୂମି ଉପରୁ ଶୂନ୍ୟକୁ ଉଠିହେବ ଇତ୍ୟାଦି ବିଶ୍ୱାସଗୁଡ଼ିକ ସମାଜରେ ଦେଖାଯାଏ । ସେହିପରି କେତେକ ବିଶ୍ୱାସର ବୈଜ୍ଞାନିକ ଭିତ୍ତି ଥିବା ବେଳକେ ଯୁକ୍ତି କରାଯାଏ । ଫଳିତ ଜ୍ୟୋତିଷ ବା ସାମୁଦ୍ରିକ ବିଜ୍ଞାନ ସମ୍ମତ ବୋଲି ଏକ ସାଧାରଣ ବିଶ୍ୱାସ ସମାଜରେ ଥିବା ଦେଖାଯାଏ । ବିଜ୍ଞାନ ବସ୍ତୁନିଷ୍ଠ ପଦ୍ଧତି ଅବଲମ୍ବନରେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣଦ୍ୱାରା ଘଟଣାବଳୀକୁ ବିଶ୍ଳେଷଣ କରି କାର୍ଯ୍ୟକାରଣ ନିୟମ ଅବଲମ୍ବନରେ ସାମାନ୍ୟୀକରଣ କରିଥାଏ । ତାହାଦ୍ୱାରା ପ୍ରାକୃତିକ ନିୟମରାଜି କ୍ଷେତ୍ରରେ ଏକ ବ୍ୟତିକ୍ରମ ବିହୀନ କ୍ରମ ପ୍ରତିଷ୍ଠା ହୁଏ ଯାହା ସକଳ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଦେଖାଯାଏ । ପ୍ରକୃତିରେ ସୃଷ୍ଟ ପ୍ରତ୍ୟେକ ଘଟଣା ପଶ୍ଚାତରେ ପ୍ରାକୃତିକ କାରଣ ଥାଏ ଓ ସେହି ପ୍ରାକୃତିକ କାରଣ ବା ନିୟମରାଜିକୁ ନିର୍ଦ୍ଦିଷ୍ଟ ପ୍ରଣାଳୀ ସାହାଯ୍ୟରେ ବ୍ୟାଖ୍ୟା

କରାଯାଏ । ବୈଜ୍ଞାନିକ ବ୍ୟାଖ୍ୟା କ୍ଷେତ୍ରରେ ଯେପରି ବସ୍ତୁନିଷ୍ଠ ପ୍ରଣାଳୀ ଅବଲମ୍ବନ କରାଯାଏ ଫଳିତ ଜ୍ୟୋତିଷ ବା ସାମୁଦ୍ରିକ ଇତ୍ୟାଦି କ୍ଷେତ୍ରରେ ସେପରି କରାଯାଏ ନାହିଁ ଏବଂ ସେମାନଙ୍କ କ୍ଷେତ୍ରରେ ବୈଜ୍ଞାନିକ କ୍ରମ ବା ତଥ୍ୟପରକ ସତ୍ୟତା ନ ଥାଏ । ସମାଜରେ ସେସବୁ ଯୁଗ ଯୁଗ ଧରି ଚଳି ଆସିଥିବା ଯୋଗୁଁ ସେସବୁର ସତ୍ୟତା ନେଇ ଏକ ବିଶ୍ୱାସ ରହିଥାଏ ।

କେତେକ କୁସଂସ୍କାର ସମାଜ ବିରୋଧୀ ଓ ଅତ୍ୟନ୍ତ ଭୟାନକ ମନେହୁଏ । ଦେବୀଙ୍କୁ ମଣିଷ ବଳି ଦ୍ୱାରା ସନ୍ତୁଷ୍ଟ କଲେ ମନସ୍କାମନା ପୂର୍ଣ୍ଣ ହେବ ବା ପୁତ୍ର ସନ୍ତାନ ଲାଭ ହେବ, ମାଟି ଦେବତାକୁ ରକ୍ତ ଦେଲେ ଭଲ ଫସଲ ଉତ୍ପାଦିତ ହେବ, କେତେକ ପୂଜା କଲେ ନିଜର ଅର୍ଥ ଦ୍ୱିଗୁଣିତ ହେବ, ତନ୍ତ୍ର ସାଧନାଦ୍ୱାରା ଅପ୍ରାପ୍ୟ ବସ୍ତୁ ମିଳିପାରିବ ଇତ୍ୟାଦି ବିଶ୍ୱାସ ସମାଜ ପାଇଁ କ୍ଷତିକାରକ ଅଟେ । ସେହିପରି ନିଜ ପରିବାରର କୌଣସି ବ୍ୟକ୍ତିଙ୍କର ଅସୁସ୍ଥତା ବା ମୃତ୍ୟୁ ପାଇଁ ଅନ୍ୟ ପରିବାରର ଗୁଣି ଗାରେଡ଼ିକୁ ଦାୟୀ କରିବା, ଗୋଟିଏ ଗ୍ରାମରେ କିଛି ବିପର୍ଯ୍ୟୟ ହେଲେ ଅନ୍ୟ ଗ୍ରାମର ଲୋକମାନଙ୍କର ମନ୍ତ୍ର ତନ୍ତ୍ର ପ୍ରୟୋଗର ଫଳବୋଲି ଭାବିବା ଦ୍ୱାରା ପରସ୍ପର ଭିତରେ ତିକ୍ତତାର ବାତାବରଣ ସୃଷ୍ଟି ହୋଇଥାଏ । ଏହି ପ୍ରକାରର ବିଶ୍ୱାସର ବଶବର୍ତ୍ତୀ ହୋଇ ବ୍ୟକ୍ତି ବିଶେଷ ସାମାଜିକ ସ୍ଥିରତା ଓ ଶୃଙ୍ଖଳାକୁ ବ୍ୟାହାତ କରିଥାନ୍ତି । ବଳିପ୍ରଥା ପରି ଭାବନା ଏକ ଜଘନ୍ୟ ଓ ଅସାମାଜିକ କାର୍ଯ୍ୟ ଅଟେ, କାରଣ ଏହା ଅନ୍ୟ ବ୍ୟକ୍ତିର ଜୀବନ ପ୍ରତି ବିପଦ ଆଣିଥାଏ । ସେହିପରି ଯେଉଁ କେତେକ ବିପଦପୂର୍ଣ୍ଣ ବା ଅଘଟଣ ଘଟଣା ସାଧାରଣତଃ ପ୍ରାକୃତିକ ଭାବରେ ଘଟିଥାଏ ସେପାଇଁ ଅନ୍ୟ ଉପରେ ଦୋଷଦେବା ଏକ ଅହେତୁକ ଭାବନା ଅଟେ । ଏହି ପ୍ରକାରର କୁସଂସ୍କାରରୁ ସମୟେ ସମୟେ ଗ୍ରାମ ଗ୍ରାମ ଭିତରେ ସଂଘର୍ଷ ଜନିତ ପରିସ୍ଥିତି ସୃଷ୍ଟି ହୋଇଥାଏ ।

କୁସଂସ୍କାରର ପରିସର ବହୁ ବ୍ୟାପକ ମନେ ହେଉଥିଲେ ବି ଏଗୁଡ଼ିକୁ କେତେକ ଶ୍ରେଣୀରେ ବିଭାଜିତ କରିବା ଅସମ୍ଭବ ନୁହେଁ । ଅବଶ୍ୟ ସେମାନଙ୍କର ବିଭାଜନ କ୍ଷେତ୍ରରେ ବିଭିନ୍ନ ମାନଦଣ୍ଡ ରହିପାରେ । କୁସଂସ୍କାରର ସ୍ୱରୂପ ନେଇ ସେମାନଙ୍କୁ ଧର୍ମଗତ, ପରମ୍ପରାଗତ, ବୃତ୍ତିଗତ ଓ ବ୍ୟକ୍ତିଗତ ବୋଲି ଶ୍ରେଣୀ ବିଭାଜନ କରାଯାଇ ପାରେ । ଏହି ବିଭାଜନ ଏକ ଶୁଦ୍ଧ ବିଭାଜନ ନୁହେଁ, କାରଣ କେତେକ କୁସଂସ୍କାର ଉଭୟ ଶ୍ରେଣୀରେ ରହିପାରେ । ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ସମୁଦ୍ରରେ ବୁଡ଼ ପକାଇଲେ ସ୍ୱର୍ଗ ପ୍ରାପ୍ତି ହେବ ବା ପାପ କ୍ଷୟ ହେବ, କାଳ୍ପନିକ ଦେବତାଙ୍କର ମନୋରଞ୍ଜନ ପାଇଁ ଦେବଦାସୀ ରହିବା ଆବଶ୍ୟକ, ଶ୍ରାଦ୍ଧ ଦିବସରେ ପୂଜକଙ୍କୁ ଦାନ ଦ୍ୱାରା ମୃତ ଆତ୍ମାର ସଦ୍‌ଗତି ହେବ ଇତ୍ୟାଦି ବିଶ୍ୱାସ ଗୁଡ଼ିକ ଗୋଟିଏ ଧର୍ମର ଲୋକଙ୍କ ପାଖରେ ପରମ୍ପରାକ୍ରମେ ଚଳି ଆସିବା ଦେଖାଯାଏ । ବିଭିନ୍ନ ଧର୍ମ ପରମ୍ପରାରେ ମଧ୍ୟ କୁସଂସ୍କାର ଦେଖିବାକୁ ମିଳିଥାଏ । ବିଭିନ୍ନ

ଧର୍ମ ପରମ୍ପରାରେ ପ୍ରଚଳିତ ଥିବା ବହୁ ଲୋକ ବିଶ୍ୱାସ, ଧର୍ମଗ୍ରନ୍ଥରେ ବର୍ଣ୍ଣିତ ନାନା କାହାଣୀ, ବିଭିନ୍ନ ପୁରାଣମାନଙ୍କରେ ବର୍ଣ୍ଣିତ କେତେକ ଘଟଣା, ଜନ ଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଥାଏ । କେତେକ ପରମ୍ପରାଗତ ଚଳଣି ଧର୍ମୀୟ ବିଶ୍ୱାସ ଉପରେ ଆଧାରିତ ଥିବାବେଳେ ଅନ୍ୟ କେତେକ କ୍ଷେତ୍ରରେ କେବଳ ପ୍ରାଚୀନତା ରହିଥାଏ । କେତେକ ପରମ୍ପରା ପ୍ରାଚୀନ କାଳରୁ ଚଳି ଆସିଥିବା ଯୋଗୁଁ ସେଗୁଡ଼ିକର ଯଥାର୍ଥତା ପ୍ରତି ଧ୍ୟାନ ଦିଆ ନ ଯାଇ ସେସବୁକୁ ଏକ ସାଂସ୍କୃତିକ ପ୍ରବାହର ଅଙ୍ଗ ଭାବରେ ନିଆଯାଏ । ଅତି ସୂକ୍ଷ୍ମ ସ୍ତରରେ କେତେକ ବିଶ୍ୱାସ, ଭାବନା ଆଦି ସାମାଜିକ ଅବଚେତନରେ ବଦ୍ଧମୂଳ ହୋଇ ରହିଥାଏ । ସେହିପରି ବୃତ୍ତି ଅନୁଯାୟୀ ନିର୍ଦ୍ଦିଷ୍ଟ କୁସଂସ୍କାର ଦେଖିବାକୁ ମିଳିଥାଏ । କେତେକ କାର୍ଯ୍ୟ କେତେକ ନିର୍ଦ୍ଦିଷ୍ଟ ଶ୍ରେଣୀର ବ୍ୟକ୍ତି କରିବା ବା ନ କରିବା ନେଇ ସ୍ଥଳ ବିଶେଷରେ ସାମାଜିକ କଟକଣା ଥାଏ ।  ବିଶେଷକରି ଜାତି ଭିତ୍ତିକ ସମାଜରେ ବୃତ୍ତିଗତ ଜୀବିକା କ୍ଷେତ୍ରରେ ପ୍ରଚଳିତ ଚଳଣିକୁ ମାନି ନିଆଯାଏ । ବ୍ୟକ୍ତିଗତ କୁସଂସ୍କାର ବ୍ୟାପକ ଅଟେ । ସମାଜରେ ବିଭିନ୍ନ ବ୍ୟକ୍ତି ନାନା ପ୍ରକାରର ଅହେତୁକ ବିଶ୍ୱାସକୁ ନିଜର ଜୀବନଚର୍ଯ୍ୟା ଭିତରେ ଗ୍ରହଣ କରିଥାନ୍ତି ଓ ସେସବୁକୁ ପାଳନ କରିବା ନେଇ ଭାବ ପ୍ରବଣତା ଦେଖାଇଥାନ୍ତି । ହୁଏତ ସ୍ଥଳ ବିଶେଷରେ ସାମାଜିକ ଚଳଣିର ପ୍ରଭାବରୁ ବ୍ୟକ୍ତି କେତେକ ବିଶ୍ୱାସକୁ ଜୀବନରେ ବଦ୍ଧମୂଳ କରି ଧରିଥାଏ କିମ୍ବା ନିଜେ କେତେକ ବିଶ୍ୱାସ ସୃଷ୍ଟି କରି ଅହେତୁକ ଭାବରେ ସେଥିରେ ବିଶ୍ୱାସ କରୁଥାଏ । ବ୍ୟକ୍ତିଗତ ବିଶ୍ୱାସ, ରୁଚି, କାର୍ଯ୍ୟ କ୍ଷେତ୍ରରେ ସେପରି କିଛି ଆଧାର ନ ଥାଇ କେବଳ ମନସ୍ତାତ୍ତ୍ୱିକ ସ୍ତରର ଆବେଗ ହୋଇଥିଲେ ଓ ତାହା ପାଳନ କରିବାରେ ବ୍ୟକ୍ତି ଅହେତୁକ ଶ୍ରଦ୍ଧା ପ୍ରକାଶ କରୁଥିଲେ ତାହା ବ୍ୟକ୍ତିଗତ ସ୍ତରର କୁସଂସ୍କାର ହୋଇଯାଏ । କେତେକ ବିଶ୍ୱାସ ସମାଜରେ ମୁଷ୍ଟିମେୟ ବ୍ୟକ୍ତିଙ୍କ ପାଖରେ ସୀମିତ ଥିବାବେଳେ କେତେକ ବ୍ୟକ୍ତିଗତ ସ୍ତରର ବିଶ୍ୱାସ କାଳକ୍ରମେ ସାମାଜିକ ସ୍ୱୀକୃତି ଲାଭ କରି ସମାଜରେ ପ୍ରଚଳିତ ହୋଇଯାଏ ।

କୁସଂସ୍କାର ଅଶିକ୍ଷିତ ବା ସାଧାରଣ ଲୋକଙ୍କ ପାଖରେ ଯେପରି ଦେଖିବାକୁ ମିଳେ, ସେହିପରି ଉଚ୍ଚଶିକ୍ଷା ଥିବା ଓ ସାମାଜିକ ପ୍ରତିଷ୍ଠା ଥିବା ଲୋକଙ୍କ ପାଖରେ ମଧ୍ୟ ଦେଖିବାକୁ ମିଳେ । ଅଧିକାଂଶ କୁସଂସ୍କାର ପଛାତରେ ଅଜ୍ଞତା ଜନିତ ଭୟ ଥାଏ । ଦୁଃଖ, ଉତ୍କଣ୍ଠା, ଅନିଶ୍ଚିତତା, ନୈରାଶ୍ୟ, ରୋଗ ଓ ମୃତ୍ୟୁ ଇତ୍ୟାଦି ଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ରହିଛି । ଆବଶ୍ୟକ ସ୍ଥଳେ ଏକ ଅଜ୍ଞାତ ମହତ୍ତର ଶକ୍ତି ପ୍ରତିକୂଳ ପରିସ୍ଥିତିରେ ସହାୟକ ହେବ ବୋଲି ଏକ ମାନସିକତା ସମାଜରେ ରହିଛି । ଜୀବନ ସଂଗ୍ରାମ ଭିତରେ ନିଜର ଅସହାୟ ବୋଧ ଯୋଗୁଁ ମଣିଷ କୁସଂସ୍କାରରେ ବିଶ୍ୱାସ କରିଛି । ଏତଦ୍ ବ୍ୟତୀତ ନିଜ ପରିବେଶରେ ମଣିଷ ନାନା କାଳ୍ପନିକ ବ୍ୟାଖ୍ୟାର ଆଶ୍ରୟ ନେଇଛି । ପୁରୁଷାନୁକ୍ରମେ ସେହି କାଳ୍ପନିକ ଭାବନାଗୁଡ଼ିକ ସତ୍ୟ ପରକ ବୋଲି ସାମାଜିକ ସ୍ୱୀକୃତି

ଲାଭ କରି ବ୍ୟକ୍ତିର ମାନସିକତାକୁ ଆଚ୍ଛାଦିତ କରିଛି ।

ସେହିପରି ଧର୍ମ ଧାରଣା, ପରମ୍ପରା ଓ ସାମାଜିକ ପରିବେଶରେ ଥିବା ବିଭିନ୍ନ ଚଳଣିର ସମ୍ମିଳିତ ପ୍ରଭାବ ବ୍ୟକ୍ତି ମାନସକୁ ପ୍ରଭାବିତ କରିଥାଏ । ବ୍ୟକ୍ତି ଭିତରେ ବୈଜ୍ଞାନିକ ଦୃଷ୍ଟିକୋଣ ଓ ଦୃଢ଼ ମାନସିକ ସାମର୍ଥ୍ୟ ନ ଥିଲେ ସାମାଜିକ ଚଳଣିର ପ୍ରଭାବରୁ ମୁକ୍ତ ରହିବା ସମ୍ଭବ ହୋଇନଥାଏ । ଏପରିକି ସାମାଜିକ ପ୍ରଭାବ ଦ୍ୱାରା ବ୍ୟକ୍ତି ମାନସିକ ସ୍ତରରେ ସର୍ତ୍ତବଦ୍ଧ ହୋଇଯିବାଦ୍ୱାରା କୁସଂସ୍କାର ଓ ବାସ୍ତବତା ମଧ୍ୟରେ ପ୍ରଭେଦ କରିପାରେ ନାହିଁ । ଏତଦ୍‌ବ୍ୟତୀତ କେତେକ ତଥାକଥିତ ଅବତାର ପୁରୁଷ ଓ ରହସ୍ୟବାଦୀ ବ୍ୟକ୍ତି କୁସଂସ୍କାରର ପ୍ରସାର ପାଇଁ ଦାୟୀ ଅଟନ୍ତି ।

କେତେକ କୁସଂସ୍କାର ଏପରି ପରମ୍ପରାଗତ ହୋଇଯାଏ ଯେ ତା'ର ବିରୋଧ ଭାବପ୍ରବଣତା ଜନିତ ଗଭୀର ଆଲୋଡ଼ନ ସୃଷ୍ଟି କରିଥାଏ । କେତେକ ପର୍ବ ପର୍ବାଣୀ ବା ସାମାଜିକ ଉତ୍ସବରେ ପାଳିତ ହେଉଥିବା ଔପଚାରିକତା ଯେତେ ଅର୍ଥଶୂନ୍ୟ ହେଲେବି ତାହାକୁ ପାଳନ କରାଯାଏ । ଏପରିକି କେତେକ ବ୍ୟକ୍ତି କୁସଂସ୍କାରକୁ ଅନୁଭବ କଲେ ମଧ୍ୟ ତାହାକୁ ବିରୋଧ କଲେ ସାମାଜିକ କଟାକ୍ଷର ସମ୍ମୁଖୀନ ହେବାର ସମ୍ଭାବନା ଯୋଗୁଁ ପ୍ରଚଳିତ ବିଶ୍ୱାସ ସକଳକୁ ବାଧ୍ୟ ହୋଇ ଗ୍ରହଣ କରିନିଅନ୍ତି । ଫଳରେ ସେସବୁ ସାମାଜିକ ଚଳଣିରେ ଜୀବନ୍ତ ହୋଇ ରହେ । କେତେକ କୁସଂସ୍କାରର ପ୍ରାଚୀନତା ଯୋଗୁଁ ସେସବୁ ଯେତେ ଅର୍ଥହୀନ ହେଲେ ମଧ୍ୟ ସେସବୁକୁ ସାଂସ୍କୃତିକ ଜୀବନଧାରାର ଅଙ୍ଗ ଭାବରେ ନିଆଯାଏ ।

ସୁତରାଂ ମନସ୍ତାତ୍ତ୍ୱିକ, ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ କାରଣରୁ ସମାଜରେ କୁସଂସ୍କାର ରହିବା ଦେଖାଯାଏ । କୁସଂସ୍କାର ପଶ୍ଚାତରେ ଏକ ବା ଏକାଧିକ ଜଟିଳ କାରଣ ଥାଇପାରେ । ସ୍ଥଳ ବିଶେଷରେ ଏହା ସୂକ୍ଷ୍ମ ଭାବରେ ମଧ୍ୟ ପ୍ରକାଶ ପାଇଥାଏ । କେତେକ ବ୍ୟକ୍ତି ବୈଜ୍ଞାନିକ ଚିନ୍ତନର ସମର୍ଥକ ହୋଇ ମଧ୍ୟ ଜୀବନର କେତେକ ବ୍ୟାପାରରେ କୁସଂସ୍କାରରୁ ସଂପୂର୍ଣ୍ଣ ମୁକ୍ତ ରହିପାରନ୍ତି ନାହିଁ ।

କିନ୍ତୁ କୁସଂସ୍କାର ଏକ ରୁଗ୍ଣ ମାନସିକତାର ପ୍ରତୀକ ଅଟେ । ଏହା ଅନୁସନ୍ଧିତ୍ସାମୂଳକ ମନୋଭାବ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ । ଜ୍ଞାନ ସତ୍ୟପରକ ହୋଇଥିବାବେଳେ କୁସଂସ୍କାର ଭିତ୍ତିହୀନ ଓ ଅବାନ୍ତର ବିଶ୍ୱାସକୁ ସୂଚାଏ । କୁସଂସ୍କାର ନୈତିକ ମୂଲ୍ୟବୋଧର ମଧ୍ୟ ପ୍ରତିକୂଳ ମନେହୁଏ । ନୈତିକ ଆଚରଣ ବା ସାମାଜିକ କର୍ତ୍ତବ୍ୟବୋଧ ଅପେକ୍ଷା ପାରଲୌକିକ ବିଶ୍ୱାସ ବ୍ୟକ୍ତି-ବିଶେଷକୁ ବେଳେବେଳେ ଅଧିକ ପ୍ରଭାବିତ କରିଥାଏ । କେତେକ ବିଶ୍ୱାସର ବଶବର୍ତ୍ତୀ ହୋଇ ଅନ୍ୟକୁ ଅସ୍ପୃଶ୍ୟ ବୋଲି ଭାବିବା, ସତୀପ୍ରଥାକୁ ସମର୍ଥନ କରିବା, ମନ୍ଦିରରେ ବଳିଦାନକୁ ଶାସ୍ତ୍ରସମ୍ମତ ବୋଲି କହିବା ଓ ସମାଜ ବିରୋଧୀ କାର୍ଯ୍ୟରେ ଲିପ୍ତ ଥାଇ ଧର୍ମୀୟ ଉପାସନାକୁ ଗୁରୁତ୍ୱ ଦେବାର ବହୁ ଦୃଷ୍ଟାନ୍ତ ସାମାଜିକ ଜୀବନରେ

ଦୃଷ୍ଟିଗୋଚର ହୁଏ । ନାନା ଅହେତୁକ ପୂଜା ପାର୍ବଣରେ ସଂପୃକ୍ତ ରହିଥିବା ଅଥଚ ସାମାଜିକ କର୍ତ୍ତବ୍ୟ ପ୍ରତି ଉଦାସୀନ ଥିବା ବହୁ ଦୃଷ୍ଟାନ୍ତ ସମାଜରେ ମିଳିଥାଏ । ନାଗରିକ ଶୃଙ୍ଖଳା ଓ କର୍ତ୍ତବ୍ୟବୋଧ ପ୍ରତି କ୍ରମବର୍ଦ୍ଧିଷ୍ଣୁ ଉଦାସୀନତା ଦେଖାଯାଉଥିବା ବେଳେ ମନ୍ଦିର ନିର୍ମାଣ, ଧର୍ମୀୟ ଔପଚାରିକତା ଓ ସାଂପ୍ରଦାୟିକ ବିଦ୍ୱେଷ କ୍ଷେତ୍ରରେ ଯଥେଷ୍ଟ କ୍ରିୟାଶୀଳତା ପ୍ରକାଶ ପାଏ । ଏହା ଯେ ସାଂସ୍କୃତିକ ଅବକ୍ଷୟର ସୂଚନା ଦିଏ ଏହା ନିଃସନ୍ଦେହ ଭାବେ କୁହାଯାଇପାରେ ।

ପ୍ରଶ୍ନ ହେଉଛି – କୁସଂସ୍କାରର ବିଲୋପ ସାଧନ ସମ୍ଭବ କି ? ଆଧୁନିକ ଯୁଗରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁଳ ବିକାଶ ସତ୍ତ୍ୱେ କୁସଂସ୍କାର ତିଷ୍ଠି ରହିବା ଏକ ବିଡ଼ମ୍ବନା ନିଶ୍ଚୟ । କିନ୍ତୁ ସମାଜରେ ବିଜ୍ଞାନର ବିକାଶ ସହ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର ନ ହେଲେ କୁସଂସ୍କାରର ବିଲୋପ ସମ୍ଭବ ନୁହେଁ । କାରଣ କୁସଂସ୍କାର ଓ ବୈଜ୍ଞାନିକ ଦୃଷ୍ଟିକୋଣ ମଧ୍ୟରେ ବିପରୀତମୁଖୀ ପରିବର୍ତ୍ତନ ଜନିତ ସମ୍ବନ୍ଧ ଦେଖିବାକୁ ମିଳେ । ବୈଜ୍ଞାନିକ ଦୃଷ୍ଟିକୋଣ ଯେଉଁ ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ସେହି ସମାଜରେ କୁସଂସ୍କାର ସେତିକି କମ୍; ଅଥଚ ଯେଉଁ ପରିବେଶରେ ତାହା ଯେତିକି କମ୍, ସେଠାରେ କୁସଂସ୍କାର ସେତେ ଅଧିକ । ସୁତରାଂ କୁସଂସ୍କାରର ବିଲୋପ ପାଇଁ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଅବଶ୍ୟମ୍ଭାବୀ ମନେହୁଏ । ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ପାଇଁ ଦେଶର ଶିକ୍ଷା ବ୍ୟବସ୍ଥା ଓ ଗଣମାଧ୍ୟମର ଭୂମିକା ଯଥେଷ୍ଟ ବେଶି, କାରଣ ଜନଜୀବନକୁ ତାହା ଗଭୀର ଭାବରେ ପ୍ରଭାବିତ କରିଥାଏ । ସୁତରାଂ ଅନୁସନ୍ଧିତ୍ସୁ ମନୋଭାବ, ସତ୍ୟର ଉଦ୍‌ଘାଟନ ପ୍ରତି ଅନୁରକ୍ତି ତଥା ବିଚାରଶୀଳ ଭାବନାର ବିକାଶକୁ ପ୍ରସାର କରିବା ପାଇଁ ଶିକ୍ଷା ଓ ଗଣମାଧ୍ୟମ ଜରିଆରେ ପ୍ରୟାସ ଆବଶ୍ୟକ । ଏସବୁର ବିକାଶ ଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରିବାବେଳେ ଏହାର ଅଭାବ କୁସଂସ୍କାର ତିଷ୍ଠି ରହିବାରେ ସାହାଯ୍ୟ କରିଥାଏ ।

■■

# ହେତୁବାଦ : ଏକ ଅଧ୍ୟୟନ

ହେତୁବାଦର ସରଳତମ ଅର୍ଥଟି ହେଉଛି ବିଚାରଶୀଳତାର ନିରଙ୍କୁଶ ପ୍ରାଧାନ୍ୟକୁ ଗ୍ରହଣ କରିବା । ଚିନ୍ତା କରିବାର ସାମର୍ଥ୍ୟ ଭିତରୁ ବିଚାରଶୀଳ ଦୃଷ୍ଟିକୋଣଟି ବିକାଶ ଲାଭ କରିଛି । ମଣିଷ ଜାତିର ବିକାଶଧାରାରେ ବିଚାରଶୀଳତାର ପ୍ରମୁଖ ଭୂମିକା ରହିଛି । ଏକ ଆଦିମ ସ୍ତରରୁ ନାନା କ୍ରମବିକାଶ ଓ ପରିବର୍ତ୍ତନ ମଧ୍ୟ ଦେଇ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ସମ୍ଭବ ହୋଇଛି । ବୃହତ୍ତର ପରିବେଶ ଓ ସାମାଜିକ ବ୍ୟବସ୍ଥାକୁ ବୁଝିବାକୁ ପ୍ରୟାସ ଭିତରୁ ନିରାପଦ ଓ ସୁସଂହତ ସାମାଜିକ ଜୀବନର ଉଦ୍ଭବ ହୋଇଛି । ପ୍ରକୃତି ଓ ପରିବେଶକୁ ଅନୁଧ୍ୟାନ କରି ସେସବୁକୁ ଜୀବନ ପାଇଁ ଉପଯୋଗୀ କରିବାକୁ ମଣିଷ ପ୍ରୟାସ କରିଛି । ସମୟାନୁକ୍ରମେ ବୈଜ୍ଞାନିକ ଚିନ୍ତନ, ନୈତିକ ମୂଲ୍ୟବୋଧ, ସାମାଜିକ ନ୍ୟାୟ, ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଇତ୍ୟାଦି ବିଷୟରେ ବୈଚାରିକ ସିଦ୍ଧାନ୍ତ ମାନ ସୃଷ୍ଟି ହୋଇଛି । ବିଚାରଶୀଳତା ଭିତରୁ ଶିକ୍ଷା, ସଭ୍ୟତା, ସଂସ୍କୃତି, ସାମାଜିକ ସଚେତନତା ଇତ୍ୟାଦି ଉଦ୍ଭବ ହୋଇଛି । ସକଳ ଉତ୍କର୍ଷ ପଶ୍ଚାତରେ ବିଚାରଶୀଳତାର ଯେ ପ୍ରାଧାନ୍ୟ ରହିଛି ଏହା କହିବା ଅସମୀଚୀନ ନୁହେଁ । ସେହି ବିଚାରଶୀଳତା ହିଁ ହେଉଛି ହେତୁବାଦର ମୌଳିକ ତାତ୍ପର୍ଯ୍ୟ ।

ମଣିଷ ସ୍ୱଭାବକୁ ପର୍ଯ୍ୟାଲୋଚନା କଲେ ବ୍ୟକ୍ତି ଭିତରେ ପ୍ରବୃତ୍ତି, ବୁଦ୍ଧି ଓ ବିଚାରଶୀଳତା ରହିଥିବା ଦେଖାଯାଏ । ଜୀବନାନୁଭୂତି କ୍ଷେତ୍ରରେ ଏସବୁ ପରସ୍ପରର ଅନୁପୂରକ ଅଟନ୍ତି, ପରସ୍ପରର ବିରୋଧୀ ନୁହନ୍ତି । ସାମଗ୍ରିକ ଭାବରେ ସେମାନେ ଜୀବନର ଅନୁଭୂତିକୁ ପୁଷ୍ଟ କରିଥାନ୍ତି । ସେମାନଙ୍କର ସମନ୍ୱୟ ଭିତରୁ ବ୍ୟକ୍ତିର ଜୀବନଦୃଷ୍ଟି ରୂପରେଖ ନେଇଥାଏ । ବ୍ୟକ୍ତିମାନଙ୍କର ଜୀବନ ପ୍ରତି ଥିବା ଦୃଷ୍ଟିଭଙ୍ଗୀ କ୍ଷେତ୍ରରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୁଏ ତାହା ସେମାନଙ୍କର ବୁଦ୍ଧି, ସାମାଜିକ ପ୍ରଭାବ, ଅଭିରୁଚି ଓ ବିଚାରବୋଧର ଭିନ୍ନତା ଯୋଗୁଁ ହିଁ ସମ୍ଭବ ହୋଇଥାଏ । ଭିନ୍ନ ଭିନ୍ନ ବ୍ୟକ୍ତି ନିଜର ପରିବେଶକୁ ଭିନ୍ନ ଭିନ୍ନ ଭାବରେ ଅବବୋଧ କରିଥାନ୍ତି । ବ୍ୟକ୍ତିର ଅବବୋଧ କ୍ଷେତ୍ରରେ ତା'ର ଶିକ୍ଷା, ସାମାଜିକ ପ୍ରଭାବ, ବୁଦ୍ଧି ଇତ୍ୟାଦିର ପ୍ରଭାବ ରହିଥାଏ । ବ୍ୟକ୍ତିମାନଙ୍କର ଅନୁଭୂତି, ଆବେଗ ଓ ଅବବୋଧ ଭିନ୍ନ ଭିନ୍ନ ହେଲେ ମଧ୍ୟ ବିଚାରଶୀଳ ମାନଦଣ୍ଡରେ

ସେସବୁର ଯଥାର୍ଥ ମୂଲ୍ୟାୟନ କରାଯାଏ । କାରଣ ବିଚାରଶୀଳତା ହିଁ ଏକ ସାର୍ବିକ ମାନଦଣ୍ଡ ଦେବାରେ ସକ୍ଷମ ହୋଇଥାଏ ।

ହେତୁବାଦ ଏକ ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀକୁ ବୁଝାଇଥାଏ । ପ୍ରକୃତିର ରହସ୍ୟ ଓ ଜୀବନର ଘଟଣାଗୁଡ଼ିକୁ ବୁଝିବା ପାଇଁ ବିଭିନ୍ନ ଯୁଗରେ ସମାଜର ବୁଦ୍ଧିମାନ ଲୋକମାନେ ପ୍ରୟାସ କରିଛନ୍ତି । କୌତୂହଳ ପ୍ରବଣତାଦ୍ୱାରା ଜ୍ଞାନର ବିକାଶ ହୋଇଛି । ଆଦିମ ସ୍ତରରୁ ମଣିଷ ସଭ୍ୟ ସ୍ତରକୁ ଆସି ପାରିଛି । ଇତର ଜୀବଜନ୍ତୁମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଯେପରି ଜୀବନ ବଞ୍ଚୁଥିଲେ ଆଜି ମଧ୍ୟ ସେହି ସ୍ତରରେ ରହିଛନ୍ତି । କାରଣ କେତେକ ପ୍ରବୃତ୍ତିଦ୍ୱାରା ପରିଚାଳିତ ହେବା ବ୍ୟତୀତ ସେମାନେ କୌତୂହଳୀ ହୋଇପାରନ୍ତି ନାହିଁ । କିନ୍ତୁ ମଣିଷର ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଓ ଭାଷା ବ୍ୟବହାର ଯୋଗୁଁ ସେ ଜୀବନର ଗୁଣାତ୍ମକ ବିକାଶ ହାସଲ କରିବାରେ ସକ୍ଷମ ହୋଇପାରୁଛି । ମଣିଷ ପ୍ରକୃତିର ଏହି ମହତ୍ତ୍ୱକୁ ଅନୁଭବ କରି ଗ୍ରୀକ୍ ଦାର୍ଶନିକ ଆରିଷ୍ଟଟଲ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମଣିଷର ସଂଜ୍ଞା ଦେବାକୁ ଯାଇ କହିଥିଲେ, ''ମଣିଷ ହେଉଛି ଏକ ବିଚାରଶୀଳ ପ୍ରାଣୀ ।'' ମଣିଷକୁ ଏକ ବିଚାରଶୀଳ ପ୍ରାଣୀ କୁହାଗଲେ ବି ବିଚାରଶୀଳତା ମଣିଷର ଏକ ସହଜାତ ସ୍ୱଭାବ ନ ହୋଇ ଅନେକାଂଶରେ ଏକ ଉପାର୍ଜିତ ଗୁଣ କହିବା ଅଧିକ ସମୀଚୀନ ମନେହୁଏ । ସମାଜରେ ଏହା ଏକ ସାଂସ୍କୃତିକ ମୂଲ୍ୟବୋଧ ଭାବରେ ବିକାଶ ଲାଭ କରିଛି । କାରଣ ବିଭିନ୍ନ ସମାଜରେ ନାନା ଅହେତୁକ ବିଶ୍ୱାସ, କୁସଂସ୍କାର, ଅଯୌକ୍ତିକ ଭାବନା ଓ ତଜ୍ଜନିତ ଅପସଂସ୍କୃତି ଏବେବି ସାମାଜିକ ମନସ୍ତତ୍ତ୍ୱ ଭିତରେ ବଳିଷ୍ଠ ରହିବା ଦେଖାଯାଏ । ସମାଜରେ ଶିକ୍ଷା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ନୈତିକ ଚେତନାର ବିକାଶଦ୍ୱାରା ହେତୁବାଦୀ ଜୀବନ ଦୃଷ୍ଟିର ମଧ୍ୟ ଅଭିବୃଦ୍ଧି ହୋଇପାରେ ନାହିଁ । ଏହି ଦୃଷ୍ଟିରୁ ହେତୁବାଦ ସହିତ ଉଲ୍ଲିଖିତ ମୂଲ୍ୟଚୟ ନିବିଡ଼ ଭାବରେ ସମ୍ବନ୍ଧିତ ବୋଲି କୁହାଯାଇପାରେ ।

ହେତୁବାଦ ବୈଜ୍ଞାନିକ ମାନସିକତାକୁ ଆଧାର ଭାବରେ ଗ୍ରହଣ କରେ । ମଣିଷ ଜାତିର ସୁଦୀର୍ଘ ଇତିହାସ ପରିପ୍ରେକ୍ଷୀରେ ବୈଜ୍ଞାନିକ କ୍ରିୟାଶୀଳତା ମାତ୍ର ତିନି ଶହ ବର୍ଷ ତଳେ ସୃଷ୍ଟି ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୁଗର ପ୍ରଭାବରେ ବୈଜ୍ଞାନିକ ଚିନ୍ତନ ଆରମ୍ଭ ହୋଇ ଆଧୁନିକ ଯୁଗର ଅନ୍ୱେଷା ଓ ଜୀବନ ପ୍ରବାହ କ୍ଷେତ୍ରରେ ଏକ ପ୍ରମୁଖ ଭୂମିକା ନେଇପାରିଛି । ପୁନର୍ଜାଗରଣ ପୂର୍ବରୁ ମଧ୍ୟଯୁଗରେ ଧର୍ମର ଏକ ସର୍ବଗ୍ରାସୀ ଭୂମିକା ରହିବା ଦେଖାଯାଏ । ପରିଣାମତଃ ସାମାଜିକ ମନସ୍ତତ୍ତ୍ୱ ଧର୍ମକେନ୍ଦ୍ରିକ ରୁଦ୍ଧ ମାନସିକତା ଭିତରେ ଆବଦ୍ଧ ହୋଇ ରହିବାଦ୍ୱାରା ଅତୀତରେ ଜ୍ଞାନ ଲାଭ ପାଇଁ ଧର୍ମଗ୍ରନ୍ଥ ହିଁ ଏକମାତ୍ର ଆଧାର ହୋଇ ରହିଥିଲା । କିନ୍ତୁ ତାହା ବିରୁଦ୍ଧରେ ୟୁରୋପୀୟ ପୁନର୍ଜାଗଣ ଯୁଗରେ ସ୍ୱର ଗୁଞ୍ଜରି ଉଠି ଏ ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ କରିବାକୁ ଆହ୍ୱାନ ସୃଷ୍ଟି ହେଲା । ଅନୁଭବବାଦ ଜ୍ଞାନଲାଭରେ

ମୌଳିକ ପ୍ରଣାଳୀ ସମ୍ବନ୍ଧରେ ବିଶ୍ଳେଷଣ କଲା । ପ୍ରକୃତିରେ ସୃଷ୍ଟ ପ୍ରତ୍ୟେକଟି ଘଟଣା ଯେ ପ୍ରାକୃତିକ ନିୟମ ଧାରାରେ ବ୍ୟାଖ୍ୟା କରାଯାଇ ପାରିବ ଓ କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ ଅଲୌକିକ ବା ଦୈବୀକାରଣ ନାହିଁ ଏହା ବିଜ୍ଞାନରେ ଏକ ମୌଳିକ ନିୟମ ଭାବରେ ଗ୍ରହଣ କରାଗଲା । ବସ୍ତୁତଃ ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ, ସାମାନ୍ୟୀକରଣ ଓ ତଥ୍ୟ ସମର୍ଥନକୁ ଜ୍ଞାନଲାଭର ମୌଳିକ ପ୍ରଣାଳୀ ଭାବରେ ନେଇ ବୈଜ୍ଞାନିକ ଜ୍ଞାନର ଭିତ୍ତି ଗଢ଼ି ଉଠିଲା । ଜ୍ଞାନଲାଭ କ୍ଷେତ୍ରରେ ଏହି ବସ୍ତୁନିଷ୍ଠ ପ୍ରଣାଳୀର ପ୍ରୟୋଗ ହିଁ ବୈଜ୍ଞାନିକ ମାନସିକତାକୁ ବୁଝାଏ । ହେତୁବାଦ ଜ୍ଞାନଲାଭ କ୍ଷେତ୍ରରେ ଅନୁସୃତ ବୈଜ୍ଞାନିକ ପଦ୍ଧତିକୁ ଗ୍ରହଣ କରିଥାଏ । ବୈଜ୍ଞାନିକ ପଦ୍ଧତି ପ୍ରୟୋଗ କରି ଲାଭ କରାଯାଉଥିବା ଜ୍ଞାନ ସେହି ସମୟର ଅନ୍ୱେଷାରେ ସତ୍ୟର ନିକଟବର୍ତ୍ତୀ ବୋଲି ହେତୁବାଦ ଗ୍ରହଣ କରିଥାଏ । ପ୍ରଣାଳୀବଦ୍ଧ ଜ୍ଞାନ, ଅନ୍ତର୍ବୋଧ ଓ ସୃଜନଶୀଳ ଆବେଗକୁ ହେତୁବାଦ ଗ୍ରହଣ କରି ଜୀବନରେ ସେସବୁର ଉପଯୋଗିତାକୁ ଦର୍ଶାଇଥାଏ ।

ହେତୁବାଦ ଏକ ମୁକ୍ତ ମନ ପୋଷଣ କରିବା ଉପରେ ଗୁରୁତ୍ୱ ଆରୋପ କରେ । କୌଣସି ବିଚାର ପ୍ରାଚୀନ, ଶାସ୍ତ୍ର ସମ୍ମତ ଓ ଏକ ଆପ୍ତବାଣୀ ବୋଲି କହିବାଦ୍ୱାରା ତାହା ସତ୍ୟ ହୁଏ ନାହିଁ, ବରଂ ତାହା ଭିନ୍ନ ଭିନ୍ନ ପରିସ୍ଥିତିରେ ମଣିଷର ଅନୁଭୂତି ଓ ବୈଜ୍ଞାନିକ ପଦ୍ଧତିରେ ସ୍ୱୀକୃତ ହେଲେ ହିଁ ଗ୍ରହଣଯୋଗ୍ୟ ହୋଇଥାଏ । ଅର୍ଥାତ୍ ଜ୍ଞାନଲାଭ କ୍ଷେତ୍ରରେ ସକଳ ଅନ୍ଧସଂସ୍କାର ଓ ରୁଦ୍ଧ ମାନସିକତାରୁ ମୁକ୍ତ ରହି ଏକ ଖୋଲା ମନ ପୋଷଣ କରିବା ହେତୁବାଦର ଉଦ୍ଦେଶ୍ୟ ଅଟେ । ବସ୍ତୁତଃ ନାନା ପରମ୍ପରାଗତ ବିଶ୍ୱାସ ବା ପ୍ରତ୍ୟୟର ପ୍ରାଚୀନତା ପରିବର୍ତ୍ତେ ତାହାର ଯୌକ୍ତିକତା ତାହାକୁ ଗ୍ରହଣ କରିବା କ୍ଷେତ୍ରରେ ମାନଦଣ୍ଡ ହୋଇଥାଏ । ଏହି ପରିପ୍ରେକ୍ଷୀରେ ହେତୁବାଦର ସକରାତ୍ମକ ଓ ନକରାତ୍ମକ ଆଭିମୁଖ୍ୟ ରହିପାରେ । ଅଯୌକ୍ତିକ, ଅବୈଜ୍ଞାନିକ, ବା ଅହେତୁକ ଭାବନା, ବିଶ୍ୱାସ ଓ ପ୍ରତ୍ୟୟକୁ ପ୍ରତ୍ୟାଖ୍ୟାନ କରିବା ହେତୁବାଦର ନକରାତ୍ମକ ଦିଗ ଅଟେ । କୁସଂସ୍କାର ଓ ଅନ୍ଧବିଶ୍ୱାସ ଜ୍ଞାନର ପରିପନ୍ଥୀ ହୋଇଥିବାରୁ ସେସବୁକୁ ଦୂର କରିବା ହେତୁବାଦର ଲକ୍ଷ୍ୟ ଅଟେ ।

ଅବଶ୍ୟ ସ୍ଥଳ ବିଶେଷରେ ହେତୁବାଦକୁ କେହି ଏକ ବୌଦ୍ଧିକ ଦୃଷ୍ଟିଭଙ୍ଗୀ ଓ ଶୈକ୍ଷିକ ଆଦର୍ଶ ଭାବରେ ଗ୍ରହଣ କରିପାରନ୍ତି । ବୈଚାରିକ ସ୍ତରରେ ଯୁକ୍ତିସମ୍ମତ, ପରୀକ୍ଷିତ ଓ ସତ୍ୟ ଆଧାରିତ ସିଦ୍ଧାନ୍ତର ପ୍ରତିପାଦନ କରିବା ଦ୍ୱାରା ଜ୍ଞାନର ବିକାଶ ହୋଇଥାଏ । ଏହା ହେତୁବାଦର ତାତ୍ତ୍ୱିକ ଆଭିମୁଖ୍ୟ ଅଟେ । ଏହି ତାତ୍ତ୍ୱିକ ଆଭିମୁଖ୍ୟ ଅପେକ୍ଷା ଏହାର ବାସ୍ତବ ଓ ପ୍ରୟୋଗାତ୍ମକ ତାତ୍ପର୍ଯ୍ୟ ଅଧିକ ମହତ୍ତ୍ୱପୂର୍ଣ୍ଣ ମନେହୁଏ ।

ଯେଉଁ ସବୁ ବିଶ୍ୱାସ ବା ଭାବନାର ବଶବର୍ତ୍ତୀ ହେବାଦ୍ୱାରା ସାମାଜିକ ଜୀବନରେ ଉତ୍କର୍ଷ ସାଧିତ ହେବା ପରିବର୍ତ୍ତେ ସାମାଜିକ ସମ୍ବନ୍ଧ ନିମ୍ନଗାମୀ ହୋଇଥାଏ ବା ସାମାଜିକ ନ୍ୟାୟ ବିଡ଼ମ୍ବିତ ହୋଇ ରହେ ସେସବୁକୁ ହେତୁବାଦ ଦୂର କରିବାକୁ ପ୍ରୟାସ କରେ ।

ଜାତିଗତ ବ୍ୟବସ୍ଥା ଓ ଉଚ୍ଚ ନୀଚ ଭେଦଭାବ ଶାସ୍ତ୍ର ସମ୍ମତ, କୌଣସି ରୋଗରେ ଆକ୍ରାନ୍ତ ହେବା ପୂର୍ବଜନ୍ମର କର୍ମ ପରିଣାମ, ମହିଳାମାନେ ଧର୍ମଗ୍ରନ୍ଥ ପାଠ କରିବା ବା ଆରାଧନା ପୀଠରେ ପ୍ରାର୍ଥନା କରିବା ଈଶ୍ୱରଙ୍କ ନିୟମ ବିରୁଦ୍ଧ ଇତ୍ୟାଦି ଭାବନା ସମାଜ ପାଇଁ କ୍ଷତିକାରକ ଅଟେ । ସେହିପରି ନିଜ ଧର୍ମଗ୍ରନ୍ଥର ବାଣୀ ଈଶ୍ୱର ମୁଖ-ନିଃସୃତ ଓ ଚିରନ୍ତନ ଅଥଚ ଅନ୍ୟ ଧର୍ମଗ୍ରନ୍ଥର ବିଶ୍ୱାସ ସକଳ ନିରର୍ଥକ, ନିଜ ଧର୍ମର ଈଶ୍ୱର ଅନ୍ୟ ଧର୍ମର ଈଶ୍ୱର ପ୍ରତୀତିଠାରୁ ଭିନ୍ନ, ନିଜ ଧର୍ମର ଉପାସନା ପୀଠ ପବିତ୍ର ଅଥଚ ଅନ୍ୟ ଧର୍ମର ଉପାସନା ପୀଠ ଅପବିତ୍ର ଇତ୍ୟାଦି ଭାବନାରୁ ଧର୍ମ ଧର୍ମ ଭିତରେ ଦ୍ୱନ୍ଦ ସୃଷ୍ଟି ହୋଇଥାଏ । ସ୍ଥଳ ବିଶେଷରେ ଏହି ପ୍ରକାର ମାନସିକତାରୁ ଅନ୍ୟ ଧର୍ମପୀଠକୁ ଆକ୍ରମଣ କରାଯାଏ ବା ଏକ ବହୁଧର୍ମୀୟ ସମାଜରେ ସାଂପ୍ରଦାୟିକ ତିକ୍ତତା ମୁଣ୍ଡ ଟେକିଥାଏ । ଧର୍ମୀୟ ବିଶ୍ୱାସକୁ ଚିରନ୍ତନ ଓ ଧର୍ମଗ୍ରନ୍ଥରେ ବର୍ଣ୍ଣିତ କାହାଣୀକୁ ଅଲଘନୀୟ ବୋଲି ଧର୍ମ ପରମ୍ପରାରେ ଗ୍ରହଣ କରିବାଦ୍ୱାରା ବୈଜ୍ଞାନିକ ତଥ୍ୟକୁ ସନ୍ଦେହ ଦୃଷ୍ଟିରେ ଦେଖାଯାଏ । ଏହି କାରଣରୁ ବୈଜ୍ଞାନିକମାନଙ୍କୁ ନିର୍ଯ୍ୟାତନା ଦିଆ ଯାଇଥିବା ଐତିହାସିକ ଭାବରେ ସତ୍ୟ ଅଟେ । 'ପୃଥିବୀ ଚଳମାନ ଅଥଚ ସୂର୍ଯ୍ୟ ସ୍ଥିର', 'ନାନା ଜୈବିକ କ୍ରମ ବିବର୍ତ୍ତନ ମଧ୍ୟ ଦେଇ ମଣିଷର ସୃଷ୍ଟି' ଇତ୍ୟାଦି ଭାବନା ପଛାତରେ ଯେତେ ତଥ୍ୟ ସମ୍ବଳିତ ଆଧାର ଥିଲେ ବି ଏସବୁକୁ ଏକଦା ଧର୍ମ ବିରୋଧୀ କହି ଏହି ମତ ପୋଷଣ କରୁଥିବା ବୈଜ୍ଞାନିକମାନଙ୍କୁ ନାନା ନିର୍ଯ୍ୟାତନା ଦିଆ ଯାଇଥିଲା । କିନ୍ତୁ ସତ୍ୟକୁ ଆବରଣ କରି ରଖିବା ସମ୍ଭବ ନୁହେଁ । ଏହି ସବୁ ଭାବନା ଗୋଟିଏ ସମୟରେ ଅତି ବୈପ୍ଲବିକ ମତ ଥିଲା କାରଣ ସେସବୁ ଯୁଗ ଯୁଗର ଧର୍ମୀୟ ବିଶ୍ୱାସକୁ ବିରୋଧ କରିଥିଲା । ଯେଉଁ ମତ ପଛାତରେ ବସ୍ତୁନିଷ୍ଠ ସତ୍ୟତା ଥାଏ ତାହା ହିଁ ଗ୍ରହଣଯୋଗ୍ୟ ହୋଇଥାଏ ।

ହେତୁବାଦ ନୈତିକ ଆଚରଣକୁ ସଭ୍ୟ ଜୀବନର ଆଧାର ଭାବରେ ଗ୍ରହଣ କରିଥାଏ । ନୈତିକତାକୁ ଏକ ସାମାଜିକ କର୍ତ୍ତବ୍ୟ ଭାବରେ ନେବାଦ୍ୱାରା ଏହାର ସୈଦ୍ଧାନ୍ତିକ ଓ ବ୍ୟବହାରିକ ଭିତ୍ତି ସୁଦୃଢ଼ ହୋଇଥାଏ । ନୈତିକ ଆଚରଣ ପାଇଁ ସ୍ଥଳ ବିଶେଷରେ ଈଶ୍ୱର ବିଶ୍ୱାସରୁ ଅଭିନିବେଶ ଆସୁଥିଲେ ସୁଦ୍ଧା ନୈତିକତା ଓ ଈଶ୍ୱର ପ୍ରତୀତି ପରସ୍ପରଠାରୁ ପୃଥକ ଅଟେ । ନୈତିକ ଶୃଙ୍ଖଳାକୁ ଏକ ସାମାଜିକ କର୍ତ୍ତବ୍ୟ ଭାବରେ ଗ୍ରହଣ କରିବାଦ୍ୱାରା ଏହା ମାନବକେନ୍ଦ୍ରିକ ହୋଇଥାଏ । ହେତୁବାଦୀ ଚିନ୍ତନ ଅନୁଯାୟୀ ମଣିଷ ନିଜର ପ୍ରଚେଷ୍ଟା ଓ ଜ୍ଞାନଦ୍ୱାରା ନିଜର ଭବିଷ୍ୟତକୁ ଗଠନ କରିଥାଏ । ସମାଜର ସମସ୍ତ ପ୍ରଗତି ପଛାତରେ ମଣିଷର ଉଦ୍ୟମ ରହିଛି ଓ କୌଣସି ଈଶ୍ୱର ମଣିଷ ପାଇଁ ସୁଖ ସ୍ୱାଚ୍ଛନ୍ଦ୍ୟ ଆଣିଦେଇ ନାହାନ୍ତି । ସାମାଜିକ ଜୀବନ ଧାରାରେ ଅନୁସନ୍ଧିତ୍ସା, ବିବେକବୋଧ ଓ ସଚେତନ ପ୍ରୟାସ ଅଧିକ ପ୍ରତିଫଳିତ ହେଉଥିଲେ ସମାଜର ବିକାଶ ତ୍ୱରାନ୍ୱିତ ହୋଇଥାଏ । କଳା, ସାହିତ୍ୟ, ଦର୍ଶନ, ବିଜ୍ଞାନ ଓ ସେପରି ସୃଜନାତ୍ମକ ଅଭିବ୍ୟକ୍ତି ପଛାତରେ ବ୍ୟକ୍ତିଗତ ପ୍ରଚେଷ୍ଟା ଓ ସାମୂହିକ ଯୋଜନା ମୁଖ୍ୟ ଭୂମିକା ନେଇଥାଏ ।

ହେତୁବାଦ ଏକ ନ୍ୟାୟ ଆଧାରିତ ଓ ସମତାପୂର୍ଣ୍ଣ ସମାଜ ଗଠନକୁ ଲକ୍ଷ୍ୟ ଭାବରେ ଗ୍ରହଣ କରେ । ଅର୍ଥନୈତିକ ଶୋଷଣ, ରାଜନୈତିକ ଏକଛତ୍ରବାଦ, ସାମାଜିକ ବୈଷମ୍ୟ, ଧର୍ମୀୟ ମୌଳବାଦ ଓ ସାମନ୍ତବାଦୀ ଦୃଷ୍ଟିଭଙ୍ଗୀକୁ ହେତୁବାଦ ବିରୋଧ କରିଥାଏ । ଏ ପ୍ରତ୍ୟେକଟି ଭାବନା ସଭ୍ୟ ଜୀବନଧାରାର ପରିପନ୍ଥୀ । ସେହିପରି ହେତୁବାଦ ବ୍ୟକ୍ତି ସ୍ୱାଧୀନତା ଓ ମର୍ଯ୍ୟାଦାବୋଧକୁ ଉଚ୍ଚ ସ୍ଥାନ ଦେଇଥାଏ । ପ୍ରତ୍ୟେକ ବ୍ୟକ୍ତି ଭିତରେ ଥିବା ସୃଜନଶୀଳ ସମ୍ଭାବନାର ଯଥାର୍ଥ ବିକାଶ ଘଟାଇବାକୁ ଏହା ଗୁରୁତ୍ୱ ଦେଇଥାଏ । ବ୍ୟକ୍ତିର ସାମାଜିକ ଚେତନାକୁ ଉଜ୍ଜୀବିତ କରାଇ ପ୍ରତ୍ୟେକଟି କାର୍ଯ୍ୟ ପାଇଁ କର୍ତ୍ତା ଉତ୍ତରଦାୟୀ ବୋଲି ଏହା ଗ୍ରହଣ କରିଥାଏ । ପ୍ରତ୍ୟେକ ନିଜର କାର୍ଯ୍ୟ ପାଇଁ ଉତ୍ତରଦାୟୀ ନ ରହିଲେ ନୈତିକତା ନିରର୍ଥକ ହୋଇଥାଏ । ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ବ୍ୟକ୍ତିର ନୈତିକ ଉତ୍ତରଦାୟିତ୍ୱ ହେତୁବାଦୀ ଚିନ୍ତନର ଅବଶ୍ୟମ୍ଭାବୀ ନିଷ୍କର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ହେତୁବାଦ ଜୀବନର ସୃଜନାତ୍ମକ ବିକାଶ ଉପରେ ଗୁରୁତ୍ୱ ଦେଇଥାଏ । ଏକ ଅନୁସନ୍ଧିତ୍ସୁ ମନ ନେଇ ମଣିଷର ସମସ୍ୟାକୁ ବୁଝି ତା'ର ସମାଧାନ ବାହାର କରିବା ପାଇଁ ହେତୁବାଦ ପ୍ରଯତ୍ନ କରିଥାଏ । ଶିକ୍ଷା, ରାଜନୀତି, ଅର୍ଥନୀତି ଓ ଜୀବନର ଦୈନନ୍ଦିନ ବ୍ୟାପାରରେ ହେତୁବାଦ ଜନିତ ବିଚାର ବିମର୍ଷ ଜ୍ଞାନର ଦିଗନ୍ତକୁ ବିସ୍ତାର କରି ଦେଇଥାଏ । ଏକ ବିଶ୍ଳେଷଣାତ୍ମକ ଓ ତର୍କଶୀଳ ଅନୁଶୀଳନଦ୍ୱାରା ଯେକୌଣସି ସମସ୍ୟାର ଯଥାର୍ଥ ସ୍ୱରୂପ ବିଷୟରେ ଧାରଣା ଆସିଥାଏ ଯଦ୍ୱାରା କି ତା'ର ସମାଧାନର ସୂତ୍ରଟି ସହଜ ହୋଇଥାଏ ।

ମାନବବାଦ ହିଁ ହେତୁବାଦର ସର୍ବଶ୍ରେଷ୍ଠ ଆଦର୍ଶ ଅଟେ । କୌଣସି ଭାବନା, ବିଶ୍ୱାସ ବା ଚଳଣି ଯଦି ମଣିଷ ମଣିଷ ଭିତରେ ବିଭେଦ ବା ପାଚେରି ଛିଡ଼ା କରାଏ ହେତୁବାଦ ତାହାକୁ ପ୍ରତ୍ୟାଖ୍ୟାନ କରିଥାଏ । ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ସହ ସାମୂହିକ ଜୀବନରେ ଶାନ୍ତି, ସ୍ଥିରତା ଓ ପ୍ରଗତିଶୀଳତା ଉପରେ ଏହା ଗୁରୁତ୍ୱ ଦେଇଥାଏ । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଦ୍ୱାରା ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ଯେ ସମ୍ଭବ ଏହା ହେତୁବାଦ ସ୍ୱୀକାର କରେ । ସାମାଜିକ ସମ୍ପର୍କ କ୍ଷେତ୍ରରେ ବ୍ୟକ୍ତିର ମହତ୍ତ୍ୱକୁ ଗୁରୁତ୍ୱ ଦେବାଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ହୋଇଥାଏ । ସୁତରାଂ ହେତୁବାଦର ଅନ୍ତର୍ନିହିତ ତାତ୍ପର୍ଯ୍ୟ ହେଉଛି ବିଚାରଶୀଳ ଭାବେ ମାନବିକ ଶ୍ରେୟ ହାସଲ ସହିତ ବୃହତ୍ତର ସମାଜର କଲ୍ୟାଣ ସାଧନ କରିବା ।

ହେତୁବାଦର ଏହି ସକାରାତ୍ମକ ଆଭିମୁଖ୍ୟଟି ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯୁଦ୍ଧ, ବିଭୀଷିକା, ସାଂପ୍ରଦାୟିକତା, ବିଦ୍ୱେଷ, ଶୋଷଣ ଇତ୍ୟାଦି ମଣିଷ ସମାଜରେ ରହିବା ପଶ୍ଚାତରେ ବିଚାରହୀନତା ଯେ ରହିଛି ଏହା କୁହାଯାଇପାରେ । କିଛି ପ୍ରଭାବଶାଳୀ ଓ କ୍ଷମତାଧର ବ୍ୟକ୍ତିମାନଙ୍କର ଅହେତୁକ ନିଷ୍ପତ୍ତି ଯୋଗୁଁ ସମାଜରେ ଅଶାନ୍ତି ଓ ବିଦ୍ୱେଷର ବାତାବରଣ ସୃଷ୍ଟି ହୋଇଥାଏ । ସେହିପରି ସଂସାରରେ ଅଗଣିତ ମଣିଷ ଅଶିକ୍ଷା ଓ ଦାରିଦ୍ର୍ୟରେ ଜର୍ଜରିତ ହୋଇ ରହିଥିବାବେଳେ ଆଣବିକ ଅସ୍ତ୍ର ନିର୍ମାଣ କରି ପ୍ରଚୁର ପ୍ରାକୃତିକ

ସଂପଦକୁ ଧ୍ୱଂସ କରିବା, ପରିବେଶକୁ ପ୍ରଦୂଷଣ କରି ବିଳାସର ସ୍ୱପ୍ନ ଦେଖିବା ଓ ଅନ୍ୟର ଶ୍ରମକୁ ଶୋଷଣ କରି ଆଡ଼ମ୍ବରରେ ଜୀବନ ବିତାଇବା ଆମ ଅବିବେକିତାର ଚିତ୍ର ଦେଇଥାଏ । ସବୁ ଯୁଗରେ ସଂସାରରେ ଏହି ଶୋଷକ, ବିଳାସୀ ଓ କ୍ଷମତାଲିପ୍ସୁ ଲୋକ ରହିବା ସଭ୍ୟତାର ଏକ ବିଡ଼ମ୍ବନା କହିବାକୁ ହେବ । ସୁତରାଂ ସବୁ ମଣିଷ ଯେ ବିଚାରଶୀଳ ହୋଇପାରିବେ ଏ ନେଇ କେତେକ ସନ୍ଦେହ ପ୍ରକାଶ କରିଥାନ୍ତି । ଯଦି ସମାଜର କ୍ଷମତାଧର ଓ ପ୍ରଭାବଶାଳୀ ବ୍ୟକ୍ତି ବିଶେଷଙ୍କର ବିଚାରବୋଧ ଉନ୍ନତ ଓ ସମ୍ବେଦନଶୀଳ ହୋଇପାରନ୍ତା ତେବେ ପୃଥିବୀର ରୂପରେଖ ବଦଳି ଯାଆନ୍ତା ।

ଏହି ପୃଷ୍ଠଭୂମିରେ ହେତୁବାଦର ସାମାଜିକ ଉପଯୋଗିତା ଅନସ୍ୱୀକାର୍ଯ୍ୟ । ସାମାଜିକ ବିକାଶଧାରାରେ ଲୋକମାନଙ୍କ ମଧ୍ୟରେ କିପରି ଏକ ବିଚାରଶୀଳ ଜୀବନ ଦୃଷ୍ଟିର ପ୍ରସାର କରାଯାଇ ପାରିବ ସେ ନେଇ ବିହିତ ପଦକ୍ଷେପ ଆବଶ୍ୟକ । ବିଶେଷ କରି ଧର୍ମଗତ ଭାବପ୍ରବଣତା, ପାରଲୌକିକ ଭାବନା ଓ କୁସଂସ୍କାରର ବହୁଳ ପ୍ରଭାବ ଥିବା ଏକ ସମାଜରେ ହେତୁବାଦୀ ଜୀବନ ଦର୍ଶନର ବିକାଶ କରାଇବା ଏକ ବଡ଼ ଆହ୍ୱାନ କହିବାକୁ ହେବ । ସାଂପ୍ରତିକ ପରିସ୍ଥିତିରେ ଶିକ୍ଷା ଓ ବିଜ୍ଞାନର ଯେପରି ପ୍ରସାର ହେଉଛି ସେ କ୍ଷେତ୍ରରେ ହେତୁବାଦର ବିକାଶ ପାଇଁ ଜାତୀୟ ସ୍ତରରେ ପ୍ରୟାସ ହେବା ଆବଶ୍ୟକ । କାରଣ ଅହେତୁକ ଭାବନାର ପ୍ରସାର ଓ ତା'ର କୁପ୍ରଭାବ ପ୍ରତି ଉଦାସୀନ ରହିବା ଦ୍ୱାରା ସମାଜର ଗୁଣାତ୍ମକ ଅଭିବୃଦ୍ଧି ବାଧାପ୍ରାପ୍ତ ହୋଇଥାଏ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଦ୍ରୁତ ପ୍ରଗତି ସତ୍ତ୍ୱେ ବୈଜ୍ଞାନିକ ମାନସିକତାର ଯଥେଷ୍ଟ ପ୍ରସାର ହୋଇପାରୁ ନାହିଁ । ସୁତରାଂ ସମାଜର ବାହ୍ୟ ଅଭିବୃଦ୍ଧି ସହିତ ଜନମାନସରେ ହେତୁବାଦୀ ଚିନ୍ତନର ବିକାଶ ଘଟାଇବା ଏକ ସାଂସ୍କୃତିକ ଜାଗରଣ କହିଲେ ଅତ୍ୟୁକ୍ତି ହେବନାହିଁ । ବାହ୍ୟ ବିକାଶ ସହିତ ସମତାଳ ରକ୍ଷା କରି ସାଂସ୍କୃତିକ ପରିବର୍ତ୍ତନ ଅଣାଯାଇ ପାରିଲେ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ହୋଇପାରିବ । ଲୋକମାନେ ସେମାନଙ୍କର ବିଶ୍ୱାସ,ସାମାଜିକ ସମ୍ବନ୍ଧ, କର୍ତ୍ତବ୍ୟ ଓ ବୃହତ୍ତର ମାନବ ସମାଜ ପ୍ରତି ଉତ୍ତର ଦାୟିତ୍ୱ ନେଇ ଏକ ବିଚାରଶୀଳ ଆଭିମୁଖ୍ୟ ଗ୍ରହଣ କଲେ ସମାଜର ଗୁଣାତ୍ମକ ଅଭିବୃଦ୍ଧି ସମ୍ଭବ ହେବ ।

ଉପସଂହାରରେ ଏହା କହିବା ସମୀଚୀନ ଯେ ବିଚାରଶୀଳତା, ନୈତିକତା ଓ ସର୍ବୋପରି ମାନବିକତା ହେଉଛି ହେତୁବାଦର ମୌଳିକ ଭିତ୍ତି । ହେତୁବାଦ ସଭ୍ୟ ଜୀବନଧାରାର ଏକ ଅପରିହାର୍ଯ୍ୟ ଅଙ୍ଗ । ହେତୁବାଦର ସାମାଜିକ ଅଙ୍ଗୀକାରବୋଧ ମଧ୍ୟ ଅନସ୍ୱୀକାର୍ଯ୍ୟ । ଏହି ଜୀବନ ଦର୍ଶନ ବ୍ୟକ୍ତିଗତ ଓ ସାମୂହିକ ଶ୍ରେୟ ସାଧନ ପାଇଁ ଅଭିପ୍ରେତ । ଏହାର ପ୍ରସାର ସମାଜକୁ ଉନ୍ନତ, ପ୍ରଗତିଶୀଳ ଓ ସଂସ୍କୃତି ସଂପନ୍ନ କରିବା ବେଳେ ଏହାର ଅଭାବ ସମାଜକୁ ବୌଦ୍ଧିକ ଓ ନୈତିକ ମାନଦଣ୍ଡରୁ କ୍ଷୟଶୀଳ କରାଇଥାଏ ।

■■

# ସାହିତ୍ୟର ଦିଗନ୍ତ

ଭାଷା ମାଧ୍ୟମରେ ଜୀବନର ସୂକ୍ଷ୍ମ ଅନୁଭୂତି ଓ କଳ୍ପନାର ଏକ କଳାତ୍ମକ ଅଭିବ୍ୟକ୍ତିକୁ ସମ୍ଭବତଃ ସାହିତ୍ୟ କୁହାଯାଏ । ଏହି ଅଭିବ୍ୟକ୍ତି ଭିତରେ ମଣିଷ ମନର ଯେଉଁ ସୃଜନାତ୍ମକ ପରିପ୍ରକାଶ ସାହିତ୍ୟର ବିଭିନ୍ନ ବିଭାଗ ଦେଇ ପ୍ରକାଶ ଲାଭ କରିଥାଏ ତାହା ସମାଜର ସାଂସ୍କୃତିକ ଉନ୍ମେଷ ଘଟାଇବାରେ ଏକ ପ୍ରମୁଖ ଭୂମିକା ନେଇଥାଏ । ଏପରିକି ସମାଜରେ ମୌଳିକ ପରିବର୍ତ୍ତନ ଆନୟନ କରିବାରେ ସାହିତ୍ୟକୃତି ବହୁ ସମୟରେ ପ୍ରେରଣାର ଉତ୍ସ ହୋଇଥାଏ । ବ୍ୟଷ୍ଟି ଜୀବନରେ ନୂତନ ମୂଲ୍ୟବୋଧ ସୃଷ୍ଟି କରି ସମୟରେ ସମାଜକୁ ଦିଗ୍‌ଦର୍ଶନ ଦେଉଥିବାରୁ ସାହିତ୍ୟ କୃତି ଭିତରେ ଜନ ଜୀବନର ଭାବଗତ ଓ ମାନସିକ ଚେତନାର ପରିଚୟ ମିଳିଥାଏ । କୌଣସି ସମାଜରେ ବ୍ୟକ୍ତିମାନଙ୍କର ରୁଚିବୋଧ, ସୌନ୍ଦର୍ଯ୍ୟବୋଧ ଓ ମୂଲ୍ୟବୋଧ ଏହାର ସାହିତ୍ୟ ସୃଷ୍ଟି ଭିତରେ ବହୁ ସମୟରେ ପ୍ରତିଫଳିତ ହୋଇଥାଏ । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ ସାମାଜିକ ପରିବେଶ ଓ ଘଟଣା ପ୍ରବାହ ସର୍ବଦା ସାହିତ୍ୟର ଆଧାର ହୋଇଥାଏ । ଉନ୍ନତ ସୃଷ୍ଟିଧର୍ମୀ ସାହିତ୍ୟ କୃତି ସାହିତ୍ୟିକର ସହଜାତ କଳ୍ପନା ଓ ତୀକ୍ଷ୍ଣ ଅନୁଭୂତିର ପରିପ୍ରକାଶ ହେଲେ ବି ଏହି କଳ୍ପନାର ଆଧାର ହୋଇଥାଏ ସାମାଜିକ ପରିବେଶ । ଅର୍ଥାତ୍ ସାମାଜିକ ଜୀବନର ଘଟଣା ପ୍ରବାହ ଓ ଜନ ଜୀବନର ନୈତିକ ଦ୍ୱନ୍ଦ୍ୱ, ଆଦର୍ଶବୋଧ ଓ ସମସ୍ୟା ଇତ୍ୟାଦିକୁ ଭିତ୍ତି କରି ଲେଖକର କଳ୍ପନା ରୂପ ନେଇଥାଏ । ମୋଟ ଉପରେ କହିବାକୁ ଗଲେ ସାହିତ୍ୟ ଯେଉଁପରି ସାମାଜିକ ଚେତନାର ବିକାଶ ଓ ଉନ୍ନତ ମୂଲ୍ୟବୋଧ ସୃଷ୍ଟି କରିବାରେ ସହାୟକ ହୋଇଥାଏ ସେହିପରି ସମାଜ ସାହିତ୍ୟ ଚେତନା ପାଇଁ ଆଧାର ହୋଇଥାଏ, ଅର୍ଥାତ୍ ସାହିତ୍ୟ ଓ ସମାଜ ଭିତରର ସମ୍ବନ୍ଧକୁ ଅସ୍ୱୀକାର କରାଯାଇନପାରେ ।

ସାହିତ୍ୟ ଓ ସମାଜ ଭିତରେ ଏପରି ଏକ ନିଗୂଢ଼ ସମ୍ବନ୍ଧ ରହିଥିଲେ ବି ପ୍ରତ୍ୟେକ ସାହିତ୍ୟ ସୃଷ୍ଟିକୁ ସାମାଜିକ ଜୀବନର ପ୍ରତିଫଳନ ଭାବରେ ଗ୍ରହଣ କରିହେବ ନାହିଁ । ଏପରିକି ସାମାଜିକ ଜୀବନର ବାସ୍ତବ ଚିତ୍ର ଦେବାରେ ଅନେକ ସମୟରେ ସାହିତ୍ୟିକର ଅନୁଭୂତି ଓ କଳାତ୍ମକ ଅଭିବ୍ୟକ୍ତି ବାଧାପ୍ରାପ୍ତ ହୋଇପାରେ ବୋଲି ବି ଯୁକ୍ତି

କରାଯାଇପାରେ । ସାମାଜିକ ଜୀବନର ବସ୍ତୁନିଷ୍ଠ ଚିତ୍ରଣ ଭିତରେ ସାହିତ୍ୟିକର କଳାତ୍ମକ ଅଭିବ୍ୟକ୍ତିର ସୂକ୍ଷ୍ମତା ବା ଗଭୀରତା ବାଧାପ୍ରାପ୍ତ ହେବାର ସମ୍ଭାବନା ଥିବାରୁ "କଳା କଳା ପାଇଁ" ହୁଏତ ଏହା କେହି କହିପାରନ୍ତି । ଅର୍ଥାତ୍ ସାହିତ୍ୟିକ ନିଜର ସୃଷ୍ଟି ଭିତରେ ଜୀବନର ସୂକ୍ଷ୍ମ ଅନୁଭୂତି ଓ ଆବେଗର କଳାତ୍ମକ ପ୍ରକାଶ କଲାବେଳେ ସାମାଜିକ ଜୀବନର ଚିତ୍ର ଦେବାକୁ ବଚନବଦ୍ଧ ନୁହେଁ । ସୁତରାଂ ସାମାଜିକ ଜୀବନର ବସ୍ତୁନିଷ୍ଠ ଅଭିବ୍ୟକ୍ତି ସାହିତ୍ୟର ଆଙ୍ଗିକତା ମାତ୍ର ଏହା ସାହିତ୍ୟର ଅନ୍ତଃସ୍ୱର ନୁହେଁ ।

ଏହି ଯୁକ୍ତିକୁ ଗ୍ରହଣ କରାଗଲେ ବି ଯେକୌଣସି ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟିକୁ ମୂଲ୍ୟାୟନ କଲା ସମୟରେ ତାହା କେତେ ଦୂର ଜନଜୀବନର ଚିତ୍ର ଦେବାରେ ସଫଳ ହୋଇଛି ଓ କେଉଁ ମୂଲ୍ୟବୋଧର ଅବତାରଣା କରିଛି ତାହା ବିଚାର୍ଯ୍ୟ ହୋଇଥାଏ । ଘଟଣା ପ୍ରବାହର ବର୍ଣ୍ଣନା ବା ଚରିତ୍ରର ମୂଲ୍ୟାୟନ କରିବା ସମୟରେ ଶିଳ୍ପସୂରୀ କେଉଁ ପ୍ରକାରର ମୂଲ୍ୟବୋଧ ବା ବାର୍ତ୍ତା ତାଙ୍କର ଲେଖନୀ ଭିତରେ ବ୍ୟକ୍ତ କରିଛନ୍ତି ତା'ର ଗୁଣାତ୍ମକ ମାନରେ ତାଙ୍କର ଶିଳ୍ପ ସୃଷ୍ଟିକୁ ମୂଲ୍ୟାୟନ କରାଯାଏ । ଅବଶ୍ୟ ଏହା ମଧ୍ୟ ଅନସ୍ୱୀକାର୍ଯ୍ୟ ଯେ ସାହିତ୍ୟିକ ନିଜର ସୃଷ୍ଟି ଭିତରେ ନୀତି ଶିକ୍ଷା ଦେବାକୁ ବାଧ ନୁହେଁ । କେବଳ ନୀତି ବୟାନ କରୁଥିବା ଅଭିବ୍ୟକ୍ତିକୁ ସାହିତ୍ୟ ଆଖ୍ୟା ଦିଆଯାଇ ନ ପାରେ । କିନ୍ତୁ ଏହାର ଅର୍ଥ ମଧ୍ୟ ନୁହେଁ ଯେ ଘଟଣା ପ୍ରବାହର ବର୍ଣ୍ଣନାରେ ବା ଚରିତ୍ର ମୂଲ୍ୟାୟନରେ ସାହିତ୍ୟିକ ସଂପୂର୍ଣ୍ଣ ନୀତି ନିରପେକ୍ଷ ରହିବ । ବରଂ ପ୍ରତ୍ୟେକ ଭାଷା ସାହିତ୍ୟରେ ଯେଉଁ ସବୁ କୃତି ଭିତର ଦେଇ ଜନସମାଜକୁ ମାନବିକ ମୂଲ୍ୟବୋଧ ଓ ଉନ୍ନତ ଜୀବନର ଗଭୀରତମ ଭାବନା ପ୍ରତି ଦିଗ୍‌ଦର୍ଶନ ଥାଏ ତାହା ଉନ୍ନତ ସାହିତ୍ୟର ମର୍ଯ୍ୟାଦା ଲାଭ କରେ । ଶିଳ୍ପସୂରୀଙ୍କର ସୃଷ୍ଟି ଭିତରେ ଏହି ଅନ୍ତଃସ୍ୱର ଯେତିକି ସ୍ପଷ୍ଟ ହୋଇଥାଏ ଓ ତାଙ୍କର ଶିଳ୍ପ ନୈପୁଣ୍ୟ ଯେତିକି ବାସ୍ତବଧର୍ମୀ ହୋଇଥାଏ ସେ ସେତିକି ଉନ୍ନତ ସ୍ରଷ୍ଟାର ମର୍ଯ୍ୟାଦା ଲାଭ କରନ୍ତି । ବସ୍ତୁତଃ ସାଂପ୍ରତିକ ଯୁଗରେ ଭାବବାଦୀ ଦୃଷ୍ଟିଭଙ୍ଗୀ ଅପେକ୍ଷା ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଅଧିକ ସ୍ୱୀକୃତ ହେବାରେ ଲାଗିଛି ।

ସୁତରାଂ ସାଂପ୍ରତିକ ମାନଦଣ୍ଡରେ ସାହିତ୍ୟ-ଚେତନା ସମାଜ-ଚେତନାରୁ ମୁକ୍ତ ନୁହେଁ । ସାହିତ୍ୟିକର ଯେ ସମାଜ ପାଖରେ ଏକ ଅଙ୍ଗୀକାର ବା କମିଟ୍‌ମେଣ୍ଟ (Commitment) ରହିଛି ଏହା ପ୍ରତ୍ୟେକ ସାହିତ୍ୟରେ ଅଧିକରୁ ଅଧିକ ଭାବରେ ସ୍ୱୀକୃତ ହେବାରେ ଲାଗିଛି । ଏକ ନୈର୍ବ୍ୟକ୍ତିକ ସୃଷ୍ଟି ମାଧ୍ୟମରେ ସମକାଳୀନ ସମାଜର ଚିତ୍ର ଅଙ୍କନ କରି ସାମାଜିକ ଅବକ୍ଷୟତାକୁ ଦୂର କରିବା ସମ୍ଭବତଃ ସାହିତ୍ୟିକର ଏକ ବଡ଼ କମିଟ୍‌ମେଣ୍ଟ । ସମକାଳୀନ ଜୀବନ ପ୍ରବାହର ଏକ କଳାତ୍ମକ ଅଭିବ୍ୟକ୍ତି ଭିତରେ ସାହିତ୍ୟିକ ଯେଉଁ ନୈତିକ ନିର୍ଯ୍ୟାସ ନିଜର ବାର୍ତ୍ତା ଭାବରେ ପାଠକଙ୍କ ପାଖରେ ଉପସ୍ଥାପନ କରିଥାନ୍ତି ତାହାହିଁ ହୋଇଥାଏ ତାଙ୍କ କଳାକୃତିର ଅନ୍ତଃସ୍ୱର । ଏହି ଅନ୍ତଃସ୍ୱର ବହୁ ଭାବରେ ସମକାଳୀନ

ସମାଜ ଚେତନାର ବାର୍ତ୍ତାବହ ହୋଇଥାଏ । ବସ୍ତୁତଃ ଆଜି ଉନ୍ନତ ସାହିତ୍ୟ କୃତି ସାମାଜିକ ଜୀବନର ପ୍ରତିଫଳନ ସହ ସମାଜ ପାଇଁ ଏକ ଦିଗଦର୍ଶକର ଭୂମିକା ନେଇ ପାରିଛି ।

ସାହିତ୍ୟର ଏହି ନୂତନ ମୂଲ୍ୟବୋଧ ଓ ସାହିତ୍ୟିକର ଏହି ବଚନବଦ୍ଧତାକୁ ଏକ ଆଧୁନିକ ନିର୍ଯ୍ୟାସ ବୋଲି କୁହାଯାଇ ପାରେ । ଅବଶ୍ୟ ଅତୀତରେ ସାହିତ୍ୟିକର ଯେ ଏପ୍ରକାର କମିଟ୍‌ମେଣ୍ଟ ନ ଥିଲା ବା ବିଶ୍ୱ ସାହିତ୍ୟରେ ଏହି ପ୍ରକାର କୃତିର ଯେ ଅଭାବ ରହିଛି ତାହା ନୁହେଁ । କିନ୍ତୁ ସାହିତ୍ୟ ଚେତନା ଦୀର୍ଘ ଦିନ ଧରି ସାଧାରଣ ଜନ ଜୀବନର ଚିତ୍ର ପ୍ରଦାନ କରିବାର ଦାୟିତ୍ୱବୋଧକୁ ଉଚ୍ଚ ମର୍ଯ୍ୟାଦା ଦେଉ ନ ଥିଲା । ସାଧାରଣ ମଣିଷର ଘନଘଟା, ଦ୍ୱନ୍ଦ୍ୱ ଓ ମନସ୍ତତ୍ତ୍ୱକୁ ନେଇ ସାହିତ୍ୟ ସୃଷ୍ଟି କରିବାର ପରମ୍ପରା ସାହିତ୍ୟର ଦୀର୍ଘ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ଏଥିପାଇଁ ଅନେକ କାରଣ ଭିତରୁ ସମାଜଶାସ୍ତ୍ରିକ କାରଣ ଅଧିକ ମହତ୍ତ୍ୱପୂର୍ଣ୍ଣ । ସମାଜର ଭାବନା ଭିତରେ ସବୁ ମଣିଷଙ୍କର ଜୀବନକୁ ଗ୍ରହଣ କରିବା ଏକ ଐତିହାସିକ ଘଟଣା କହିବାକୁ ହେବ । କାରଣ ଅତୀତରେ ସମାଜର ପରିକଳ୍ପନା ଭିତରେ ସମାଜର ଶାସକ ଓ ସାମନ୍ତମାନେ ହିଁ ମୁଖ୍ୟ ସ୍ଥାନ ପାଇଥିଲେ । କିନ୍ତୁ ଏହି ଭାବନାର ପରିବର୍ତ୍ତନ ହୋଇ ଆସ୍ତେ ଆସ୍ତେ ସମାଜର ପରିକଳ୍ପନା ଭିତରେ ସମାଜର ସବୁ ମଣିଷ ସ୍ଥାନ ପାଇଲେ । ସମାଜର ବସ୍ତୁନିଷ୍ଠ ଅଧ୍ୟୟନ ଫଳରେ ସମାଜ ବିଜ୍ଞାନର ଅଭ୍ୟୁଦୟ ହେଲା ଓ ସମାଜର କାର୍ଯ୍ୟକରଣରେ ସାଧାରଣ ମଣିଷର ଅବଦାନ ସ୍ୱୀକୃତ ହେଲା । ଫଳରେ ସମାଜ ଓ ସାହିତ୍ୟ ଚେତନା ଭିତରେ ଭାବଗତ ପରିବର୍ତ୍ତନର ସୂତ୍ରପାତ ହେଲା । ଫଳରେ ସାଧାରଣ ମଣିଷ ଓ ତା'ର ଜୀବନ ଜଞ୍ଜାଳର ଘନଘଟା ସାହିତ୍ୟ ସୃଷ୍ଟି ଭିତରେ ସ୍ଥାନ ପାଇଲା ।

ସମାଜ ବିଜ୍ଞାନର ଉତ୍ପତ୍ତି ସହିତ ସାହିତ୍ୟରେ ଯେ କେବଳ ଭାବଗତ ଓ ରୁଚିଗତ ପରିବର୍ତ୍ତନ ଘଟିଲା ତା' ନୁହେଁ, ସାମାଜିକ ବାସ୍ତବତାକୁ ପ୍ରକାଶ କରିବା ସାହିତ୍ୟର ମୂଲ୍ୟବୋଧ ଭାବରେ ସ୍ୱୀକୃତ ହେଲା । ସାମାଜିକ ଜୀବନର ଦ୍ୱନ୍ଦ୍ୱ ଓ ଆଦର୍ଶଚୟ ସାଧାରଣ ଚରିତ୍ର ଭିତର ଦେଇ ପ୍ରତିଫଳିତ ହେଲା । ବିଶେଷତଃ ସାଧାରଣ ମଣିଷର ହସ, କାନ୍ଦ, ଆଶା, ନୈରାଶ୍ୟ, ମହତ୍ତର ଭାବନା ଓ ନୈତିକ ସ୍ଖଳନ ବ୍ୟକ୍ତ କରିବା ଉଚ୍ଚ ସାହିତ୍ୟ କୃତିର ସ୍ୱୀକୃତ ଆଦର୍ଶ ବୋଲି ଗୃହୀତ ହେଲା । ଏହା ସହିତ ବୈଜ୍ଞାନିକ ବିଚାରଧାରାର ଅଭ୍ୟୁଦୟ ଫଳରେ ସମାଜର ବହୁ ସ୍ତରରେ ଯେଉଁ ନୂତନ ଆଦର୍ଶ, ଚିନ୍ତାଧାରାର ସଂଘର୍ଷ, ମାନସିକ ସଂଘାତ, ନୈତିକ ସଙ୍କଟ ଓ ଯୁଗ ଯନ୍ତ୍ରଣାର ଉଦ୍ରେକ ହେଲା ତାହା ସାହିତ୍ୟ ସୃଷ୍ଟି ପାଇଁ ଅସଂଖ୍ୟ ସମ୍ଭାବନାର ଦିଗନ୍ତକୁ ଉନ୍ମୋଚିତ କରିଦେଲା । ଏହି ସାମାଜିକ ପରିବର୍ତ୍ତନ ସହିତ ସାହିତ୍ୟ ଭିତରେ ଆରମ୍ଭ ହେଲା ଏକ ବାସ୍ତବବାଦୀ ଆନ୍ଦୋଳନ ।

ସାହିତ୍ୟରେ ସାମାଜିକ ବାସ୍ତବତାର ପ୍ରତିଫଳନ ପଶ୍ଚାତରେ ଅନେକ ପାରିପାର୍ଶ୍ୱିକ ଘଟଣାବଳୀ ମଧ୍ୟ ଇନ୍ଧନ ଯୋଗାଇଲା । ବିଶେଷକରି ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବୈଜ୍ଞାନିକ କ୍ରିୟାଶୀଳତାର ଅଭ୍ୟୁଦୟ ସହିତ ରାଜନୀତି, ଅର୍ଥନୀତି ଓ ସମାଜର ବହୁ କ୍ଷେତ୍ରରେ ଯେଉଁ ନୂତନ ବିଚାରଧାରା ଓ ପ୍ରକଳ୍ପର ସମ୍ଭାବନା ସୃଷ୍ଟି ହେଲା ତାହା ବି ସାହିତ୍ୟରେ ଏକ ବାସ୍ତବବାଦୀ ଦୃଷ୍ଟିକୋଣକୁ ଅଧିକ ପ୍ରୋତ୍ସାହନ ଦେଇଥିଲା । ପୁନର୍ଜାଗରଣ ଓ ନବସଂସ୍କାର ଯୁଗରୁ ସୃଷ୍ଟି ହୋଇଥିବା ବିଚାର ବିମର୍ଷ ସମାଜରେ ନୂତନ ଆଲୋଡ଼ନ ସୃଷ୍ଟି କରିଥିଲା । ତା'ର ପ୍ରଭାବରେ ମଣିଷ ନୂତନ ସମ୍ଭାବନା ଓ ପରିସ୍ଥିତିର ସମ୍ମୁଖୀନ ହେଲା ଓ ସମାଜରେ ରୀତି, ନୀତି ଓ ବିଚାର ବିମର୍ଷରେ ଯୁଗାନ୍ତକାରୀ ପରିବର୍ତ୍ତନ ମାନ ଘଟିଲା । ବିଶେଷକରି ଫରାସୀ ରାଷ୍ଟ୍ରବିପ୍ଳବ ଓ କେତେକ ରାଜନୈତିକ ମୁକ୍ତି ଆନ୍ଦୋଳନ ବ୍ୟକ୍ତି ସ୍ୱାଧୀନତାର ମନୋଭାବ ସୃଷ୍ଟି କଲା । ନିରଙ୍କୁଶ ରାଜତନ୍ତ୍ର ଓ ସାମନ୍ତବାଦ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ ପାଇ ରାଜନୈତିକ ସ୍ୱାଧୀନତା ପାଇଁ ଚେତନା ଜାଗ୍ରତ କଲା । ଏହାର ପରିଣାମରେ ଧର୍ମାନ୍ଧତା ଓ ଉଗ୍ରମତବାଦୀତା ବିରୁଦ୍ଧରେ ସ୍ୱର ଗୁଞ୍ଜରିତ ହେଲା ଓ ଧର୍ମ କ୍ଷେତ୍ରରେ ସହନଶୀଳତା ସୃଷ୍ଟି ହେବାଦ୍ୱାରା ବ୍ୟକ୍ତି ସ୍ୱାଧୀନତାର ସ୍ୱର ତୀବ୍ର ହୋଇଉଠିଲା । ରାଜତନ୍ତ୍ର, ସାମନ୍ତବାଦ ଓ ଧାର୍ମିକ ମୌଳବାଦ ବିରୁଦ୍ଧରେ ଯେଉଁ ଦୃଷ୍ଟିକୋଣ ସୃଷ୍ଟି ହେଲା ତାହା ବ୍ୟକ୍ତି ମର୍ଯ୍ୟାଦା ପାଇଁ ଚେତନା ଜାଗ୍ରତ କଲା । ମୋଟ ଉପରେ କହିବାକୁ ଗଲେ ରାଜନୈତିକ ଅଧିକାର, ଧର୍ମୀୟ ସହନଶୀଳତା ଓ ସାମନ୍ତବାଦୀ ଅର୍ଥନୀତିରୁ ମୁକ୍ତି ମନୋଭାବ ଫଳରେ ଯେଉଁ ନୂତନ ସାମାଜିକ ପ୍ରବାହର ସୃଷ୍ଟି ହେଲା ତାହା ସାହିତ୍ୟ କ୍ଷେତ୍ରରେ ଏକ ବାସ୍ତବବାଦୀ ଆନ୍ଦୋଳନର ସୂତ୍ରଧର ହେଲା ।

ଏହି ପରିପ୍ରେକ୍ଷୀରେ ଯେଉଁ ସବୁ ଯୁଗାନ୍ତକାରୀ ଘଟଣା ପ୍ରବାହ ସାହିତ୍ୟରେ ବାସ୍ତବବାଦୀ ପରମ୍ପରା ସୃଷ୍ଟି କଲା ତା'ର ବିଚାର୍ଯ୍ୟ ଅପ୍ରାସଙ୍ଗିକ ନୁହେଁ । ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୁଗରୁ ଉଦ୍ଭବ ବୈଜ୍ଞାନିକ ବିଚାରଧାରାର ପରିଣାମରୁ ଊନବିଂଶ ଶତାବ୍ଦୀରେ କେତେକ ଯୁଗାନ୍ତକାରୀ ଆବିଷ୍କାର ଓ ଭାବନା ଏହି ଆନ୍ଦୋଳନକୁ ପ୍ରେରଣା ଦେଇଥିଲା । ଏହି ପରିପ୍ରେକ୍ଷୀରେ ଚାର୍ଲସ ଡାରଉଇନଙ୍କର ଜୈବିକ ବିବର୍ତ୍ତନବାଦ, କାର୍ଲମାର୍କସଙ୍କର ଦ୍ୱନ୍ଦାତ୍ମକ ବସ୍ତୁବାଦ ଓ ସିଗମଣ୍ଡ ଫ୍ରଏଡଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଯଥାର୍ଥରେ ଉଲ୍ଲେଖଯୋଗ୍ୟ । ଏହି ଚିନ୍ତାନାୟକମାନଙ୍କର ବୌଦ୍ଧିକ ଅବଦାନ ପୂର୍ବରୁ ବୈଜ୍ଞାନିକ ପଦ୍ଧତି ଓ ଜ୍ଞାନର ମୌଳିକ ପ୍ରଣାଳୀ ନେଇ ଦାର୍ଶନିକ ସିଦ୍ଧାନ୍ତର ବ୍ୟାଖ୍ୟା ହୋଇ ସାରିଥିଲା । ଅନୁଭବବାଦୀ ପରମ୍ପରାର ବିଶିଷ୍ଟ ଦାର୍ଶନିକ ଫ୍ରାନ୍‌ସିସ ବେକନ ଓ ଜନ୍ ଲକ୍ ବସ୍ତୁନିଷ୍ଠ ଜ୍ଞାନର ସ୍ୱରୂପ ଓ ପ୍ରଣାଳୀକୁ ଯେପରି ବିଶ୍ଳେଷଣ କଲେ ତଦ୍ୱାରା ଯୁଗ ଯୁଗର ବିଶ୍ୱାସ ଭୁଷୁଡ଼ି ପଡ଼ିବା ସହିତ ଯୁଗାନ୍ତକାରୀ ବୈଜ୍ଞାନିକ ଉଦ୍ଭାବନ ଗୁଡ଼ିକ ସମ୍ଭବ ହୋଇପାରିଲା । ବିଜ୍ଞାନ ଚିନ୍ତାରାଜ୍ୟରେ ଏହି ମୂଲ୍ୟବୋଧ ସୃଷ୍ଟି କଲା ଯେ

ପ୍ରକୃତିରେ ଯାହା କିଛି ସୃଷ୍ଟି ହୋଇଥାଏ ତାହା ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ବିଦ୍ୟମାନ ଥାଏ ଓ କୌଣସି ଘଟଣା ପଶ୍ଚାତରେ ଅଲୌକିକ ବା ଅତୀନ୍ଦ୍ରିୟ କାରଣ ବିଦ୍ୟମାନ ନ ଥାଏ । ମଣିଷର ସୃଷ୍ଟି ନେଇ ଧର୍ମଗ୍ରନ୍ଥରେ ରହିଥିବା ବିଶ୍ୱାସକୁ ଅସତ୍ୟ ପ୍ରମାଣିତ କରି ଡାରଉଇନ୍ ତାଙ୍କର ଜୈବିକ ବିବର୍ତ୍ତନବାଦ ମଧ୍ୟରେ ପ୍ରତିଷ୍ଠା କଲେ ଯେ ମଣିଷ କୌଣସି ସର୍ବଶକ୍ତିମାନ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇନାହିଁ, ପରନ୍ତୁ ବିବର୍ତ୍ତନଧାରାରେ ଲକ୍ଷ ଲକ୍ଷ ବର୍ଷର ପରିବର୍ତ୍ତନ ପ୍ରକୃତି ଓ ପରିବେଶ ସହିତ ସମତାଳ ଗତିରେ ଚାଲି ଆସିଛି ଓ ବଞ୍ଚି ରହିବା ପାଇଁ ଅବିରତ ସଂଗ୍ରାମ ଭିତରେ ଯୋଗ୍ୟତମ ପ୍ରାଣୀ ହିଁ ତିଷ୍ଠି ରହିପାରିଛି । ସେ ଦର୍ଶାଇଲେ ଯେ ଜୀବନ ସଂପୂର୍ଣ୍ଣ ଭାବରେ ଜୈବିକ ନିୟମର ଅଧୀନ ଓ ମଣିଷର ସୃଷ୍ଟି ପଶ୍ଚାତରେ କୌଣସି ଲକ୍ଷ୍ୟ ବା ଐଶ୍ୱରୀୟ ଉଦ୍ଦେଶ୍ୟ ନାହିଁ । ତାଙ୍କ ସମସାମୟିକ କାଳରେ କାର୍ଲ ମାର୍କସ ସମାଜର ଘଟଣା ପ୍ରବାହକୁ ବିଶ୍ଳେଷଣ କରି ଆମର ସକଳ ମୂଲ୍ୟବୋଧ, ସାମାଜିକ ଅନୁଷ୍ଠାନ, ଧର୍ମଧାରଣା ଇତ୍ୟାଦି ଅର୍ଥନୈତିକ କାରଣ ସମୂହ ଉପରେ ଆଧାରିତ ବୋଲି ଦର୍ଶାଇଲେ । ଶ୍ରେଣୀ ସଂଘର୍ଷ ମଧ୍ୟ ଦେଇ ଏକ ଶ୍ରେଣୀହୀନ ସମାଜର ସୃଷ୍ଟିକୁ ସେ ତାଙ୍କର ବିଶ୍ଳେଷଣରେ ବ୍ୟକ୍ତ କଲେ । ତାଙ୍କର ଶ୍ରେଣୀ ବିହୀନ ସମାଜବାଦୀ ରାଷ୍ଟ୍ର ପ୍ରକଳ୍ପ ଶିଳ୍ପ ବିପ୍ଳବ ପରବର୍ତ୍ତୀ ଯୁଗରେ ମୁଣ୍ଡ ଟେକୁଥିବା ପୁଞ୍ଜିବାଦ ଓ ଶୋଷଣ ବିରୁଦ୍ଧରେ ଶ୍ରମିକ ଶ୍ରେଣୀକୁ ସଂଘବଦ୍ଧ ହେବା ପାଇଁ ପ୍ରେରଣା ଦେଲା । ଏପରିକି ଏକ ଶ୍ରେଣୀହୀନ ସାମ୍ୟ ସମାଜ କେତେକ ଦେଶ ପାଇଁ ଆଦର୍ଶ ରାଷ୍ଟ୍ର ଭାବରେ ସ୍ୱୀକୃତ ହେଲା । ଶ୍ରେଣୀହୀନ ରାଷ୍ଟ୍ର ଗଠନର ପରିକଳ୍ପନା ଭିତରେ ସମାଜ ବିଜ୍ଞାନ ଅନ୍ୟ ଏକ ମୂଲ୍ୟବୋଧ ସୃଷ୍ଟି କଲା । ପ୍ରାକୃତିକ ବିଜ୍ଞାନ ଯେପରି ପ୍ରାକୃତିକ ଘଟଣା ପଶ୍ଚାତରେ ପ୍ରାକୃତିକ ନିୟମ ଜନିତ କାର୍ଯ୍ୟକାରଣ ସମ୍ବନ୍ଧକୁ ଦେଖାଇଲା ସେପରି ସମାଜ ବିଜ୍ଞାନ ସମାଜର ଘଟଣା ପ୍ରବାହ କିପରି ସାମାଜିକ ଶକ୍ତିଦ୍ୱାରା ନିୟନ୍ତ୍ରିତ ତାହା ପ୍ରକାଶ କଲା । କୌଣସି ସାମାଜିକ ପରିସ୍ଥିତିକୁ ନିୟନ୍ତ୍ରଣ କରୁଥିବା ସାମାଜିକ ଶକ୍ତିକୁ ବିଶ୍ଳେଷଣ କରିବାଦ୍ୱାରା ଏହି ବିଶ୍ୱାସ ସୃଷ୍ଟି ହେଲା ଯେ ସଚେତନ ଚେଷ୍ଟା ଫଳରେ ମଣିଷ ତା'ର ସଭ୍ୟତା ଓ ସଂସ୍କୃତିର ଗତି ବଦଳାଇ ଦେଇପାରିବ ।

ଡାରଉଇନ ଓ ମାର୍କସଙ୍କର ବିଶ୍ଳେଷଣ ସାଙ୍ଗକୁ ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସିଗମଣ୍ଡ ଫ୍ରଏଡ୍ ମଣିଷର ମାନସିକ ପ୍ରକ୍ରିୟାକୁ ବିଶ୍ଳେଷଣ କରି ଜୀବନର ଯେଉଁ ଛବିଟି ପ୍ରଦାନ କଲେ ତାହା ଏକ ଜଡ଼ବାଦ ଭିତ୍ତିକ ବାସ୍ତବବାଦକୁ ପୁଷ୍ଟ କଲା । ମଣିଷ ମନର ବିଶ୍ଳେଷଣ କରି ଫ୍ରଏଡ ମଣିଷର ପ୍ରବୃତ୍ତିକୁ ମନର ଦେହଜାତ ବାସନା ବୋଲି ଦର୍ଶାଇଲେ । ତାଙ୍କ ମତରେ ମଣିଷ ମନର ଅବଚେତନ ସ୍ତର ହେଉଛି ବ୍ୟକ୍ତିର ସକଳ ବାସନା ଓ କାମନାର ଗନ୍ତାଘର ଯାହା ତା'ର ସକଳ ଚେତନ ସ୍ତରର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରେ । ତାଙ୍କର ଏହି ବିଶ୍ଳେଷଣ ମଣିଷକୁ ମୁଖ୍ୟତଃ ଏକ ଇନ୍ଦ୍ରିୟ

ପରାୟଣ ଓ ପ୍ରବୃତ୍ତି ନିୟନ୍ତ୍ରିତ ପ୍ରାଣୀ ବୋଲି ଚିତ୍ରଣ କଲା । ଏହି ବିଶ୍ଲେଷଣ ସ୍ୱାର୍ଥପରତା, ଇନ୍ଦ୍ରିୟଲିପ୍ସା ଇତ୍ୟାଦି ଯେ ମଣିଷର ସହଜାତ ସ୍ୱଭାବ ଅଥଚ ଅହିଂସା, ନ୍ୟାୟପରାୟଣତା ଇତ୍ୟାଦି ଯେ ମଣିଷର ସାଂସ୍କୃତିକ ମୂଲ୍ୟବୋଧ ଏହା ଦର୍ଶାଇଲା ।

ଡାରଉଇନ, କାର୍ଲମାର୍କସ ଓ ଫ୍ରଏଡଙ୍କର ଅନେକ ମତ ପରବର୍ତ୍ତୀ ଗବେଷଣାରେ ତ୍ରୁଟିପୂର୍ଣ୍ଣ ମନେ ହୋଇଥିଲେ ବି ଏହିସବୁ ଭାବନା ସକଳ ବହୁ ସତ୍ୟ ଉଦ୍‌ଘାଟନ କରିବା ସହିତ ମଣିଷର ମାନସିକ ଦିଗ୍‌ବଳୟକୁ ବହୁତ ବିସ୍ତାର କରି ପାରିଥିଲା । ସେମାନଙ୍କର ସିଦ୍ଧାନ୍ତମାନ ମଣିଷର ଧର୍ମ, ମୂଲ୍ୟବୋଧ, ରାଜନୀତି, ଅର୍ଥନୀତି ସବୁରି କ୍ଷେତ୍ରରେ ଦ୍ରୁମୂଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ଏହି ପରିବର୍ତ୍ତନର ପ୍ରଭାବ ସାହିତ୍ୟରେ ମଧ ପ୍ରତିଫଳିତ ହେବାରେ ଲାଗିଲା । ସାଧାରଣ ମଣିଷର ହସ, କାନ୍ଦ, ମନସ୍ତାତ୍ତ୍ୱିକ ସଂଘାତ ଓ ସାମାଜିକ ସଙ୍କଟ ସାହିତ୍ୟର ପ୍ରଧାନ ଉପଜୀବ୍ୟ ହୋଇ ଉଠିଲା ।

ଏସବୁ ଘଟଣା ସହିତ ବିଗତ ଗୋଟିଏ ଶତାବ୍ଦୀ ଭିତରେ ମଣିଷର ଚିନ୍ତା ରାଜ୍ୟରେ ଯେଉଁ ଅଚିନ୍ତନୀୟ ପରିବର୍ତ୍ତନ ମାନ ସଂଘଟିତ ହୋଇଛି ତା'ର ପ୍ରଭାବ ବିଭିନ୍ନ ସାହିତ୍ୟ, ଦର୍ଶନ ସବୁରି କ୍ଷେତ୍ରରେ ପ୍ରତିଫଳିତ ହେବାରେ ଲାଗିଛି । ବିଭିନ୍ନ ଦେଶରେ ପ୍ରଯୁକ୍ତି ବିଦ୍ୟାର ପ୍ରଭୂତ ପ୍ରୟୋଗ ଫଳରେ ଅତୀତର କୃଷିଭିତ୍ତିକ ବା ଗ୍ରାମୀଣ ସମାଜ ଶିଳ୍ପ ଭିତ୍ତିକ ବା ସହରଭିତ୍ତିକ ସମାଜରେ ଦ୍ରୁତ ଗତିରେ ପରିବର୍ତ୍ତନ ହେବାରେ ଲାଗିଛି । ବିଜ୍ଞାନ ଓ କାରିଗରୀ କୌଶଳର ବିକାଶ ଯୋଗୁଁ ଜୀବନ ଧାରଣର ମାନ ଉନ୍ନତ ହେବା ସଙ୍ଗେ ସଙ୍ଗେ ଗମନାଗମନର ଉନ୍ନତି ଯୋଗୁଁ ରାଷ୍ଟ୍ର ରାଷ୍ଟ୍ର ମଧରେ ସାଂସ୍କୃତିକ ବିନିମୟ ଓ ସମନ୍ୱୟ ଯଥେଷ୍ଟ ବୃଦ୍ଧି ପାଇଛି । ଏହା ଫଳରେ ଏକ ଆନ୍ତର୍ଜାତିକ ମନୋଭାବ ଓ ବିଶ୍ୱଜନୀନ ଦୃଷ୍ଟିକୋଣ ଯଥେଷ୍ଟ ବିକାଶ ଲାଭ କରିଛି । ବୈଜ୍ଞାନିକ କ୍ରିୟାଶୀଳତାର ଅଭୂତପୂର୍ବ ସଫଳତା ମଣିଷ ସମାଜ ପାଇଁ ବହୁ ସୁଫଳ ଆଣିଥିଲେ ବି ପରୋକ୍ଷରେ ବହୁ ସମସ୍ୟା ଓ ସଙ୍କଟର ସୂତ୍ରପାତ କରାଇଛି । ଯନ୍ତ୍ର ଓ ଅଟୋମେସନ୍ ଉପରେ ମଣିଷର ନିର୍ଭରଶୀଳତା ଯେତିକି ବୃଦ୍ଧି ପାଉଛି ସମାଜରେ ବେକାରୀ ସମସ୍ୟା ସେତିକି ମୁଣ୍ଡ ଟେକୁଛି ଓ ବ୍ୟକ୍ତି ବହୁ ସମୟରେ ଭୟଙ୍କର ପ୍ରତିଯୋଗିତାର ସମ୍ମୁଖୀନ ହେଉଥିବାରୁ ନାନା ମନସ୍ତାତ୍ତ୍ୱିକ ଉତ୍ତେଜନା ସମାଜରେ ସୃଷ୍ଟି ହେବାରେ ଲାଗିଛି । ଏହା ସହିତ ଆଣବିକ ବିସ୍ଫୋରଣ ଓ ପ୍ରାକୃତିକ ପ୍ରଦୂଷଣ ପରି ଉତ୍କଟ ସମସ୍ୟାମାନ ମଣିଷ ସମାଜରେ ନାନା ପ୍ରକାର ମନସ୍ତାତ୍ତ୍ୱିକ ଉତ୍ତେଜନା ସୃଷ୍ଟି କରିବାରେ ଲାଗିଛି ।

ସମ୍ଭବତଃ ଏସବୁ କାରଣ ଯୋଗୁଁ ସାଂପ୍ରତିକ କାଳରେ ସାହିତ୍ୟ-ସୃଷ୍ଟି ମଧ ଦେଇ ଜନଜୀବନ ବିଷୟରେ ଏକ ନୈରାଶ୍ୟଜନକ ଚିତ୍ର ପ୍ରକାଶ ପାଉଛି । ବିଂଶ ଶତାବ୍ଦୀରେ ଦୃଷ୍ଟି ଆକର୍ଷଣ କରିଥିବା ଏକ ସାହିତ୍ୟ-ଦର୍ଶନ, ଅସ୍ତିତ୍ୱବାଦ, ସାମାଜିକ ଅସନ୍ତୋଷକୁ ଯଥେଷ୍ଟ ପ୍ରତିଫଳିତ କରିଛି । ଅସ୍ତିତ୍ୱବାଦ ବିଚାର ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ

ରହିଥିଲେ ବି ଅସ୍ତିତ୍ୱବାଦର ଜୀବନ ଦର୍ଶନ ଯେ ଏକ ଆଧୁନିକ ଯୁଗର ବିଚାର ବିମର୍ଶ ଏହା କୁହାଯାଇପାରେ । ପ୍ରକୃତିକୁ ବିଶ୍ଳେଷଣ କରୁଥିବା ବିଜ୍ଞାନର ବସ୍ତୁନିଷ୍ଠ ସାର୍ବଭୌମତ୍ୱ ବା କାର୍ଯ୍ୟକାରଣର ନିର୍ଦ୍ଧାରିତ ପ୍ରଣାଳୀ ଦେଇ ଜୀବନର ବ୍ୟାପକତାକୁ ଯେ ବୁଝି ହେବ ନାହିଁ ଓ ମଣିଷର ସଫଳତା, ବିଫଳତା, ସଂଶୟ, ଅନୁଭୂତି ଇତ୍ୟାଦି ଯେ ସେହି ଗୁଳା ଭିତରେ ଖାପ ଖାଇ ପାରିବେ ନାହିଁ ଏହା ଅସ୍ତିତ୍ୱବାଦ ପ୍ରକାଶ କରିଛି । ଯୁଦ୍ଧୋତ୍ତର ପୃଥିବୀରେ ଦୁଃଖ, ନୈରାଶ୍ୟ ଓ ହତାଶା ତଥା ମଣିଷର ଭବିଷ୍ୟତ ନେଇ ଯେଉଁ ଭୀତିପ୍ରଦ ସଙ୍କଟ ସୃଷ୍ଟି ହୋଇଥିଲା ତାହା ଅସ୍ତିତ୍ୱବାଦୀ ସାହିତ୍ୟ କୃତିଗୁଡ଼ିକରେ ନିଛକ ଭାବରେ ପ୍ରତିଫଳିତ ହୋଇଛି । ଏହା ସହିତ ଶିଳ୍ପୋନ୍ନତ ସମାଜରେ ବ୍ୟକ୍ତି ଯେଉଁ ଭୟଙ୍କର ପ୍ରତିଯୋଗିତା ଓ ମନସ୍ତାତ୍ତ୍ୱିକ ସଙ୍କଟର ସମ୍ମୁଖୀନ ହୋଇଛି ତାହା ବ୍ୟକ୍ତି ପାଇଁ କିପରି ଏକ ସାମାଜିକ ବିଚ୍ଛିନ୍ନତା ସୃଷ୍ଟି କରିଛି ତାହା ଅସ୍ତିତ୍ୱବାଦୀମାନେ ପ୍ରକାଶ କରିଛନ୍ତି । ଏହି ବିଚ୍ଛିନ୍ନତା ଦେଇ ମଣିଷ ବ୍ୟକ୍ତିଟିର ନିଃସଙ୍ଗତା, ଅସହାୟତା, ଲକ୍ଷ୍ୟହୀନତା ଓ ସନ୍ଦିଗ୍ଧତାକୁ ସେମାନେ ବେଶ୍ ଚମତ୍କାର ଭାବରେ ବ୍ୟକ୍ତ କରାଇଛନ୍ତି । ଯୁଦ୍ଧୋତ୍ତର ପୃଥିବୀରେ ଲେଖାଯାଇଥିବା ରାଶି ରାଶି ଉଦ୍ଭଟ ନାଟକ, କବିତା ଇତ୍ୟାଦି ଭିତର ଦେଇ ଯେଉଁ ଯୁଗ ଯନ୍ତ୍ରଣା ଓ ଅସୁସ୍ଥ ସମାଜର ଚିତ୍ର ପ୍ରକାଶ ପାଇଛି ତାହା ଜୀବନ ବିଷୟରେ ବହୁ ସମୟରେ ଏକ ନୈରାଶ୍ୟଜନକ ଚିତ୍ର ପ୍ରଦାନ କରିଥାଏ ।

ଅସ୍ତିତ୍ୱବାଦୀ ସାହିତ୍ୟ ସୃଷ୍ଟି ମଧ୍ୟରେ ଜୀବନର ନୈରାଶ୍ୟଜନକ ଚିତ୍ର ମିଳିଥିଲେ ବି ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ନେଇ ଅସ୍ତିତ୍ୱବାଦର କିଛିଟା ସ୍ୱକୀୟ ମୌଳିକତା ମଧ୍ୟ ପରିଲକ୍ଷିତ ହୋଇଥାଏ । ପରିସ୍ଥିତିର ଭୟାବହତା ଏବଂ ଜୀବନର ବ୍ୟଥା ଓ ଯନ୍ତ୍ରଣା ସଙ୍କଟ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଭିତରେ ଏହା ଏକ ମାନବବାଦୀ ଦୃଷ୍ଟିଭଙ୍ଗୀ ମଧ୍ୟ ପ୍ରକାଶ କରିଛି । ଜୀବନର ଉଦ୍ଭଟତା ଓ ସାମାଜିକ ଅସୁସ୍ଥତାକୁ ନିଛକ ଭାବରେ ପ୍ରକାଶ କରି ମଧ୍ୟ ଅସ୍ତିତ୍ୱବାଦ ମାନବବାଦକୁ ଜୀବନର ସର୍ବଶ୍ରେଷ୍ଠ ମୂଲ୍ୟବୋଧ ଭାବରେ ସ୍ୱୀକୃତି ଦେଇଛି । ଏହା ସହିତ ବ୍ୟକ୍ତି ସ୍ୱାଧୀନତାର ମନୋଭାବ ଅସ୍ତିତ୍ୱବାଦ ମଧ୍ୟ ଦେଇ ପୂର୍ଣ୍ଣତା ଲାଭକରିଛି । ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ବ୍ୟକ୍ତି ସ୍ୱାଧୀନତା ଅସ୍ତିତ୍ୱବାଦୀ ସାହିତ୍ୟ କୃତିଗୁଡ଼ିକ ଭିତରେ ଯେପରି ସ୍ଥାନ ପାଇଛି ତାହା ଏହି ବିଚାରଧାରାର ସବୁଠାରୁ ବଡ଼ ସାମାଜିକ କମିଟ୍‌ମେଣ୍ଟ କହିଲେ ଅତ୍ୟୁକ୍ତି ହେବନାହିଁ ।

କମ୍ୟୁନିଜିମ୍‌ର ପ୍ରସାର ପରେ ସମାଜବାଦୀ ଆନ୍ଦୋଳନ ପୃଷ୍ଠଭୂମିରେ ସାହିତ୍ୟରେ ଶ୍ରେଣୀ ସଂଘର୍ଷର ଚେତନା ମଧ୍ୟ ତୀବ୍ର ଭାବରେ ପ୍ରକାଶିତ ହୋଇଥିଲା । ସାମ୍ୟବାଦକୁ ସମର୍ଥନ ଓ ବିରୋଧ କରି ନାନା କୃତି ସୃଷ୍ଟି ହୋଇଥିଲା । ସାମାଜିକ ନ୍ୟାୟ ଓ ସମତା ପାଇଁ ଆଲୋଡ଼ନ ଯେପରି ଜନ ଜୀବନକୁ ପ୍ରଭାବିତ କରିଥିଲା ସେହିପରି କମ୍ୟୁନିଜିମ୍ ଗଣତନ୍ତ୍ର ଓ ବ୍ୟକ୍ତି ସ୍ୱାଧୀନତାର କଣ୍ଠରୋଧ କରୁଛି ବୋଲି ବିଶ୍ୱାସ ମଧ୍ୟ ଉଦ୍ରେକ

ହୋଇଥିଲା । ବସ୍ତୁତଃ କେତେକ ଲେଖକ ସର୍ବହରା ମଣିଷର ଜୟଗାନ କରି ସାହିତ୍ୟ ଭିତରେ ସମତାର ବାର୍ତ୍ତା ଦେଉଥିଲା ବେଳେ, ସମ୍ଭାବ୍ୟ ଏକଛତ୍ରବାଦ ଓ ବୌଦ୍ଧିକ ପରାଧୀନତାର ଆଶଙ୍କା କରି ସମାଜବାଦରୁ ମୁକ୍ତ ରହିବା ପାଇଁ ମଧ କେତେକ ଏକ ଆବେଗ ସାହିତ୍ୟ ମଧ ଦେଇ ସୃଷ୍ଟି କରିଥିଲେ ।

ସଂପ୍ରତି ଏହି ସବୁ ବାଦ ଗୁଡ଼ିକରେ ଭଟ୍ଟା ଆସିଥିବା ପରି ମନେହୁଏ । ପରବର୍ତ୍ତୀ ସମୟରେ ଆହୁରି ଅନେକ ବାଦ ସାହିତ୍ୟ-ଗଗନରେ ଦେଖା ଦେଇଛନ୍ତି । କେତେକ ବାଦ ମଳିନ ହୋଇ ଯାଇଥିବା ବେଳେ ଅନ୍ୟ କେତେକ ଏବେବି ପ୍ରସ୍ତୁତି ପର୍ବ ଭିତର ଦେଇ ଗତି କରୁଛନ୍ତି । କିନ୍ତୁ କୌଣସି ବାଦ ସାମାଜିକ ବାସ୍ତବତାକୁ ସଂପୂର୍ଣ୍ଣ ଉପେକ୍ଷା କରି ଭାବବିଳାସ ଭିତରେ ରହିନାହାନ୍ତି । ଫ୍ରଏଡ, ମାର୍କସ ଓ ଅସ୍ତିତ୍ୱବାଦୀ ବିଚାରଧାରା ନୂଆ ନୂଆ ଢଙ୍ଗରେ ମଧ ଆତ୍ମ ପ୍ରକାଶ କରୁଛି । ଏହା ଅଧିକରୁ ଅଧିକ ସ୍ପଷ୍ଟ ହେଉଛି ଯେ ସଂପ୍ରତି କୌଣସି ବଳିଷ୍ଠ ସାହିତ୍ୟିକ ଆନ୍ଦୋଳନ ସମକାଳୀନ ଜନ ଜୀବନର ଚିତ୍ର ପ୍ରଦାନ କରିବାକୁ ଉପେକ୍ଷା କରି ପାରିବ ନାହିଁ । ଅଧୁନା କାଳ୍ପନିକ ରୂପକଥା, ରୋମାଣ୍ଟିକ୍ ଭାବବିଳାସ ଓ ରକ୍ଷଣଶୀଳ ଧର୍ମୀୟ ଉପଚାର ଅପେକ୍ଷା ସମକାଳୀନ ସମାଜର ଚିତ୍ର ପ୍ରଦାନ କରିବା ଯେକୌଣସି ଉଚ୍ଚ ସାହିତ୍ୟ କୃତିର ଲକ୍ଷ୍ୟ ହେବାରେ ଲାଗିଛି । ସମକାଳୀନ ସମାଜର ଚିତ୍ର ଦେବା ଭିତରେ ସାମାଜିକ ରୁଗ୍ଣତାକୁ ସଂଶୋଧନ କରି ଏକ ସୁସ୍ଥ ଜୀବନ ବିଷୟରେ ଦିଗ୍‌ଦର୍ଶନ ଦେବା ସାହିତ୍ୟିକ ମୂଲ୍ୟବୋଧ ଭାବରେ ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଛି । ସାମାଜିକ ବାସ୍ତବତାର ଏକ ନିଛକ ପ୍ରତିଫଳନ ସହିତ ଜୀବନର ଗଭୀରତମ ଅନୁଭୂତି ଓ ମହତ୍ତର ସମ୍ଭାବନାକୁ ପ୍ରକାଶ କରିବା ସାହିତ୍ୟର ଲକ୍ଷ୍ୟ ହୋଇ ଉଠିଛି । ଗତ ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱ ହେବ ସାହିତ୍ୟିକ ଚେତନା କ୍ଷେତ୍ରରେ ଯେଉଁ ନୂତନ ପ୍ରବାହଟି ସୃଷ୍ଟି ହୋଇଛି ତାହା ସମାଜ ପ୍ରତି ସାହିତ୍ୟିକର କମିଟ୍‌ମେଣ୍ଟକୁ ଦୃଢ଼ କରିବାରେ ଲାଗିଛି । ଏହା ସାହିତ୍ୟ କ୍ଷେତ୍ରରେ ନୂଆ ଦିଗନ୍ତର ସନ୍ଧାନ ଦେଉଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

■■

৷ ১

# ଶଙ୍କରାଚାର୍ଯ୍ୟଙ୍କ ମୋହମୁଦ୍‌ଗର : ଏକ ଦୃଷ୍ଟିପାତ

ଷୋହଳଟି ଶ୍ଳୋକରେ ଲିଖିତ 'ମୋହମୁଦ୍‌ଗର' ଅଷ୍ଟମ ଶତାବ୍ଦୀର ବିଶିଷ୍ଟ ଦାର୍ଶନିକ ଶଙ୍କରାଚାର୍ଯ୍ୟଙ୍କର ଏକ ଅଭିନବ କୃତି । ଶଙ୍କରାଚାର୍ଯ୍ୟ ଶଙ୍କର ନାମରେ ସୁବିଦିତ ଓ ତାଙ୍କର ଦର୍ଶନ ଅଦ୍ୱୈତ ବେଦାନ୍ତ ଭାବରେ ଭାରତୀୟ ଦର୍ଶନ ଇତିହାସରେ ପରିଚିତ । 'ଅଦ୍ୱୈତ ବେଦାନ୍ତ' ବେଦାନ୍ତ ଦର୍ଶନର ଏକ ପ୍ରମୁଖ ଦିଗ । ଅବଶ୍ୟ ବେଦାନ୍ତ ଦର୍ଶନ ଭିତରେ ଭିନ୍ନ ଭିନ୍ନ ଦାର୍ଶନିକ ଧାରା ରହିଥିଲେ ମଧ୍ୟ ସେମାନଙ୍କର ମୂଳ ଉତ୍ସ ସମାନ । ସେହିପରି ଶଙ୍କରଙ୍କର ଆବିର୍ଭାବ ପୂର୍ବରୁ ଅଦ୍ୱୈତ ବେଦାନ୍ତର ଭାବନା ବିକାଶ ଲାଭ କରିଥିଲେ ବି ଶଙ୍କରଙ୍କର ଏ କ୍ଷେତ୍ରରେ ବିସ୍ତୃତ ଓ ମୌଳିକ ଅବଦାନ ହେତୁ ଅଦ୍ୱୈତ ବେଦାନ୍ତକୁ ଶଙ୍କରଙ୍କ ଦର୍ଶନ ବୋଲି କୁହାଯାଏ ।

ଉପନିଷଦ, ଭଗବତ ଗୀତା ଓ ବେଦାନ୍ତସୂତ୍ର ଉପରେ ବିଶ୍ଳେଷଣାତ୍ମକ ଭାଷ୍ୟ ଲେଖିବା ସହିତ ଶଙ୍କର ଅନେକ ସ୍ତୋତ୍ର ବା ପ୍ରାର୍ଥନା ଏବଂ ଆଧ୍ୟାତ୍ମିକ ଭାବନା ସମ୍ବଳିତ ପଦ୍ୟ ରଚନା କରିଛନ୍ତି । ସେ ମଧ୍ୟରେ ମୋହମୁଦ୍‌ଗର ଯଥେଷ୍ଟ ଜନପ୍ରିୟ । ମୁଦ୍‌ଗର ବା ଗଦାରେ ଅନ୍ୟକୁ ଆଘାତ କରାଗଲା ପରି ସଂସାର ମୋହ ରୂପକ ଭାବନାକୁ ସେ ତାଙ୍କର ଜ୍ଞାନ ରୂପକ ମୁଦ୍‌ଗରରେ ପ୍ରହାର କରିଛନ୍ତି । ସୁତରାଂ ଏହି ଷୋହଳ ପଦ୍‌କ୍ତି ବିଶିଷ୍ଟ କବିତାକୁ ମୋହମୁଦ୍‌ଗର କୁହାଯାଉଛି । ଏହାର ବିଷୟବସ୍ତୁ ସଂକ୍ଷେପରେ ହେଉଛି– ''ହେ ମୂଢ଼ ମନୁଷ୍ୟ, ତୁମେ କାୟ, ମନ ଓ ବୁଦ୍ଧିରେ ସମସ୍ତ ବାସନା ଜନିତ ତୃଷ୍ଣାକୁ ପରିହାର କରି ନିଜର କର୍ମଫଳରେ ଯାହା ପ୍ରାପ୍ତ ହୋଇଛ ସେଥିରେ ସନ୍ତୁଷ୍ଟ ରହ । ଏହି ବିଚିତ୍ର ସଂସାରରେ ସ୍ତ୍ରୀ ଓ ପୁତ୍ର ଇତ୍ୟାଦି ସମ୍ବନ୍ଧ ଅତ୍ୟନ୍ତ ଅଳୀକ । ତୁମେ କିଏ ଓ କେଉଁଠାରୁ ଆସିଛ ଏହି ନିଗୂଢ଼ ତତ୍ତ୍ୱ ବିଷୟରେ ଚିନ୍ତା କର । କାଳଦ୍ୱାରା ନିମିଷକ ମଧ୍ୟରେ ଧ୍ୱଂସ ହେଉଥିବା ଧନ, ଜନ, ଯୌବନ ଓ ଗର୍ବକୁ ପରିହାର କର । ଏହି ମାୟାମୟ ସଂସାରଠାରୁ ଦୃଷ୍ଟି ଫେରାଇ ତୁମେ ବ୍ରହ୍ମାନୁଭୂତି ପାଇଁ ପ୍ରୟାସ କର । ପଦ୍ମପତ୍ରରେ ଭାସମାନ ଜଳ ପରି ଏ ଜୀବନ ଅତ୍ୟନ୍ତ ଚଞ୍ଚଳ । ସଂସାର ରୂପକ ସାଗର ଅତିକ୍ରମ କରିବା ପାଇଁ ସାଧୁସଙ୍ଗ ହିଁ ନୌକା ସଦୃଶ । ଜନ୍ମ ସହିତ ମୃତ୍ୟୁ ଅଙ୍ଗାଙ୍ଗୀ ଜଡ଼ିତ ଓ ମୃତ୍ୟୁ ପରେ ପୁନଶ୍ଚ ଜନନୀ ଉଦରରେ ପ୍ରବେଶ ଅବଶ୍ୟମ୍ଭାବୀ । ଜନ୍ମ ମୃତ୍ୟୁ ଚକ୍ରରେ ଘୂରିବା ଛଡ଼ା ଏଥିରେ କି ସନ୍ତୋଷ ରହିଛି ! ଦିନ-ରାତି, ପ୍ରଭାତ-ସନ୍ଧ୍ୟା, ଶିଶିର-ବସନ୍ତ ପୁନଃ ପୁନଃ ଆସୁଛନ୍ତି ଓ ଯାଉଛନ୍ତି ।

କାଳର ମହାସ୍ରୋତରେ ସମୟ ଗଡ଼ି ଚାଲିଛି ଓ ଜୀବର ଆୟୁସ ସରି ଆସୁଛି, ତଥାପି କାମନାର ଆଶା ବିଲୋପ ହେଉନାହିଁ । ଶରୀର ଅବସନ୍ନ ହେବାରେ ଲାଗିଛି, ମୁଣ୍ଡ କେଶଶୂନ୍ୟ ଓ ପାଟି ଦନ୍ତଶୂନ୍ୟ ହେଉଛି ଓ ଏପରିକି ହାତର ବାଡ଼ିଟି ମଧ୍ୟ ସାମର୍ଥ୍ୟ ଅଭାବରୁ କମ୍ପିତ ହେଉଛି, ତଥାପି କାମନାର ବିରାମ ଘଟୁନାହିଁ । ବୈରାଗ୍ୟଦ୍ୱାରା ନିଜର ଗୃହ, ଶଯ୍ୟା ଓ ପରିଧାନ ଏ ପ୍ରତ୍ୟେକର ସୁଖଭୋଗକୁ ପରିତ୍ୟାଗ କରିବାଦ୍ୱାରା ହିଁ ଆଧ୍ୟାତ୍ମିକ ପ୍ରୀତିର ସନ୍ଧାନ ମିଳିପାରିବ । ଶତ୍ରୁ ବା ମିତ୍ର ଏବଂ ପୁତ୍ର ବା ବନ୍ଧୁ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖ । ଅର୍ଥାତ୍ ଦେବତ୍ୱ ପ୍ରାପ୍ତି ପାଇଁ ସମଦୃଷ୍ଟି ପୋଷଣ କର । ବ୍ରହ୍ମା, ଇନ୍ଦ୍ର, ସୂର୍ଯ୍ୟ, ରୁଦ୍ର ଏମାନେ ପରସ୍ପର ଅସମ୍ବନ୍ଧିତ ହୋଇଥିବା ବେଳେ ନିଜ, ପର, ଇହ ଓ ପରଲୋକ ଇତ୍ୟାଦି ଭାବନାଦ୍ୱାରା ଶୋକ କରିବା ବାଞ୍ଛନୀୟ ନୁହେଁ । ଏକ ବିଷ୍ଣୁ ସମାନ ଭାବରେ ସମସ୍ତଙ୍କ ଭିତରେ ବିରାଜମାନ କରୁଛନ୍ତି । ସୁତରାଂ ସମସ୍ତ ଭେଦଭାବ ଦୂରକର । ନିଜର ଆତ୍ମାକୁ ଅନ୍ୟର ଆତ୍ମାଠାରୁ ପୃଥକ ମନେକର ନାହିଁ । ବାଳକ କ୍ରୀଡ଼ାରେ, ତରୁଣ ତରୁଣୀଠାରେ ଓ ବୃଦ୍ଧ ଚିନ୍ତାରେ ମଗ୍ନ ରହେ । କିନ୍ତୁ କୌଣସି ସମୟରେ ବ୍ରହ୍ମାଙ୍କ ପାଖରେ ମନ ସ୍ଥିର ରହିପାରେ ନାହିଁ । ଅର୍ଥ ହିଁ ସର୍ବଦା ଅନର୍ଥର ମୂଳ ଓ ଏହା ସୁଖର ଆଧାର ନୁହେଁ । ଧନୀ ନିଜର ପୁତ୍ରଠାରୁ ମଧ୍ୟ ଭିଭି ପାଇବା ଦେଖାଯାଏ । ନିଜେ ଉପାର୍ଜନ କ୍ଷମ ଥିବା ପର୍ଯ୍ୟନ୍ତ ପରିବାରରେ ତୁମ ପ୍ରତି ଅନୁରକ୍ତି ରହେ, ଅଥଚ ଶରୀର ଜରାଜୀର୍ଣ୍ଣ ହୋଇ ଉପାର୍ଜନ କ୍ଷମତା ହରାଇଲେ କେହି ତୁମକୁ ଶ୍ରଦ୍ଧା କରିବେ ନାହିଁ । କାମ, କ୍ରୋଧ, ଲୋଭ ଇତ୍ୟାଦିକୁ ପରିତ୍ୟାଗ କରି ଆତ୍ମସନ୍ଧାନୀ ହୁଅ । ଆତ୍ମଜ୍ଞାନ ରହିତ ମଣିଷ ନରକ ପ୍ରାପ୍ତ ହୋଇଥାଏ । ଏହି ଶ୍ଳୋକଗୁଡ଼ିକରେ ଦିଆ ଯାଉଥିବା ଶିକ୍ଷା ଯଦି ତୁମର ବିବେକ ଉଦ୍ରେକ କରାଉ ନାହିଁ । ତେବେ କେଉଁ ଉପାୟରେ ତୁମର ବିବେକ ଉଦ୍ରେକ ହେବ ?''

ଏହା ହେଲା ମୋହମୁଦ୍‌ଗରରେ ବର୍ଣ୍ଣିତ ଶ୍ଳୋକଗୁଡ଼ିକର ମର୍ମାର୍ଥ ।

ଏଥିରେ ଶବ୍ଦ ପ୍ରୟୋଗ କ୍ଷେତ୍ରରେ ଯେଉଁ ସୁଲଳିତ ଛନ୍ଦ ଓ ଲାଳିତ୍ୟ ପ୍ରକାଶିତ ହୋଇଛି ତାହା ଏହାର ଆଙ୍ଗିକ ସୌନ୍ଦର୍ଯ୍ୟକୁ ବୃଦ୍ଧିମନ୍ତ କରିଛି । ସେହିପରି ଏଥିରେ ଯେଉଁ ଦାର୍ଶନିକ ଜୀବନ ଦୃଷ୍ଟିର ପରିପ୍ରକାଶ ଦେଖିବାକୁ ମିଳେ ତାହା ଏହାର ଆତ୍ମିକ ସୌନ୍ଦର୍ଯ୍ୟକୁ ବୃଦ୍ଧି କରିଛି । ମୋଟ ଉପରେ କହିବାକୁ ଗଲେ ଏହାର ସାବଲୀଳ ଛନ୍ଦ ଓ ଦାର୍ଶନିକ ଦୃଷ୍ଟି କବିତାଟିକୁ ସରସ ସୁନ୍ଦର କରିଛି ।

ଏହାର ବିଷୟବସ୍ତୁ ଶଙ୍କରଙ୍କର ବେଦାନ୍ତ ଭାବଧାରାକୁ ବ୍ୟକ୍ତ କରିଛି । ବ୍ରହ୍ମ ହିଁ ସନାତନ, ଅବ୍ୟୟ ଓ ଅକ୍ଷୟ । ବ୍ୟବହାରିକ ମାନଦଣ୍ଡରୁ ଜଗତ ସତ୍ୟ ମନେ ହେଲେ ବି ପରମାର୍ଥିକ ମାନଦଣ୍ଡରୁ ବ୍ରହ୍ମ ହିଁ ଏକମାତ୍ର ସତ୍ୟ ଓ ଜଗତ ମିଥ୍ୟା । ଯାହା ଅବ୍ୟୟ, ଅକ୍ଷୟ, ଅପରିବର୍ତ୍ତନୀୟ ଓ ସନାତନ ତାହା ହିଁ ବ୍ରହ୍ମ । ସୁତରାଂ ବ୍ରହ୍ମ ହିଁ ସତ୍ୟ ଓ ଜଗତ ଯେହେତୁ ସଦା ପରିବର୍ତ୍ତନଶୀଳ ଏବଂ କ୍ଷୟଶୀଳ ତେଣୁ ମିଥ୍ୟା ।

ଭାରତୀୟ ଦର୍ଶନର ଏକ ମୁଖ୍ୟ ପ୍ରତୀତି ଜନ୍ମାନ୍ତରବାଦକୁ ଶଙ୍କର ମଧ୍ୟ ଏଥିରେ

ବ୍ୟକ୍ତ କରିଛନ୍ତି । ଜନ୍ମ ଓ ମୃତ୍ୟୁ ଚକ୍ରରେ ଜୀବ ଘୂରୁଥାଏ । ଜୀବନ ସହିତ ଦୁଃଖ, ଶୋକ ଓ ମୃତ୍ୟୁ ଜଡ଼ିତ ଥାଏ । ମୋକ୍ଷ ପ୍ରାପ୍ତ ହେବା ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଲାଗି ରହିଥାଏ । ଭାରତୀୟ ଦର୍ଶନ ବିଦ୍ୟାଳୟ ଗୁଡ଼ିକରେ ଆତ୍ମାର ସ୍ୱରୂପ ଓ ମୁକ୍ତିର ପ୍ରତୀତି ନେଇ ଭିନ୍ନ ଭିନ୍ନ ତାତ୍ତ୍ୱିକ ମତ ରହିବା ଦେଖାଯାଏ । ଶଂକର ତାଙ୍କର ଅଦ୍ୱୈତ ବେଦାନ୍ତରେ ବି ଏକ ମତ ପୋଷଣ କରିଛନ୍ତି । ତାହା ଅନୁଯାୟୀ ଆତ୍ମାର ସ୍ୱରୂପ ହେଉଛି ବ୍ରହ୍ମ । ଆତ୍ମା ଓ ବ୍ରହ୍ମ ସ୍ୱରୂପତଃ ଅଭିନ୍ନ । କିନ୍ତୁ ଯେତେବେଳେ ପର୍ଯ୍ୟନ୍ତ ଆତ୍ମା ଅବିଦ୍ୟାବଶତଃ ନିଜର ବ୍ରହ୍ମ ସ୍ୱରୂପକୁ ଉପଲବ୍ଧି କରିନାହିଁ ସେ ପର୍ଯ୍ୟନ୍ତ ସେ ଜନ୍ମ ମୃତ୍ୟୁ ଚକ୍ରରେ ଦୁଃଖ ଭୋଗ କରୁଥାଏ । ଅବିଦ୍ୟାରୁ ଉଦ୍‌ଭବ ଭିନ୍ନତାର ବିଲୋପ ଦ୍ୱାରା ଆତ୍ମାର ବ୍ରହ୍ମ ସହିତ ଅଭିନ୍ନତା ଆସିଥାଏ । ମୋକ୍ଷ ପ୍ରାପ୍ତ ଜୀବ ହିଁ ବ୍ରହ୍ମ ହୋଇଯାଏ । ବିଶେଷ କରି ଶଙ୍କରଙ୍କ ଅଦ୍ୱୈତ ବେଦାନ୍ତରେ ଥିବା ବ୍ରହ୍ମ, ଜଗତ, ଆତ୍ମା ଓ ମୁକ୍ତି ପ୍ରତ୍ୟୟଗୁଡ଼ିକୁ ନେଇ ଯେଉଁ ତତ୍ତ୍ୱ ମୀମାଂସା ରହିଛି ତାହାର ପ୍ରତିଫଳନ କାବ୍ୟିକ ଢଙ୍ଗରେ ମୋହମୁଦ୍‌ଗରରେ ବ୍ୟକ୍ତ ହୋଇଛି । ଦାର୍ଶନିକ ବ୍ୟାଖ୍ୟା ଲେଖିବାବେଳେ ଶଙ୍କର ତାତ୍ତ୍ୱିକ ଯୁକ୍ତିକୁ- ତାହା ତର୍କ ସମ୍ମତ ହୋଇପାରେ ବା ଦୋଷଯୁକ୍ତ ହୋଇପାରେ– ଆଶ୍ରୟ କରିଛନ୍ତି, ଅଥଚ ମୋହମୁଦ୍‌ଗରରେ ସେହି ଦୃଷ୍ଟିକୋଣକୁ ଏକ ଆବେଗପୂର୍ଣ୍ଣ ଲଳିତ ଶୈଳୀରେ ପ୍ରକାଶ କରିଛନ୍ତି ।

ମୋହମୁଦ୍‌ଗରରେ ଯେଉଁ ନୈତିକ ଦୃଷ୍ଟିକୋଣଟିର ପରିପ୍ରକାଶ ଦେଖିବାକୁ ମିଳେ ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ଗୋଟିଏ ପଦରେ କୁହାଯାଇଛି, ''ଶତ୍ରୁ, ମିତ୍ର, ପୁତ୍ର ଓ ବନ୍ଧୁ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା ଆବଶ୍ୟକ ।'' ସମସ୍ତଙ୍କୁ ସମାନ ବୋଲି ମନେ କରିବା ଓ ବ୍ୟକ୍ତି ବ୍ୟକ୍ତି ଭିତରେ ପ୍ରଭେଦ ନ ଦେଖିବା ଏକ ଉନ୍ନତ ଦୃଷ୍ଟି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ପ୍ରାଚୀନ ଦାର୍ଶନିକ ଧାରାରେ ସମଦୃଷ୍ଟି କେବଳ ଏକ ତାତ୍ତ୍ୱିକ ବିଚାରବୋଧରୁ ଆସିଥିବା ମନେହୁଏ । ସମସ୍ତ ଜୀବ ଭିତରେ ଥିବା ଆତ୍ମାମାନଙ୍କର ତାତ୍ତ୍ୱିକ ଅଭିନ୍ନତା ହେତୁ ସମସ୍ତଙ୍କୁ ଅଭିନ୍ନ କରାଯାଇଛି । ଅପରପକ୍ଷରେ ବାସ୍ତବ ଜୀବନଧାରାରେ ବ୍ୟକ୍ତିମାନଙ୍କର ସାମାଜିକ ବୈଷମ୍ୟ ଭାରତୀୟ ସମାଜରେ ସର୍ବଦା ରହିଆସିଛି । ତାତ୍ତ୍ୱିକ ସ୍ତରରେ ସମସ୍ତଙ୍କୁ ସମାନ କରିଥିବା ଏକ ଦାର୍ଶନିକ ଦୃଷ୍ଟି ବ୍ୟବହାରିକ ସ୍ତରରେ ସାମାନ୍ୟ ପ୍ରତିଫଳିତ ନ ହେବା ଅଧିକନ୍ତୁ ଶୂଦ୍ର, ହରିଜନ ଓ ନାରୀମାନେ ସାମାଜିକ ସ୍ତରରେ ଅତି ନ୍ୟୁନ ହୋଇଥିବା ବେଶ୍ ପ୍ରହେଳିକାପୂର୍ଣ୍ଣ ମନେହୁଏ ।

ସେହିପରି କାମନା, ବାସନା, ଧନ ଉପାର୍ଜନ ପାଇଁ ଜୀବନବ୍ୟାପୀ ତୃଷ୍ଣାରୁ ନିବୃତ୍ତ ରହିବାକୁ ଏହାର ପଦମାନଙ୍କରେ କୁହାଯାଇଛି । କାମ, କ୍ରୋଧ, ଲୋଭ ଓ ମୋହ ଭିତରେ ଜଡ଼ିତ ହୋଇ ରହିବା ଜୀବନ ଯେ ନିରର୍ଥକ ଏହା ଗ୍ରହଣ କରାଯାଇପାରେ । ଜୀବନରେ କୌଣସି ମହତ୍ତର ଲକ୍ଷ୍ୟ ନ ରହିଲେ ଜୀବନ ମୂଲ୍ୟହୀନ ହୋଇଥାଏ । ବ୍ୟକ୍ତିଗତ ସ୍ୱାର୍ଥ, ଲୋଭ ଓ ଅନୈତିକ ଉପାର୍ଜନ ଭିତରେ ଛନ୍ଦା ଜୀବନ କୌଣସି ମହତ୍ତର ଲକ୍ଷ୍ୟ ହାସଲ

କରିପାରେ ନାହିଁ । କିନ୍ତୁ ଐହିକ ପ୍ରାପ୍ତିକୁ ପରିତ୍ୟାଗ କରି ମଧ୍ୟ ବ୍ୟକ୍ତିର ଜୀବନ ଦୃଷ୍ଟି ତଥାପି ସ୍ୱାର୍ଥକେନ୍ଦ୍ରିକ ରହିପାରେ । ସାମାଜିକ ଶ୍ରେୟ ପ୍ରତି ଉଦାସୀନ ରହି କେବଳ ମୁକ୍ତି ଓ ମୋକ୍ଷର ଭାବନା ଭିତରେ ଆବଦ୍ଧ ରହିବାଦ୍ୱାରା ଜୀବନ କେତେ ଦୂର ମହନୀୟ ହୋଇଥାଏ ତାହା ନେଇ ପ୍ରଶ୍ନ ଉଠିପାରେ । ନୈତିକ ଜୀବନଦୃଷ୍ଟିକୁ ଗ୍ରହଣ କରିକି କେହି ମୃତ୍ୟୁ ପର ମୁକ୍ତି ପାଇଁ କୃଚ୍ଛ୍ର ସାଧନାରେ ନିଜକୁ ବ୍ରତୀ କରାଇପାରେ ଅଥବା ଜୀବନବ୍ୟାପୀ ପ୍ରୟାସ କରି ସାମାଜିକ ଜୀବନ ପ୍ରବାହରେ ଗୁଣାତ୍ମକ ପରିବର୍ତ୍ତନ ସଂଘଟିତ କରାଇପାରେ । ପ୍ରଥମ ସମ୍ଭାବନାଟି ଏକ ପାରଲୌକିକ ଜଗତର କାଳ୍ପନିକ ସୁଖ ପାଇଁ ଉଦ୍ଦିଷ୍ଟ ହେବା ବେଳେ ଅନ୍ୟଟି ସାମାଜିକ ଜୀବନ ପରିପ୍ରେକ୍ଷୀରେ ବାସ୍ତବ ଓ ଅଧିକ ମହତ୍ତର ମନେହୁଏ ।

ମୋହମୁଦ୍‌ଗର ଭିତରେ ବୈରାଗ୍ୟ ଭାବନାର ଚିତ୍ର ସ୍ପଷ୍ଟ ଭାବରେ ଦେଖିବାକୁ ମିଳେ । ବୈରାଗ୍ୟଜନିତ ସନ୍ନ୍ୟାସବାଦ ଏହାର ଅନ୍ତଃସ୍ୱର ଅଟେ । ଜୀବନର ଶ୍ରେୟ ସାଧନ କ୍ଷେତ୍ରରେ ମୋକ୍ଷକୁ ଲକ୍ଷ୍ୟ ଭାବରେ ଗ୍ରହଣ କରିବା ଏକ ଧର୍ମୀୟ ବିଶ୍ୱାସ ଅଟେ । ଅବଶ୍ୟ ଭାରତୀୟ ଦର୍ଶନ ଧାରାରେ ଧର୍ମ, ଅର୍ଥ ଓ କାମକୁ ପୁରୁଷାର୍ଥ ଭାବରେ ଗ୍ରହଣ କରାଯାଇଥିଲେ ବି ମୋକ୍ଷକୁ ଜୀବନର ଅନ୍ତିମ ଲକ୍ଷ୍ୟ ଭାବରେ ଗ୍ରହଣ ଦେଖାଯାଏ । ଏହି ତାତ୍ତ୍ୱିକ ଲକ୍ଷ୍ୟକୁ ଏକ ଜୀବନ ଦୃଷ୍ଟି ଭାବରେ ଗ୍ରହଣ କରିବାଦ୍ୱାରା ତାହାର ପରିପ୍ରକାଶ ଆମର ଦର୍ଶନ, ସାହିତ୍ୟ ଓ କଳା ଭିତରେ ପରିଲକ୍ଷିତ ହୁଏ । ମୋହମୁଦ୍‌ଗର ସେହି ଜୀବନ ଦୃଷ୍ଟିର ଯେ ଏକ କାବ୍ୟିକ ଓ କଳାତ୍ମକ ପ୍ରତିଫଳନ ଏହା ନିଃସନ୍ଦେହରେ କୁହାଯାଇପାରେ ।

ବୈରାଗ୍ୟଜନିତ ଜୀବନ ଦୃଷ୍ଟି ସଂସାରକୁ ମୋହ, ମାୟା, ଅଳୀକ; ଜୀବନ ଏବଂ ଜଗତକୁ ମନ୍ଦ ଓ ଦୁଃଖପୂର୍ଣ୍ଣ ତଥା ସାମାଜିକ ସମ୍ବନ୍ଧକୁ ଅସତ୍ୟ ଏବଂ ଅର୍ଥହୀନ ବୋଲି ଗ୍ରହଣ କରିବା ଦେଖାଯାଏ । କିନ୍ତୁ ସଂସାର, ଜୀବନ ଓ ସମାଜ ପ୍ରତି ଏକ ପୃଥକ ଆଭିମୁଖ୍ୟ ନେଇ ଭିନ୍ନ ଜୀବନଦୃଷ୍ଟି ପୋଷଣ କରିବା ସମ୍ଭବତଃ ଅଧିକ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ଏକ ନୈତିକ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଦ୍ୱାରା ବ୍ୟକ୍ତି କୌଣସି ଆଧିଦୈବିକ ସ୍ଥିତି ପାଇଁ ପ୍ରୟାସୀ ନ ହୋଇ ହୁଏତ ନିଜର ତ୍ୟାଗପୂତ ଜୀବନ ଦ୍ୱାରା ବୃହତ୍ତର ସମାଜ ପାଇଁ ଅଭିନବ ଅବଦାନ ଦେଇପାରେ । ନିଜର ତ୍ୟାଗ ଓ ତିତିକ୍ଷା ଦ୍ୱାରା ସାମାଜିକ ଜୀବନକୁ ସରସ, ସୁନ୍ଦର ଓ ପ୍ରୀତିମୟ କରିବାକୁ ପ୍ରୟାସ କରିପାରେ । ବୈରାଗ୍ୟ ଜନିତ ସନ୍ନ୍ୟାସବାଦ ଅପେକ୍ଷା ସମ୍ବେଦନଶୀଳ ମାନବବାଦ ଏକ ମହତ୍ତର ଶ୍ରେୟ ବୋଲି ପ୍ରତୀତ ହୁଏ । ପାରଲୌକିକ ଲକ୍ଷ୍ୟକୁ ଶ୍ରେୟ ଭାବରେ ନିଆଯାଉଥିବା ସମାଜରେ ନୈତିକ କର୍ତ୍ତବ୍ୟ ଓ ସାମାଜିକ ଅଙ୍ଗୀକାରବୋଧ ଅପେକ୍ଷା ଧର୍ମୀୟ ଔପଚାରିକତା ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଧହୁଏ । ଏହି ମାନସିକତାର ପରିପ୍ରକାଶ ଯେ ସମାଜ ପାଇଁ ଶୁଭଙ୍କର ନୁହେଁ ଏହା କହିବା ଅସମୀଚୀନ ନୁହେଁ ।

■■

